# ମାନସିଂହ : ସୃଷ୍ଟି-ସମୀକ୍ଷା

ସଂକଳକ

ଅଧ୍ୟାପକ **ରାଧାଶ୍ୟାମ ବେହେରା**, ଏମ୍. ଏ. ବି. ଇଡ୍.
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଅଞ୍ଚଳ ମହାବିଦ୍ୟାଳୟ, ପଦ୍ମପୁର, ସମ୍ବଲପୁର



ଓଡ଼ିଶା ବୁକ୍ ଷ୍ଟୋର

# ମାନସିଂହ-ସୃଷ୍ଟି-ସମୀକ୍ଷା

ସଙ୍କଳକ ଓ ପ୍ରକାଶକ :

**ଶ୍ରୀ ରାଧାଶ୍ୟାମ ବେହୁରା**

ବାଲିକୁଦା, କଟକ

ପରିବେଷକ :

ଶ୍ରୀ ଗୋବିନ୍ଦ ଚରଣ ଧାଳ

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ :

**୧୯୭୮**

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ**

ଓଗରପଡ଼ା, କଟକ-୭୫୩୦୦୨

ମୂଲ୍ୟ :

ସାଧାରଣ **ଟ ୧୨-୫୦**

ବନ୍ଧାଇ ସହ **ଟ ୧୫-୦୦**

# "ଉତ୍ସର୍ଗ"

ଉତ୍କଳର ସୁପ୍ରତିଷ୍ଠିତା ନାରୀ ଲେଖିକା

**ଶ୍ରୀମତୀ ହେମଲତା ମାନସିଂହଙ୍କ** କରକମଳରେ—

ଲେଖକ

**ଶ୍ରୀ ରାଧାଶ୍ୟାମ ବେହୁରା**



ସମ୍ପାଦକ :

**ଅଧ୍ୟାପକ ରାଧାଶ୍ୟାମ ବେହେରା**

# ମୋ' ପକ୍ଷରୁ ପଦେ

ପାଞ୍ଚବର୍ଷ ତଳର କଥା । ସ୍ୱର୍ଗତ ଡକ୍ଟର ମାନସିଂହଙ୍କ ବହୁମୁଖୀ ସାହିତ୍ୟ ପ୍ରତିଭା ଉପରେ ଏକ ଉଚ୍ଚକୋଟୀର ପ୍ରବନ୍ଧ ସଙ୍କଳନ ପ୍ରକାଶ କରିବା ପାଇଁ ମୁଁ ଯଥାସାଧ୍ୟ କାର୍ଯ୍ୟ ଆରମ୍ଭ କରେ । ସେତେବେଳେ ଡକ୍ଟର ମାନସିଂହ ଥାଆନ୍ତି ଜୀବିତ । ଜୀବିତାବସ୍ଥାରେ ଏ ଦିଗରେ ତାଙ୍କ ପ୍ରେରଣା, ଉତ୍ସାହ, ସହଯୋଗ ଓ ସାହାଯ୍ୟ କେବେ ଭୁଲିବାର ନୁହେଁ । ସେ ଆମ ଭିତରେ ଆଜି ଆଉ ନାହାନ୍ତି । ଆଜି ସେ ସ୍ୱର୍ଗରେ । ସେଇ ଅମରଆତ୍ମା ନିକଟରେ ମୁଁ ଚିରକୃତଜ୍ଞ ।

ମାନସିଂହଙ୍କ ମୃତ୍ୟୁର ଠିକ୍ ପରେ ପରେ ଏ ସଙ୍କଳନ ମୃତ୍ୟୁ ଭଜିବା ପାଇଁ ଆପଦପର୍ବ ରଚନା କଲା । ଭାଙ୍ଗିପଡ଼ିଲା ମନ, ଦୋହଲିଗଲା ଧୈର୍ଯ୍ୟର ବାଲିବନ୍ଧ । ଶେଷରେ ମୁଁ କିଂକର୍ତ୍ତବ୍ୟ-ବିମୂଢ଼ ହୋଇପଡ଼ିଲି ଏତେ ବଡ଼ ପୁସ୍ତକ ପ୍ରକାଶନର ଦାୟିତ୍ୱ ନେଇ । ସଙ୍କଳନ ପ୍ରକାଶନର ବିଳମ୍ବ ହେତୁ ବହୁ ଲେଖକ ବନ୍ଧୁ ଏହାର ଚଳନ୍ତି ସ୍ଥିତି, ପ୍ରସ୍ତୁତି ଓ ବିସ୍ତୃତି ସମ୍ପର୍କରେ ବହୁ କଥା ମୋ ନିକଟକୁ ଲେଖିବସିଲେ ବଡ଼ ଆବେଗରେ । କେହି କେହି ଲେଖକ ବନ୍ଧୁ ମୋତେ ଏ ସଙ୍କଳନ ପାଇଁ ଲେଖିଦେଇଥିବା

ପ୍ରବନ୍ଧଗୁଡ଼ିକ ଅନ୍ୟତ୍ର ପ୍ରକାଶ କଲେ । ଏଇଭଳି ଏକ ମାନସିକ ସଂଘର୍ଷ ମଧ୍ୟରେ ଗତି କରୁଥିଲାବେଳେ ଆଶାର ସଞ୍ଚାର କରି ମୋର ବନ୍ଧୁ ଅଧ୍ୟାପକ ବନ୍ଧୁ ମୋ ନିକଟକୁ ଚିଠି ଲେଖି ମୋର ନିରୁତ୍ସାହିତ ମନରେ ଭରିଦେଲେ ଆଶା ଓ ଆଶ୍ୱାସନାର ଉତ୍ସ ।

ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ତରଫରୁ ଉକ୍ତ ପୁସ୍ତକ ପ୍ରକାଶନ ପାଇଁ ମିଳିଗଲା ଅଠର ଶହ ଟଙ୍କା ଆର୍ଥିକ ସାହାଯ୍ୟ । ସେହି ସ୍ୱଳ୍ପ ଅର୍ଥ-ସମ୍ବଳ ହିଁ ମୋ ନିରାଶ-ଜର୍ଜ୍ଜରିତ ମନ-ଦିଗନ୍ତରେ ଫିଟାଇଦେଲା ନୂତନ ଉଦ୍‌ଯୋତ୍ସବ । ସେଥିପାଇଁ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ନିକଟରେ ମୁଁ ଗଭୀର କୃତଜ୍ଞତା ଜଣାଉଛି ।

ଏହି ସଙ୍କଳନର ପ୍ରସ୍ତୁତିପଥରେ ଏହାର ପ୍ରକାର ଓ ପ୍ରକୃତି ପାଇଁ ଯେଉଁମାନେ ମୋତେ ସବୁପ୍ରକାର ସାହାଯ୍ୟ ଓ ବହୁ ମୂଲ୍ୟବାନ ପରାମର୍ଶ ଦେଇ ଅନୁଗୃହୀତ କରିଅଛନ୍ତି, ସେମାନେ ହେଲେ ଡକ୍ଟର ହରେକୃଷ୍ଣ ମହତାବ, ଅଧ୍ୟାପକ ଚନ୍ଦ୍ରମଣି ବେହେରା, ଡକ୍ଟର କୃଷ୍ଣଚରଣ ବେହେରା ଓ ମୋର ଶିକ୍ଷାଗୁରୁ ଅଧ୍ୟାପକ ଶ୍ରୀ ପଠାଣୀ ପଟ୍ଟନାୟକ । ମୁଁ ସମସ୍ତଙ୍କ ନିକଟରେ ମୋର ବିନମ୍ର କୃତଜ୍ଞତା ଜ୍ଞାପନ କରୁଛି । ମୋର ପ୍ରିୟ ଭ୍ରାତୃଶ୍ରେଷ୍ଠ ଶ୍ରୀ ଦେବେନ୍ଦ୍ର କୁମାର ଦାଶ, ଏମ୍. ଏ. (ଗବେଷକ) ଏହି ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତିରେ ମୋତେ ସବୁପ୍ରକାର ସାହାଯ୍ୟ କରିଥିବାରୁ ମୁଁ ତାକୁ ଏହି ଅବକାଶରେ ସ୍ମରଣ କରୁଛି । ଯେଉଁ ସୁହୃଦ ବରେଣ୍ୟ ସ୍ରଷ୍ଟାଗଣ ସଙ୍କଳନଟି ପୂର୍ଣ୍ଣାଙ୍ଗ କରିବାରେ ନିଜନିଜର ପ୍ରବନ୍ଧମାନ ପ୍ରଦାନ କରି ମୋତେ ଏ ଦିଗରେ ସାହାଯ୍ୟ କରିଛନ୍ତି; କୃତିତ୍ୱ ସେହିମାନଙ୍କର ପ୍ରାପ୍ୟ; ମୋର ନୁହେଁ । ଦୋଷଦୁର୍ବଳତା ସବୁ ସଙ୍କଳୟିତାଙ୍କର ।

ମୋର ସାହିତ୍ୟ-ସାଧନାରେ ଯିଏ ମୋତେ ନିରନ୍ତର ଉତ୍ସାହ ଯୋଗାଇ ଆସିଛନ୍ତି, ସେ ହେଉଛନ୍ତି ମୋର ପରମ ଶୁଭକାଙ୍‌କ୍ଷୀ ଅଗ୍ରଜ ଶ୍ରୀ କୁଳମଣି ବେହେରା । ତାଙ୍କର ପ୍ରେରଣା ଅବିସ୍ମରଣୀୟ । ବସ୍ତୁତଃ, ମୋ ଜୀବନର ଅଭିଗତିର ପ୍ରତିଟି ସୋପାନରେ ମୁଦ୍ରାଙ୍କିତ ହୋଇ ରହିଛି ତାଙ୍କର ଐକାନ୍ତିକ ଆଶୀର୍ବାଦ । ମୁଁ ତାଙ୍କ ନିକଟରେ ସେଥିପାଇଁ କୃତଜ୍ଞ ।

ଏତଦ୍‌ବ୍ୟତୀତ, ଏ ପୁସ୍ତକ ରଚନାର ପ୍ରଚ୍ଛଦପଟରେ ରହିଛି ଅନେକଙ୍କର ଅକୁଣ୍ଠିତ ସାହାଯ୍ୟ ଓ ଅକୃତ୍ରିମ ପ୍ରେରଣା । ସେମାନଙ୍କ ମଧ୍ୟରୁ ଅଧ୍ୟାପକ ବିପିନ ବିହାରୀ ନନ୍ଦ, ଅଧ୍ୟାପକ ଶିବପ୍ରସାଦ ନାୟକ, ଅଧ୍ୟାପକ ବନବିହାରୀ ଦାସ, ଅଧ୍ୟାପକ ପ୍ରହ୍ଲାଦ ପାଣିଗ୍ରାହୀ, ଅଧ୍ୟାପକ ନାରାୟଣ ପୃଷ୍ଟି ଓ ଅଧ୍ୟାପକ ଜଗନ୍ନାଥ ଜେନାଙ୍କର ପ୍ରେରଣା ଅଭୁଲା ହୋଇ ରହିବ । କାଗଜ ଦୁର୍ମୂଲ୍ୟ ହୋଇ ଉଠୁଥିଲାବେଳେ ଗ୍ରନ୍ଥଟି ପ୍ରକାଶ ପାଇଛି । ଓଡ଼ିଶା ବୁକ୍ ଷ୍ଟୋର୍‌ର ବନ୍ଦ୍ୟୋପାଧ୍ୟାୟ ପରିଚାଳକ ଶ୍ରୀଯୁକ୍ତ ଗୋବିନ୍ଦଚରଣ ପାତ୍ରଙ୍କ ଦୁଃସାହସିକ ପଦକ୍ଷେପ ଏଥିପାଇଁ ଅଭିନନ୍ଦନୀୟ ।

ପରିଶେଷରେ, ଓଡ଼ିଆ ସାହିତ୍ୟର ଛାତ୍ର ଓ ଜିଜ୍ଞାସୁ ପାଠକମାନଙ୍କ ନିକଟରେ ଏହି ପୁସ୍ତକଟି ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ଶ୍ରୀ ରାଧାଶ୍ୟାମ ବେହେରା

ତା ୧୫ । ୭ । ୧୯୭୮ ଭରୁଣା, ବାଲିକୁଦା, କଟକ

# ମାନସିଂହଙ୍କ ସୃଷ୍ଟି ସଂଭାର

## (କ) କାବ୍ୟ :—

୧—ଉପେକ୍ଷିତା
୨—ନନ୍ଦଣ
୩—ଶୁଭଦୃଷ୍ଟି
୪—ଜେମା
୫—ସାଧବଝିଅ
୬—କମଳାୟନ

## (ଖ) ନାଟକ-ନାଟିକା—

୭—ଋଜକବି ଉପେନ୍ଦ୍ର
୮—ପୁଷ୍ପିତା
୯—ପୂଜାରଣୀ
୧୦—ନଷ୍ଟନୀଡ଼
୧୧—ବାରବାଟୀ
୧୨—ବୃଙ୍ଗ
୧୩—ଦୁର୍ଭିକ୍ଷ
୧୪—ଭୃଙ୍ଗଦୂତ
୧୫—ଶାସନ-ଚକ୍ର
୧୬—ପୁଷ୍ପାଭିନୟ ।

## (ଗ) କବିତା—

୧୭—ସେଦିନର କବିତା
୧୮—ଧୂପ
୧୯—ହେମପୁଷ୍ପ
୨୦—ହେମଶସ୍ୟ
୨୧—କୋଣାର୍କ
୨୨—ବାପୁତର୍ପଣ
୨୩—ଅକ୍ଷତ

## (ଘ) ପ୍ରବନ୍ଧ ଓ ସମାଲୋଚନା—



## (ଙ) ଭ୍ରମଣକାହାଣୀ—



## (ଚ) ଅନୁବାଦ—



## (ଛ) ସଂକଳନ—

# ଅଙ୍ଗ ସଜ୍ଜା

( ଏଗାର )

ବିଷୟ | ପୃଷ୍ଠା





# ମୁଁ କାହିଁକି ଲେଖେଁ !

ଡକ୍ଟର ମାୟାଧର ମାନସିଂହ

କୌଣସି ଲେଖକଙ୍କୁ ସେ କାହିଁକି ଲେଖନ୍ତି ଏହା ପଚାରିବାରେ ପ୍ରଚ୍ଛନ୍ନ ଉପହାସ ଥାଇପାରେ । ଅର୍ଥାତ୍ ତାଙ୍କ ଲେଖାର ତ କୌଣସି ମୂଲ୍ୟ ନାହିଁ, ସେ ଲେଖନ୍ତି ମିଛରେ କାହିଁ ନ ? ଏ କ୍ଷେତ୍ରରେ ଉତ୍ତର ଦେବା ଯେପରି ଅସହଜ, ଯଦି ଲେଖକ ପ୍ରକୃତରେ ରସସ୍ରଷ୍ଟା ହୋଇଥାନ୍ତି, ତାଙ୍କୁ ଏ ପ୍ରଶ୍ନର ଉତ୍ତର ଦେବା ସେହିପରି ଅଡ଼ୁଆ । ଈଶ୍ୱର ଅଛନ୍ତି କି ନାହିଁ, ଏ ପ୍ରଶ୍ନର ଉତ୍ତର ଜଣେ କବି କାହିଁକି ଲେଖେ, ଏ ପ୍ରଶ୍ନର ଉତ୍ତରଠାରୁ ବରଂ ସହଜତର । ଚନ୍ଦ୍ରର ଜ୍ୟୋତ୍ସ୍ନା ପରି, ଜଳର ଗତି ପରି, ପୁଷ୍ପର ସୌରଭ ପରି ରସସ୍ରଷ୍ଟା ତ ରସସୃଷ୍ଟି ଓ ବିତରଣ କରିଯାଏ, ସେଠି 'କାହିଁକି'ର ସ୍ଥାନ କାହିଁ ?

କିନ୍ତୁ ମୋ ପରି ମନ୍ଦଃ କବି ଯଶଃ ପ୍ରାର୍ଥୀଙ୍କ ପ୍ରତି ଏ ପ୍ରକାର ପ୍ରଶ୍ନ ହୁଏତ ଏକାନ୍ତ ବାଞ୍ଛନୀୟ । ମୁଁ ବା ମୋ ପରି ସାରସ୍ୱତ ପୀଠରେ ଅନଧିକାର ପ୍ରବେଶକାରୀମାନେ ଯଦି ନିଜକୁ ନିଜେ ଏହି ପ୍ରଶ୍ନ ପଚାରନ୍ତେ ବା ପଚାରି ଆସୁଥାନ୍ତେ, ତେବେ ସାହିତ୍ୟ ବହୁ ଆବର୍ଜନାର ଅନାକାଙ୍‌କ୍ଷିତ ପୂତିଗନ୍ଧ ଓ ଧୂଳିମଳିରୁ ରକ୍ଷାପାଆନ୍ତା । ସେକ୍‌ସପିୟର, ରବୀନ୍ଦ୍ରନାଥ ସିନା ଲେଖିବେ, ଆମର ସେହି ନିଷିଦ୍ଧ, ମହାଜନ ସ୍ଥଳରେ ନିର୍ଭୀକ ପାଦଚାରଣା କରିବାରେ କି ଦରକାର ? କି ବା ଫଳ ? ସେ ଯାଦୁକରୀ ଲେଖନୀ କ'ଣ ଆମର ଅଛି ? ରବୀନ୍ଦ୍ରନାଥ ବା କାଳିଦାସଙ୍କ ସୃଷ୍ଟିର ସୌରଭ ଓ ମାଧୁର୍ଯ୍ୟର କଥା ଭାବିଲେ ମନରେ ଏପରି ନୈରାଶ୍ୟ ଆସେ ଯେ ସେମାନଙ୍କର ଉପସ୍ଥିତିରେ ନିଜକୁ ଲେଖକ ଶ୍ରେଣୀରେ ଗଣନା କରିବାକୁ ଲଜ୍ଜା ହୁଏ ଏବଂ ଯାହା ଲେଖିଛି ତାର ଅପଦାର୍ଥତା ପାଇଁ ଚିତ୍ତ ତିକ୍ତ ହୋଇଉଠେ ।

ତେବେ ଲେଖେ କାହିଁକି ? ଅଲ ଇଣ୍ଡିଆ ରେଡ଼ିଓ ଏ ପ୍ରଶ୍ନ ନ ଉଠାଇଥିଲେ ମୁଁ ନିଜକୁ ଏ ପ୍ରଶ୍ନ କେବେହେଲେ ପଚାରି ନ ଥାନ୍ତି ।

ବର୍ତ୍ତମାନ ବିଶ୍ଳେଷଣ ପ୍ରୟାସରେ ମୋର ଲେଖକ ଜୀବନର ସମଗ୍ର ଅତୀତକୁ ଚାହିଁବାକୁ ପଡ଼ୁଛି । ମୁଁ ସେହି ଦୀର୍ଘପଥର ଆରମ୍ଭ ପର୍ଯ୍ୟନ୍ତ ପଳାଇ ଦେଖୁଛି, ଯେ

ଯେଉଁ ସ୍ଥାନ ବା ଗୋଷ୍ଠୀରେ ମୋର ଜନ୍ମ ଓ ବାଲ୍ୟକାଳ କଟିଯାଇଛି, ସେଠି ଲେଖକର ସ୍ଥାନ ନ ଥିଲା କି ଲେଖକ ହେବାକୁ ମୋତେ କେହି କେବେ ଉତ୍ସାହିତ କିମ୍ବା ପ୍ରଣୋଦିତ କରିବାର ଲୋକ ନ ଥିଲେ। ଏ ପର୍ଯ୍ୟନ୍ତ ବି ମୋର ଗାଁର ଦାଦା, ଖୁଡ଼ୀ, ଭାଇବନ୍ଧୁମାନେ ଜାଣନ୍ତି ନାହିଁ ଯେ ମୁଁ ଏକ ତଥାକଥିତ ଲେଖକ। ଅସ୍ପଷ୍ଟ ଭାବରେ ଲେଖକ ବୋଲି କିଛି ଗୋଟାଏ ଶୁଣାଶୁଣିରୁ ଧାରଣା ଥିଲେ ମଧ୍ୟ, ମୁଁ କଣ ଲେଖେ ସେ ସମ୍ପର୍କରେ ସେମାନେ ଏକାବେଳକେ ଅଜ୍ଞ। କିନ୍ତୁ ଏଥିରେ ସେମାନଙ୍କ ଅପେକ୍ଷା ମୋର ଲଜ୍ଜା ହିଁ ଅନେକ। ମୁଁ କଣ କିପରି କବି ବା ଲେଖକ ହୋଇଛି ଅଥଚ ମୋର କୁଟୁମ୍ବ ବା ଗ୍ରାମବାସୀ ମୋର ପୁସ୍ତକ ପଢ଼ି ଆନନ୍ଦ ଲାଭ କରିପାରିଲେ ନାହିଁ, ଏହାଠାରୁ ମୋର ଲେଖକ ଜୀବନର ଅଧିକ ବ୍ୟର୍ଥତା, ଅଧିକ ପରମ ଥାଇପାରେ କି ? ମୁଁ ଅନେକ ବେଳେ ଏହି ଚିନ୍ତାରେ ମଧ୍ୟ ମ୍ରିୟମାଣ ହୁଏ ଏବଂ ନିଜକୁ ଧିକ୍‌କାର କରେ। ତଥାପି ଲେଖେ କାହିଁକି ?

ସୁଦୂର ବାଲ୍ୟକାଳର କଥା ଆଜି ମନେ ପଡ଼ୁଛି। ସନ ତାରିଖ ମନେ ନାହିଁ। କିନ୍ତୁ ଘଟଣା ହୁଏତ ସେ କାଳର ଭାରତେଶ୍ୱର ସପ୍ତମ ଏଡ଼ୱାର୍ଡ଼ଙ୍କର ସିଂହାସନ ଆରୋହଣ ବା ସେହିପରି କିଛି। ସେଇଥିପାଇଁ ଆମେ ପିଲେ ବଡ଼ଙ୍କର ଗ୍ରାହ୍ୟତାକୁ ଆସିଥିଲୁ ଏବଂ ଆମକୁ ମିଷ୍ଟାନ୍ନ ବଣ୍ଟନର ଐତିହାସିକ ଆବଶ୍ୟକତା ସ୍ୱୀକୃତ ହୋଇଥିଲା। ସେ କାଳରେ ପାରିକୁଦ ଗଡ଼ରେ ଯେଉଁ ମାଇନର ସ୍କୁଲ ଥିଲା, ସେଇଠି ପଢ଼ିବା ପାଇଁ ଆମର ଅଭିଭାବକମାନେ ମତେ ଓ ମୋର ଏକ ଦାଦି ପୁଅ ଭାଇଙ୍କୁ ଗ୍ରାମ୍ୟ ଜୀବନରୁ ନିକଟରେ କାଢ଼ି ଆଣିଥିଲେ। ସ୍କୁଲର ଉନ୍ମୁକ୍ତ ପ୍ରାଙ୍ଗଣରେ ଏକ ସଭାର ଯୋଗାଡ଼ ହେଲା। ଶିକ୍ଷକମାନେ, ସେଠାର ଭଦ୍ରବ୍ୟକ୍ତିମାନେ ଉପସ୍ଥିତ ଥିଲେ। ସେମାନଙ୍କ ଭିତରେ ଥିଲେ ମୋର ସାନ୍ତ ବାପା, ମୋର ଅଭିଭାବକ, ଇଷ୍ଟେଟର ସେକାଳର ବୃଦ୍ଧତମ କର୍ମଚାରୀ। ପିଲାମାନେ ସମସ୍ତେ କ୍ରୀଡ଼ାରତ। ମୁଁ କିନ୍ତୁ ଖେଳ ଛାଡ଼ି ସଭାରେ କଥା ଶୁଣିବାକୁ ବସିଥାଏ। ବୋଧେ ଭାରତେଶ୍ୱରଙ୍କ ସମ୍ବନ୍ଧରେ ତାଙ୍କର କୁଶଳ କାମନା କରି ବା ସେହିପରି ପ୍ରାସଙ୍ଗିକ କଥା ସବୁ କୁହାକୁହି ହୋଇଥିବ, ସେ ସବୁ ମୋର କିଛି ହିଁ ମନେ ନାହିଁ। କିନ୍ତୁ ଏଇ କଥା ହିଁ ମୋର ସ୍ପଷ୍ଟ ମନେପଡ଼େ ଯେ ସେହି ଗଣ୍ୟମାନ୍ୟ ବଡ଼ଙ୍କ ସଭାରେ ମୁଁ ଇଂଲଣ୍ଡେଶ୍ୱରଙ୍କ ସମ୍ବନ୍ଧରେ ଏକ ପଦ୍ୟ ଯାହା ଗାଉଥିଲି, ତାହା ପଢ଼ିଥିଲି। ଇଂଲଣ୍ଡର ରାଜବଂଶ ସମ୍ବନ୍ଧରେ ମୋର ଜ୍ଞାନ-ଲାଭ ପାଠ୍ୟ ପୁସ୍ତକର ସୀମାକୁ ଟପିଯିବ, ସେକାଳରେ ତ ଆଶା ହିଁ ନ ଥିଲା। କିଛି ନୂତନ ଶୁଣାଇବାର ଆଶା ହିଁ ବଡ଼ମୂଳା। ନୂତନତ୍ୱର ଏକମାତ୍ର ଚମକ ହେଉଛି ଗୋଟିଏ ବଡ଼ଙ୍କ ସଭାରେ ଅନାହୂତ ଏକ ବାଳକର ଅଯାଚିତ ଭାବରେ ପ୍ରବନ୍ଧ ପାଠ। ସେ ପ୍ରବନ୍ଧ ଏପରି ସାଙ୍ଘାତିକ ଯେ ତା'ର ବିନାଶ ଓ ବିଳମ୍ବ ପାଇଁ କାଳର ଦନ୍ତ ଦରକାର ନ ଥିଲା। ମୋର ସ୍ମୃତିପାଖେ ମୁଁ ଯେଉଁ ଆବର୍ଜନା ସ୍ତୂପ ସୃଷ୍ଟି କରେ ସେଇଥିରେ ହିଁ ଜୀବନର ସାରଶ୍ରେଣୀଙ୍କ ଅନ୍ୟ ପଦାର୍ଥମାନଙ୍କ ପରି, ତାହା ନିକ୍ଷିପ୍ତ ଓ

ବିଲୀନ ହୋଇଯାଇଛି । କିନ୍ତୁ ମୋର ଏତିକି ସ୍ମରଣ ହେଉଛି ଯେ, ଏହି ଗୀତପ୍ରଶସ୍ତି ପାଇଁ ମୋତେ କେହି ସେଦିନ ଅନୁରୋଧ ବା ଉତ୍ସାହିତ କରି ନ ଥିଲେ । ମୁଁ ତାହିଁକି ଲେଖିଲି, କପରି ବା ସାହସ କଲି, ବଡ଼ଙ୍କର ସଭାରେ ତାକୁ ପଢ଼ିଲି, ତାର ଉତ୍ତର କେବଳ ମନସ୍ତାତ୍ତ୍ୱିକ ଦେବେ । ହୁଏତ ଏହା ହିଁ ମୋର ଜୀବନର ପ୍ରଥମ ଲେଖା— ଗଦ୍ୟରେ ଆରମ୍ଭ, ଏକ ଦୈବୀ ସୂଚନା ଯେ ଜୀବନଟା ନିରାଟ ଗଦ୍ୟମୟ ହେବ— ଯାହା ହିଁ ହୋଇଛି ।

ଏଇ କାଳରେ ଆଉ ଏକ ଘଟଣା ଘଟିଥିଲା, ଯାହାକୁ ଏହି ମାନସିକ ବିଶ୍ଳେଷଣ ପାଇଁ ମତେ ଆଜି ପଦାରେ ପକାଇବାକୁ ପଡ଼ୁଛି । ଏବେ ମୁଁ ବହୁକାଳ ଧରି ଅପୌତ୍ତଳିକ । ହିନ୍ଦୁ ଦେବଦେବୀଙ୍କର ପ୍ରତିମାଙ୍କୁ ମୁଁ ନମସ୍କାର କରେନା । ମୋର ବର୍ତ୍ତମାନ ବଦ୍ଧ ଧାରଣା ଯେ ଏଇ ପୌତ୍ତଳିକତା ଓ ବ୍ରାହ୍ମଣ ନିର୍ଭର ସାମାଜିକ ଜୀବନ ପରିତ୍ୟାଗ ନ କଲେ ସାମଗ୍ରିକ ଭାବରେ ହିନ୍ଦୁ ସମାଜ କେବେହେଲେ ସଭ୍ୟ ବା ଉନ୍ନତ ହୋଇପାରିବ ନାହିଁ । କିନ୍ତୁ ସେହି ସୁଦୂର ବାଲ୍ୟଜୀବନରେ ମୁଁ ହିନ୍ଦୁ ଦେବଦେବୀଙ୍କର ଏକାନ୍ତ ଭକ୍ତ ଥିଲି । ଗଣେଶ ଓ ସରସ୍ୱତୀଙ୍କ ସ୍ତୋତ୍ର ମୁଖସ୍ଥ କରି ପ୍ରତ୍ୟହ ପାରାୟଣ କରୁଥିଲି । ଭିନ୍ନ ଭିନ୍ନ ଦେବଦେବୀଙ୍କୁ ତାଙ୍କର ମନ୍ଦିରେ ମନ୍ଦିରେ ଘୂରି ନିଜର ସେକାଳର ଛୋଟ ଛୋଟ ଦୁଃଖ କହି ଆସୁଥିଲି; ଯଦିବା ମୋର ଦରଖାସ୍ତ ବରାବର ନାମଞ୍ଜୁର ହେଉଥାଏ ।

ସେ ଯାହାହେଉ, ମୁଁ ଦିନେ ସ୍ୱୟଂ ସରସ୍ୱତୀଙ୍କୁ ସ୍ୱପ୍ନରେ ଭେଟିଲି । ଦେଖିଲି, କୌଣସି ମନ୍ଦିରକୁ ଯାଇଛି । ମନ୍ଦିରର କୌଣସି ଦ୍ୱାର ଦେଇ, କୌଣସି କକ୍ଷ ଭିତରେ ପଶିଲାକ୍ଷଣି ଦେବୀ ସରସ୍ୱତୀ ମୋର ଛୋଟ ବାଲ୍ୟଦେହକୁ ନେଇ କୋଳରେ ରଖିଲେ । ତାଙ୍କର ମସ୍ତକରେ ଜାଜ୍ଜ୍ୱଲ୍ୟମାନ ମୁକୁଟ । ମୁଖରେ କାରୁଣ୍ୟମୟ ସ୍ମିତ । ମତେ ସସ୍ନେହରେ ଆଉଁସିଲେ ଏବଂ କିଛି କହିଲେ, ଯାହାକି ମୋର ଆଜି ମନେ ନାହିଁ । ତାଙ୍କର କୋଳରେ ଥାଇ ଥାଇ ହିଁ ମୋର ନିଦ୍ରାଭଙ୍ଗ ହେଲା ।

ଏଇଟା କେବଳ ସ୍ୱପ୍ନ ହୋଇଥିଲେ ମୁଁ ଏଠାରେ ଉଲ୍ଲେଖ କରି ନ ଥାନ୍ତି । କିନ୍ତୁ ଏହା ସଙ୍ଗେ ମୋର ଲେଖକ ଜୀବନର ନଗଣ୍ୟ ଇତିହାସ ଜଡ଼ିତ । କାରଣ ବ୍ୟାଧ ଶରାହତ କ୍ରୌଞ୍ଚର କାରୁଣ୍ୟ ଯେପରି ବାଲ୍ମୀକିଙ୍କି କବିତାର ପ୍ରଥମ ପ୍ରେରଣା ଯୋଗାଇଥିଲା, ଏଇ ସ୍ୱପ୍ନ ହିଁ ହେଲା ମୋର ପ୍ରଥମ କବିତାର ଉପାଦାନ । ସେଦିନର ସମଗ୍ର ସକାଳ ମୋର ଚିତ୍ତ ସେହି ସ୍ୱପ୍ନର ଦୈବିକ ମାଧୁର୍ଯ୍ୟରେ ପରିପ୍ଲୁତ ହୋଇ ରହିଥିଲା । ମୁଁ ମାନସିକ ବିରାମ ବା ଆମୋଦ ପାଇଁ ଘଟଣାଟିକୁ ଲେଖି ବସିଲି । ମୋର ସାନ ବାପା ସେକାଳର ଉତ୍କଳ ସାହିତ୍ୟ ଓ ଉତ୍କଳ ଦୀପିକା ଆଦି ମଗାଇ ପଢ଼ୁଥିଲେ । ଘରେ ସେଦିନ ସକାଳେ ଖଣ୍ଡେ ପ୍ରାଚୀନ 'ଉତ୍କଳ ସାହିତ୍ୟ' ପାଇଲି ।

ସେଥିରେ ଅର୍ଦ୍ଧ କାଗଜର ଏକ ଛବି ଥିଲା—ଯାର ପଛ ପାଖଟା ଥିଲା ଫାଙ୍କା । ମୋର ମନେ ଅଛି ସେହି ଫାଙ୍କା ସ୍ଥାନରେ ଆରମ୍ଭ କରିଦେଲି ଏକ ପେନ୍‌ସିଲ୍ ସାହାଯ୍ୟରେ ମୋର ସରସ୍ୱତୀ ଦର୍ଶନର ବର୍ଣ୍ଣନା । ସେ ପୁଣି ଅମିତ୍ରାକ୍ଷରରେ । ଏ ବି ଏକ ଦୈବୀ ସୂଚନା । କାରଣ ଅକ୍ଷର ଚର୍ଚ୍ଚା ଯୋଗୁ ଉତ୍କଳରେ ମିତ୍ର ଅପେକ୍ଷା ଅଧିକ ଅମିତ୍ର ହିଁ ପ୍ରାପ୍ତ ହୋଇ ଆସିଛି । ଜୀବନ ହିଁ ହୋଇଛି ଯଥସ୍ଥାନ । ଛପା ବହିରେ କାହିଁକି ପେନ୍‌ସିଲ୍ ଗାରଉଛି କହି ଜଣେ ଦାଦା ମୋତେ ସେହି ମୁହୂର୍ତ୍ତରେ ହିଁ ଗାଳି ଦେଇଥିଲେ । ଲେଖିସାରିବା ପରେ କବିତାର ଖବର ଭୁଲିଯିବା ଏବେ ବି ମୋର ସ୍ୱାଭାବିକ ଅଭ୍ୟାସ । ତେଣୁ ମୋର ସେହି ଆଦ୍ୟ କବିତାଟି କୁଆଡ଼େ ଗଲା, ମୁଁ କହି ପାରିବିନି । କିନ୍ତୁ ସଦ୍ୟ ପୁରସ୍କାରଟା ମନେ ଅଛି । ଲେଖକ ପାଇଁ ସେହି ଶ୍ରେଣୀର ପୁରସ୍କାର ହିଁ ମୁଁ ବିଶେଷ ଭାବରେ ପାଇ ଆସୁଛି ।

ଆଜି ମନସ୍ତତ୍ତ୍ୱ ଦେଇ ବିଚାର କରି ଦେଖୁଛି ଯେ, ସ୍ୱପ୍ନରେ ସେହି ସରସ୍ୱତୀ ଦର୍ଶନର କୌଣସି ହେଲେ ଅର୍ଥ ନାହିଁ । କିନ୍ତୁ ମୁଁ ଆଜି ନିଜକୁ ପଚାରୁଛି, ସେ ଘଟଣାକୁ ମୁଁ ଲେଖିବାକୁ ଗଲି କାହିଁକି ? ତାକୁ ବା ଛନ୍ଦରେ ଲେଖିବାକୁ ଗଲି କାହିଁକି- ହେଉ ବା ସେ ଅମିତ୍ରାକ୍ଷର । ମୁଁ ନିଜେଇ ଯେ ପ୍ରଶ୍ନର ଉତ୍ତର ଜାଣେନା ।

ଏଇ ଶତାବ୍ଦୀର ଫ୍ରଏଡ଼ ଓ ୟୁଙ୍ଗ୍ ପ୍ରଭୃତି ମନସ୍ତାତ୍ତ୍ୱିକ ପଣ୍ଡିତମାନେ ମନୁଷ୍ୟ ମନର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ଦେଖିବାକୁ ଚେଷ୍ଟା କରିଛନ୍ତି, ମନୁଷ୍ୟର ସମଗ୍ର ପାର୍ଥିବ ଜୀବନର ମୂଳ ପ୍ରେରଣା, କେଉଁଠୁ ଆସେ ? ଫ୍ରଏଡ଼ କହନ୍ତି ଯେ, ଜଠର କ୍ଷୁଧା ଓ ଯୌନ କ୍ଷୁଧା ମନୁଷ୍ୟର ପ୍ରବଳତମ ପ୍ରବୃତ୍ତି । ରାଜମହଲଠାରୁ କୁଟୀର ପର୍ଯ୍ୟନ୍ତ ମନୁଷ୍ୟର ସକଳ ଛୋଟ ବଡ଼ କର୍ମର ତଳେ ଏଇ ଦୁଇ ପ୍ରବୃତ୍ତି ପ୍ରଚ୍ଛନ୍ନ ରହିଛି । ୟୁଙ୍ଗ୍ ଏକ ତୃତୀୟ ପ୍ରବୃତ୍ତି ଯୋଗ କରିଛନ୍ତି—ଯାର ଓଡ଼ିଆରେ ନାମ ହୋଇପାରେ ଆତ୍ମପ୍ରାଧାନ୍ୟ ଅର୍ଥାତ୍ ପ୍ରତ୍ୟେକ ବ୍ୟକ୍ତିର—ନାରୀ ହେଉ ବା ପୁରୁଷ ହେଉ— ଏକ ପ୍ରଚ୍ଛନ୍ନ, କିନ୍ତୁ ଗଭୀର ଅଭିଳାଷ ରହିଛି ସମାଜରେ ଦଶଜଣଠାରୁ, ଧନରେ, ମାନରେ ବା ବୁଦ୍ଧିରେ କୌଣସିଥିରେ ହେଲେ, ବଡ଼ ବୋଲି ଧରାଯାନ୍ତୁ ଓ ସେଥିପାଇଁ ଅନ୍ୟଙ୍କଠାରୁ ଆଦର ଓ ସମ୍ମାନ ପାଆନ୍ତୁ । ମସୋଲିନିର ଦିଗ୍‌ବିଜୟର ସ୍ୱପ୍ନଠାରୁ ଗାଁ ମହାଜନର ଜମିମମତା ପର୍ଯ୍ୟନ୍ତ ଯେତେସବୁ ଅମାନୁଷିକ ସ୍ୱାର୍ଥକେନ୍ଦ୍ରିକ କର୍ମ ଆମେ ଜଗତରେ ଦେଖିବାକୁ ପାଉ, ସେ ସବୁର ମୂଳରେ ଏଇ ଆତ୍ମପ୍ରାଧାନ୍ୟର ପ୍ରେରଣା ।

ଜଣେ ଲେଖକ କାହିଁକି ଲେଖେ, ତା'ର ଉତ୍ତର ହୁଏତ ମନୁଷ୍ୟର ଏଇ ତିନି ପ୍ରଧାନ ପ୍ରବୃତ୍ତିରେ ଓତପ୍ରୋତ ରହିଛି । ହୁଏତ ଲେଖକ କ୍ଷୁଧାର ତାଡ଼ନାରୁ

ରକ୍ଷା ପାଇବା ପାଇଁ ଅର୍ଥାତ୍ ଜୀବିକାର ଉପାୟ ରୂପେ ଲେଖିଆଇପାରେ । ପୂର୍ବେ ରାଜାମାନେ ସ୍ତୁତିକାରକ କବିମାନଙ୍କର ଭରଣପୋଷଣର ଭାର ନେଉଥିଲେ । ଆମର-ପରମ ବରେଣ୍ୟ କାଳିଦାସ ହୁଏତ ଏହି କାରଣରୁ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ଦରବାରର ଆଶ୍ରୟ ନେଇଥିଲେ । ସେହି ମହାକବିଙ୍କ ଆତ୍ମ-ପ୍ରାଧାନ୍ୟ ମଧ୍ୟ ଯେ ପ୍ରଭାବିତ କରିଥିବ, ଏହା ସ୍ୱାଭାବିକ । ନବରତ୍ନଙ୍କ ମଧ୍ୟରେ ଶ୍ରେଷ୍ଠତମ ରତ୍ନ ହେବାରେ ଆତ୍ମପ୍ରସାଦ ଅନୁଭବ ନ କରିବା ହିଁ କୌଣସି ମନୁଷ୍ୟ ପକ୍ଷରେ ଅସ୍ୱାଭାବିକ । ମହାକବିଙ୍କ ରଚନାରେ ଯୌନକ୍ଷୁଧା ଯେ ମଧୁର ଓ ମହିମାମୟ ଆତ୍ମପ୍ରକାଶ କରିଛି, ତାହା ଆଉ କାହାକୁ ବୁଝାଇ ଦେବାକୁ ହେବ ନାହିଁ । ମେଘଦୂତରେ ସେହି ପ୍ରଣୟଦଗ୍ଧ କବିଙ୍କର ନିଜର ନିବିଡ଼ ବିରହ-ବେଦନା ହିଁ ଯେ ଜବାପୁଷ୍ପ ପରି ପ୍ରାଣର ରକ୍ତରେ ରକ୍ତାଭ ହୋଇ ଫୁଟି ବାହାରିଛି, ଏଥିରେ ସନ୍ଦେହ ନାହିଁ ।

ଉତ୍କଳ ଦେଶରେ ଜୀବିକାର ଉପାୟ ରୂପେ ସାହିତ୍ୟକୁ ଆଶ୍ରୟ କରିବାର ଯୁଗ ଏ ଯାଏ ଆସି ନାହିଁ । ସାହିତ୍ୟର 'ବ୍ୟବସାୟୀ'ଙ୍କୁ କଳିରେ ହାତ ପକାଇ ବୁଲିବାର ଦେଖୁଁ, କିନ୍ତୁ ଅସଲ ସାହିତ୍ୟିକ ସେହି ପୂର୍ବପରି ଦରମଲା, ଗୃହହୀନ, ବୁଭୁକ୍ଷୁ । ମୁଁ ପାନ, ସିଗାରେଟ୍ ଆଦି ବ୍ୟବହାର କରେନା । ଯଦି କରୁଥାନ୍ତି, ତେବେ ଏଯାବତ ମୋର କବିତାବିମାଳାରୁ ମୁଁ ଯାହା ପାଇଛି ତାହା ସେହି ପାନ ସିଗାରେଟ୍ ପାଇଁ ମଧ୍ୟ ଅକୁଳାନ ହୁଅନ୍ତା । ମୋତେ ଯଦି କେବଳ ମୋର ବହିର ବିକ୍ରୟଲବ୍ଧ ଅର୍ଥ ଉପରେ ନିର୍ଭର କରିବାକୁ ପଡ଼ୁଥାନ୍ତା, ତେବେ ମୁଁ ଏ ଯାଏ ବଞ୍ଚି ରହିଥାନ୍ତି କି ନା, ସନ୍ଦେହ । ଆମ ଅଭିଧାନରେ ଅର୍ଥ ଶବ୍ଦର ୨ଟି ଅର୍ଥ ଅଛି, ଯାହା କି ପରସ୍ପର ବିରୋଧୀ, ଯେଉଁ ଅର୍ଥ ଯୋଗୁ ସାହିତ୍ୟ, ସମାଜରେ ଆଦରଣୀୟ ବସ୍ତୁ ସେହି ସୂକ୍ଷ୍ମ ଅବାସ୍ତବ ପଦାର୍ଥଟି କେବଳ ସାହିତ୍ୟିକ ପାଏ, କିନ୍ତୁ ଯେଉଁ ଅର୍ଥରେ ମନୁଷ୍ୟ ସୁଖ ସ୍ୱାଚ୍ଛନ୍ଦ୍ୟରେ କୋଠା ଉପରେ ଚକା ପକାଇ ବସେ, ତାହା ପାଏ ସାହିତ୍ୟ ବ୍ୟବସାୟୀ ।

ଏ ତ ଗଲା ଅର୍ଥ ଜୀବିକା ପାଇଁ ମୋର ସାହିତ୍ୟ-ସେବା । ତେବେ, ମୁଁ ନିରାସକ୍ତ ସନ୍ନ୍ୟାସୀ ନୁହେଁ । ବାହାରୁ ଯଦୃଚ୍ଛା କ୍ରମେ ଯେଉଁ ଦି'ପଇସା ଆସିଥାଏ, ବେଳେବେଳେ ତାକୁ ଯେ ମୁଁ ଅନାଇ ରହିଥାଏ, ଏହା କହିବାରେ ଲଜ୍ଜା କିଛି ନାହିଁ । ଅର୍ଥ ପ୍ରତି ସେ ଲୋଲୁପତା ନ ଥିଲେ ଅଲଇଣ୍ଡିଆ ରେଡ଼ିଓର ନିମନ୍ତ୍ରଣ ରକ୍ଷା କରି ମୁଁ ମୋର ନିଜର ଆତ୍ମା ଉପରେ ଅସ୍ତ୍ର ପ୍ରୟୋଗ କରି ନ ଥାନ୍ତି, ଯାହାକି ବର୍ତ୍ତମାନ କରୁଛି ।

ଯାହା ଯୌନ କ୍ଷୁଧା, ମାନବ ସମାଜରେ ତାହା ପ୍ରେମ, ଯାହା ଇତର-ପ୍ରାଣୀଙ୍କ ନିକଟରେ କେବଳ ପ୍ରଜନନର ଉପାୟ ମାତ୍ର, ମନୁଷ୍ୟ ନିକଟରେ ତାହା ହିଁ

ହେଉଛି ସଙ୍ଗୀତ, ସାହିତ୍ୟ, କଳା, ଶିଳ୍ପ, ନୃତ୍ୟର ଜନନୀ । ଯୌବନର ପ୍ରାତଃ କାଳରେ ନାରୀ, ପୁରୁଷ ଭିତରେ ଯେଉଁ ହୃଦୟ ମନ୍ଥନ ସୃଷ୍ଟି କରେ, ସେଇଥିରୁ ଆବିର୍ଭୂତ ହୁଏ ପ୍ରାଣସ୍ପର୍ଶୀ କବିତା, ଅନୁପମ ଚିତ୍ର ସମ୍ପଦ, ଅମୂଲ୍ୟ ଶିଳ୍ପ । ଜୀବନର ପ୍ରଥମ ପାଦରେ, ମୋ ଭିତରେ ଥିବା ଅନଭିଜ୍ଞ ସରଳ କବି ବିସ୍ମୟକର ହୃଦୟଟି, ଏହିପରି ଭାବରେ ବାରମ୍ବାର ଅଭିଭୂତ ହୋଇଛି ଏବଂ ସେହି ତୀବ୍ର ଅନୁଭୂତିର ତାଡ଼ନାରେ ତା ଠାରୁ ଯେ କିଛି କାବ୍ୟ କବିତା ବାହାରିଛି, ଏହା ଏ ଦେଶର ପାଠକମାନଙ୍କ ନିକଟରେ ବୋଧହୁଏ ଜଣାଶୁଣା କଥା । କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ନାରୀ ବା ପୁରୁଷ ଯେ ମୋର ସାହିତ୍ୟିକ ଜୀବନର ମୂଳ ଉତ୍ସ ଏକଥା ସ୍ୱୀକାର କରିବାର କୌଣସି କାରଣ ମୁଁ ଦେଖୁ ନାହିଁ । ଜୀବନ ପଥର ବହୁ ଅଭିଜ୍ଞତା ଭିତରେ ସେମାନଙ୍କ ସହିତ ଦେଖାଦେଖି ଓ ଚିହ୍ନାଚିହ୍ନି । ସେହି ସ୍ଥାନ ଓ ସେହି କାଳରେ ସେହି ଅବସ୍ଥାନରେ ଅନ୍ୟ କେହି ଆସିଥିଲେ ମଧ୍ୟ ହୁଏତ ସେହି ଆତ୍ମିକ ଆଲୋଡ଼ନ ଘଟିଥାନ୍ତା । ଗୋଲାପ ଓ ପଦ୍ମ ତୋଳିବାକୁ ଗଲେ ରୂପ ଓ ସୌରଭ ଭୋଗ ସଙ୍ଗେ କିଛି ପଙ୍କ ଲେପନ ଓ କଣ୍ଟକାଘାତ ଯେପରି ସ୍ୱାଭାବିକ କଥା, ମୋ ଭାଗ୍ୟରେ ତାହା ହିଁ ଘଟିଥିବାରୁ ଜଗତର ପ୍ରତ୍ୟେକ ଜିନିଷକୁ ଆଲୋକ ଅନ୍ଧକାରର ମିଶ୍ରଣ ବୋଲି ଦେଖିବାକୁ ଶିଖିଛି । କବିର ମଧ୍ୟ ଜ୍ଞାନଦାନ୍ତ ଦିନେ ଉଠେ ।

ବାକି ରହିଲା ଆତ୍ମ-ପ୍ରତିଷ୍ଠା । ମୋତେ ମନେ ହେଉଛି ଏଇ ପ୍ରବୃତ୍ତି ହୁଏତ ମୋର ସାହିତ୍ୟିକ ଜୀବନର ପ୍ରଚ୍ଛନ୍ନ ପ୍ରେରଣା । ମୁଁ ଯେ ସବୁମତେ କେତେ ଅପଦାର୍ଥ ତାହା ସହଜରେ ଅନ୍ୟ ଲୋକଙ୍କୁ ବୁଝେଇ ହେବନି । ଯେତେବେଳେ ଏକାକୀ ବସି ଆତ୍ମସ୍ଥ ହୁଏ, ମୋ ଚିତ୍ତରେ ପ୍ରଧାନତମ ଆତ୍ମ ପ୍ରଶ୍ନ ହେଉଛି "ବିଧାତା, ତମେ ମତେ ଜନ୍ମ ଦେଇଥିଲ କାହିଁକି ? ମୁଁ କେଉଁ କାମକୁ ଉପଯୁକ୍ତ ? ଏପରି ଏକ ଅକର୍ମଣ୍ୟ ଜୀବ ସଂସାରକୁ ପଠେଇବାର କି ଦରକାର ଥିଲା ?" ଅକର୍ମଣ୍ୟତାର ଏହି ଅସହ୍ୟ ଅଭିଶାପରୁ ନିଜକୁ ବଞ୍ଚେଇ ରଖିବା ପାଇଁ, ନିଜର ଏଇ ପାର୍ଥିବ ଜୀବନଟାର କିଞ୍ଚିତ ହେଲେ ଯଥାର୍ଥତା ଅନ୍ତତଃ ଦଶଜଣଙ୍କ ଆଗରେ ଉପସ୍ଥାପିତ କରିବା ପାଇଁ ମୁଁ ହୁଏତ ସାହିତ୍ୟର ଆଶ୍ରୟ ନେଇଛି ।

କିନ୍ତୁ ଜୀବନର ଅନ୍ୟ ସମସ୍ତ କ୍ଷେତ୍ରରେ 'ସଜ୍ଞ' ଚେଷ୍ଟା ପ୍ରବୃତ୍ତିର ପ୍ରଥମ ଆବଶ୍ୟକତା ଥିଲାବେଳେ କବି ଜୀବନରେ ତାହା ମାରାତ୍ମକ ବୋଲି ମୋର ମତ । ଚେଷ୍ଟା କରି ଉତ୍କୃଷ୍ଟ କବିତା ସୃଷ୍ଟି କରିବା ଘାସରୁ ଅତର ବାହାର କରିବା ସଭବ ପରି ଅସମ୍ଭବ । ତେଣୁ ମୋର ସାହିତ୍ୟ-ସେବା ଯଦୃଚ୍ଛା ଲବ୍ଧ ସନ୍ତୁଷ୍ଟ । ଏହାର କୌଣସି ଲକ୍ଷ୍ୟ ନାହିଁ, ଏଥିପାଇଁ କୌଣସି ସାଧନା ମୁଁ କରି ନାହିଁ । ଏକମାତ୍ର କୃଚ୍ଛ୍ର ଭୋଗ ଏହି ଯେ ଯେତେବେଳେ କୌଣସି କାବ୍ୟ ବା କବିତା ବା ରଚନା ଆସେ ହୋଇପଡ଼େ, ତା ସାରିବା ପାଇଁ ମତେ ଅନେକ ବେଳେ ମଧ୍ୟ ରାତ୍ରିର ତୈଳ ଜାଳିବାକୁ

ପଡ଼େ, ଯାହାଙ୍କ ଉପଜୀବନରେ କୌଣସି ହେଲେ ପରୀକ୍ଷା ଯାଇଁ କେବେହେଲେ କରି ନାହିଁ । ଆରମ୍ଭ କରି ନ ପାରିଲ ଯାଏ ମନରେ ଶାନ୍ତି ନ ଥାଏ ।

ଜଗତର ସମସ୍ତ ଅକମ୍ପ ଐଶ୍ୱର୍ଯ୍ୟତାଠାରେ ଜୀବନରେ ଯାହା ମହତ୍, ଯାହା ସୁନ୍ଦର, ଯାହା ସତ୍ୟ ମୁଁ କିନ୍ତୁ ରହି ଆସିଛି କେବଳ ତାହାରି ହିଁ ଉପାସକ ଓ ଭକ୍ତ । କୌଣସି ଗୋଷ୍ଠୀ, ଦଳ ବା 'ଇଜମ୍'ର ପ୍ରଚାରକ ରୂପେ ଠିଆହେବା ମୋର ସ୍ୱଭାବ-ବିରୁଦ୍ଧ । ମୁଁ ମୋର "କମଳାୟନ" କାବ୍ୟରେ ଏହା ହିଁ ଦେଖାଇବାକୁ ଯାଇଛି ଯେ ଦଳ ଓ ଦେଶ ଅପେକ୍ଷା ବ୍ୟକ୍ତି ଓ ମାନବ ବଡ଼ । ସେଥିପାଇଁ କମଳ ତାର ଗୁଣ୍ଡାନୈତିକ ଦଳ ଛାଡ଼ି ବିଶ୍ୱ ମାନବ ଜାତିର ସେବାରେ ବାହାରି ପଡ଼ିଛି । କୌଣସି ସ୍ଲୋଗାନ ମନୁଷ୍ୟର କଲ୍ୟାଣ ଆଣି ପାରିବ ନାହିଁ; ଯେତିକି ଆଣିବ ବ୍ୟକ୍ତିର ସ୍ୱକୀୟ ଶୃଙ୍ଖଳା, ନିଃସ୍ୱାର୍ଥପରତା, ସତ୍ୟ ପ୍ରତି ବିଶୁଦ୍ଧ ଅନୁରାଗ । ଜାତି ଓ ସାମ୍ପ୍ରଦାୟିକ ଗୋଷ୍ଠୀ ଭିତରେ ଓ ବ୍ୟକ୍ତିଗତ ଜୀବନରେ, ନିଃସ୍ୱାର୍ଥ ବିଶୃଙ୍ଖଳା ପ୍ରଚାର କରିବା ଏକାନ୍ତ କର୍ତ୍ତବ୍ୟ । ଯେ ପର୍ଯ୍ୟନ୍ତ ମୁଁ ସ୍ୱାର୍ଥର ଉପରକୁ, ସାମାଜିକ ଓ ବ୍ୟକ୍ତିଗତ ଜୀବନର ନାନା କ୍ଷୁଦ୍ର ଲାଳସାର ଉପରକୁ ଉଠିପାରି ନାହିଁ, ସେ ପର୍ଯ୍ୟନ୍ତ କେବଳ କୌଣସି ସ୍ଲୋଗାନ ଗାଇ, କୌଣସି 'ଇଜମ୍'ର ପଣ୍ଡା ହୋଇ ଜନସାଧାରଣଙ୍କୁ ସେହି ଲକ୍ଷ୍ୟରେ ମତାଇବା ଏକାନ୍ତ ଗର୍ହିତ କର୍ମ ବୋଲି ମୋର ମତ । ବ୍ୟକ୍ତିର ସମାଜକୁ ପ୍ରଧାନତମ ଦାନ ହେଉଛି, ତାର ଅକଳୁଷ ଚରିତ୍ର, ଅନନ୍ୟ ସାଧୁତା ଓ ସ୍ୱାର୍ଥଲେଶହୀନ ଉପଚିକୀର୍ଷା । ଯେତେ 'ଇଜମ୍', ଯେତେ ସ୍ଲୋଗାନ, ତାହା ସବୁ ଏ ପ୍ରକାର ଶୁଭ୍ର ନିଷ୍କଳଙ୍କ ବ୍ୟକ୍ତିତ୍ୱର ପଛକୁ । ତେଣୁ ହିଁ, ମୁଁ ଗାନ୍ଧୀ, ଗୋପବନ୍ଧୁଙ୍କର ସ୍ତାବକ । ମୁଁ ସେମାନଙ୍କର ଦଳରେ ନୁହେଁ ବା ସେମାନଙ୍କର କର୍ମ ବା ଚିନ୍ତାର ଧାରା ସମ୍ବନ୍ଧରେ ମୋର କୌଣସି ମତାନ୍ଧତା ନାହିଁ । ଦରକାର ହେଲେ ସେମାନଙ୍କର କର୍ମ ଓ ଚିନ୍ତାଧାରାର ସମାଲୋଚନା କରିଛି ଓ କରିପାରେ; କିନ୍ତୁ ତାଙ୍କ ବ୍ୟକ୍ତିତ୍ୱ ନିକଟରେ ମୁଁ ନତମସ୍ତକ କାରଣ ସେହି ବ୍ୟକ୍ତିର ଭିତରେ ହିଁ ମୁଁ ସତ୍ୟ, ଶିବ, ସୁନ୍ଦରର ବିକଚ ବିକାଶ ଦେଖିବାକୁ ପାଏ ।

ହୁଏତ, 'ମୁଁ କାହିଁକି ଲେଖେ' ମୁଁ ଏହାର ସ୍ପଷ୍ଟ ଉତ୍ତର ଦେଇପାରିଲି ନାହିଁ, ପାରିବ ମଧ୍ୟ ନାହିଁ । କିନ୍ତୁ ମୁଁ ଅନ୍ତରକୁ ଗୁହିଁ ଅନୁଭବ କରୁଛି ଯେ, ଏ ପ୍ରଶ୍ନ ମୋର ମୂଳରୁ କାଳକୁ ପଚାରିବାର ଥିଲା । ୟୁରୋପରେ ବିବର୍ତ୍ତନବାଦ କେବଳ ବାହ୍ୟ ପ୍ରକୃତିରେ ଘଟେ ବୋଲି ପ୍ରଚାରିତ ହୋଇ ଆସିଛି । ଭାରତ କିନ୍ତୁ ତାର 'ଧର୍ମ' ଦେଇ ବିବର୍ତ୍ତନ-ବାଦକୁ ମନୁଷ୍ୟର ଆତ୍ମିକ ବିକାଶରେ ନିୟୋଜିତ କରିଛି । ବେଦାନ୍ତର କର୍ମ, ଜ୍ଞାନ ଓ ଭକ୍ତି ଯୋଗ କେବଳ ସଙ୍ଗ ବିବର୍ତ୍ତନବାଦ ଛଡ଼ା ଅନ୍ୟ କିଛି ନୁହେଁ । ଅର୍ଥାତ୍ ଏଥିରୁ ଯେ କୌଣସି ଗୋଟିକର ଆଶ୍ରୟ ନେଲେ ମନୁଷ୍ୟ ଅନ୍ଧକାରରୁ ଆଲୋକକୁ, ସ୍ଥୂଳରୁ ସୂକ୍ଷ୍ମକୁ, ମୃତ୍ୟୁରୁ ଅମୃତକୁ, ପଶୁରୁ ଦେବତ୍ୱକୁ ଉନ୍ନୀତ ହେବ । ଭାରତୀୟ

ଧର୍ମର ନିର୍ଦ୍ଦେଶ ଏହି ଯେ ରାଜାଠାରୁ ପାରିଆ ପର୍ଯ୍ୟନ୍ତ ପ୍ରତ୍ୟେକେ ନିଜ ନିଜର ସାମାଜିକ କର୍ତ୍ତବ୍ୟ ମଧ୍ୟ ଦେଇ ହିଁ ବିବର୍ତ୍ତିତ ହେବାର ପୂର୍ଣ୍ଣ ସୁଯୋଗ ଅଛି । ମୁଁ ମନେ କରେ କବି ଓ ଲେଖକ ପକ୍ଷରେ, ସାହିତ୍ୟ ଓ କବିତା, ଏହି ଆତ୍ମୋନ୍ନୟନର ଏକ ପରମ ଉପାୟ । କବି, ତାର ସୃଷ୍ଟିକୁ ନିଜକୁ ଓ ତାର ଜାତିକୁ ବିବର୍ତ୍ତନର ବାହନ ରୂପେ ବ୍ୟବହାର କରିପାରେ ଓ କରିବା ଉଚିତ । ସାହିତ୍ୟ କେବଳ ଜୀବିକାର ବା ଖ୍ୟାତିର ବା ଶସ୍ତା ନାମର ଉପାୟ ରୂପେ ବ୍ୟବହୃତ ହେବା, ରେଶମର ରସିକୁ ମଇଁଷିର ବେକରେ ପଘା ରୂପେ ବ୍ୟବହାର କରିବାଠାରୁ ମଧ୍ୟ ନୀଚତର କର୍ମ । ମୋ ନିକଟରେ ସାହିତ୍ୟର ଏହି ମହତ୍ ଆଦର୍ଶ କିନ୍ତୁ, ନିକଟ ଅତୀତରେ ହିଁ ଧୀରେ ଧୀରେ ପ୍ରକଟିତ ହୋଇଛି । ଏ ଯାବତ୍, ମଧୁର ମାନବିକ ବ୍ୟକ୍ତିର, ମନୁଷ୍ୟ ହୃଦୟର ଆଲୋଡ଼ନ, ସତ୍ୟର ମହିମା ଏବଂ ପ୍ରକୃତି ଓ ମନୁଷ୍ୟର ରୂପ ଯେତେବେଳେ ଯେପରି ଭାବରେ ମତେ ପ୍ରଭାବିତ କରିଛନ୍ତି, ମୁଁ ସେହିପରି ଲେଖି ଆସିଛି । ସେହି ଆକସ୍ମିକ ପ୍ରେରଣାରେ ହିଁ "ମୁଁ କାହିଁକି ଲେଖେ"ର ଉତ୍ତର । ମୋ ରଚନାରେ ମୋ ଆଦର୍ଶ କେତେଦୂର ପ୍ରତିଫଳିତ ତାହା କେବଳ ପାଠକମାନଙ୍କର କହିବାର କଥା ।



# ଓଡ଼ିଆ ସାହିତ୍ୟରେ ମାନସିଂହଙ୍କ ଆବିର୍ଭାବ

ଇଂରେଜମାନେ ଓଡ଼ିଶା ଦଖଲ କରିବା ବେଳକୁ ଓଡ଼ିଶାର ଅବସ୍ଥା ଏଭଳି ଶୋଚନୀୟ ହୋଇଥିଲା ଯେ ଓଡ଼ିଆ ଭାଷା ରହିବ କି ନା ଏ କଥା ନେଇ ଘୋର ସନ୍ଦେହ ପରକାଳରେ ଏହି ଓଡ଼ିଶା ମାଟିରେ ଦେଖାଦେଇଥିଲା । ଇଂରେଜମାନଙ୍କର ଓଡ଼ିଶା ଦଖଲ ପୂର୍ବରୁ ମରହଟ୍ଠାମାନେ ଏ ଦେଶ ଶାସନ କରୁଥିଲେ । ଏମାନଙ୍କ ସମୟରେ ଖ୍ୟାତନାମା ସାହିତ୍ୟିକ ଥିଲେ ବ୍ରଜନାଥ ବଡ଼ଜେନା । ବ୍ରଜନାଥ ଓଡ଼ିଆ ଓ ହିନ୍ଦିରେ କାବ୍ୟ ରଚନା କରିଥିଲେ ଏବଂ କଥାସାହିତ୍ୟର ସ୍ରଷ୍ଟା ଥିଲେ ।

ଅଷ୍ଟାଦଶ ଶତକର ମଧ୍ୟଭାଗରୁ ଊନବିଂଶ ଶତକର ଅଷ୍ଟମ ଦଶକ ଯାଏ ଓଡ଼ିଆରେ କୌଣସି ଉଲ୍ଲେଖଯୋଗ୍ୟ ସାହିତ୍ୟ କୃତି ନଜରରେ ପଡ଼େ ନାହିଁ । ରାଧାନାଥ ରାୟ ଓଡ଼ିଆରେ ଲେଖିବାକୁ ଆରମ୍ଭ କଲେ ୧୮୮୦ ବେଳକୁ, ବଙ୍ଗାଳୀ ଇନ୍‌ସପେକ୍ଟର ଭୁଦେବ ମୁଖାର୍ଜୀଙ୍କ ପ୍ରରୋଚନାରେ । ତତ୍‌ପୂର୍ବରୁ ତାଙ୍କର ସାହିତ୍ୟ-ରଚନାର ଭାଷା ବଙ୍ଗଳା ଥିଲା ।

ରାଧାନାଥଙ୍କ ବଳିଷ୍ଠ ଲେଖନୀ ଓଡ଼ିଆ ଭାଷା ତଥା ସାହିତ୍ୟକୁ ନୂତନ ଜୀବନ ଦେଲା । ଏହି କବିଙ୍କୁ ଆଶ୍ରୟ କରି ଯେଉଁମାନେ ଓଡ଼ିଆ ସାହିତ୍ୟର ସାଧନା କଲେ ସେମାନଙ୍କୁ ରାଧାନାଥଙ୍କ ଉପକବି ବୋଲି ବୋଲାଯାଇପାରେ, କାରଣ ସେମାନେ ତାଙ୍କଦ୍ୱାରା ବହୁଳ ଭାବରେ ପ୍ରଭାବିତ ହୋଇଥିଲେ ଏବଂ ପ୍ରକାଶ୍ୟରେ ତାଙ୍କୁ ଅନୁକରଣ କରୁଥିଲେ ।

ରାଧାନାଥ କାବ୍ୟ ରଚନା ପାଇଁ ଓଡ଼ିଆ ଭାଷା ଗ୍ରହଣ କରି ଓଡ଼ିଆ ଛନ୍ଦ-ଗୁଡ଼ିକର ପୁନଃପ୍ରଚଳନ କରିଥିଲେ । ବିଷୟବସ୍ତୁ ପାଇଁ ସେ ନିର୍ଭର କରୁଥିଲେ ମୁଖ୍ୟତଃ ପଶ୍ଚିମର ସାହିତ୍ୟ ଉପରେ । ରାଧାନାଥଙ୍କ ସମୟରେ ବଙ୍ଗଳାରେ ଯେଉଁମାନେ କାବ୍ୟ ରଚନା କରି ବିଖ୍ୟାତ ହୋଇଥିଲେ, ସେମାନଙ୍କ ପ୍ରଭାବରୁ ସେ

ନିଜକୁ ମୁକ୍ତ କରିପାରି ନ ଥିଲେ । ରାଧାନାଥ ଯୁଗର ସାହିତ୍ୟ ସମସାମୟିକ ବଙ୍ଗଳା ସାହିତ୍ୟର ଓଡ଼ିଆ ସଂସ୍କରଣ ।

ସାହିତ୍ୟର ଆଦର୍ଶ ପାଇଁ ରାଧାନାଥ ବଙ୍ଗଳା ଆଡ଼କୁ ଯେଉଁ ବାଟ ଖୋଲି-ଦେଲେ, ପରଯୁଗର ସାହିତ୍ୟିକମାନେ 'ମହାଜନ ପନ୍ଥା' ଅନୁସରଣ କରି ବଙ୍ଗଳାକୁ ଅନେଇଲେ ଭାଷା, ଭାବ ଓ ଶୈଳୀ ପାଇଁ । ବଙ୍ଗୀୟମାନେ ମୁଗଲ ରାଜତ୍ୱବେଳୁ ଓଡ଼ିଶାରେ ବଙ୍ଗୀୟ ସଂସ୍କୃତିର ପରିପ୍ରସାର କରିବାରେ ଲାଗିଥିଲେ । ଫଳରେ ଓଡ଼ିଶାର ପାରମ୍ପରିକ ସାହିତ୍ୟ, ଯାହାକି ସଂସ୍କୃତିର ଆଦର୍ଶରେ ପ୍ରାକୃତଜନଙ୍କ ପାଇଁ ରଚିତ ହୋଇଥିଲା, ସେଥିରୁ ନବ ସାହିତ୍ୟ ବିଚ୍ଛିନ୍ନ ହୋଇଗଲା । ଏଥିପାଇଁ ନାନା ଗଣ୍ଡଗୋଳ ହୋଇଥିବାର ସଙ୍କେତ ଓଡ଼ିଆ ସାହିତ୍ୟର ଇତିହାସରେ ଅଛି । ପରିଶେଷରେ ଓଡ଼ିଶାର ପ୍ରାଚୀନ କାବ୍ୟସାହିତ୍ୟ ଯାହାକୁ ଏବେ ମଧ୍ୟ ଯୁଗୀୟ ସାହିତ୍ୟ ବୋଲି ଆଖ୍ୟା ଦିଆଯାଉଛି, ତାହା ପରିତ୍ୟକ୍ତ ହେଲା । ରାଧାନାଥଙ୍କ ପରଯୁଗର ସାହିତ୍ୟ ସେହି ନିଶାଣ ବହନ କରିଛି ।

ସବୁଠାରୁ ନିର୍ଲଜ୍ଜ ଅନୁକରଣ କରିଥିଲେ ସବୁଜ ଦଳର କବିମାନେ । ରବୀନ୍ଦ୍ରନାଥଙ୍କ କବି ପ୍ରତିଭା ସେତେବେଳକୁ ପୂର୍ବ ଭାରତର ଆକାଶକୁ ଲାଲେ ଲାଲ କରି ରଖିଥାଏ । ରେଭେନଶ କଲେଜରେ ମଧ୍ୟଯୁଗୀୟ ଇଂରେଜ କବିମାନଙ୍କର କବିତା ପଢ଼ା ହେଉଥାଏ । ସବୁଜମାନେ ଦେଖିଲେ ଶେଲୀ, ବାଇରନ, ଉଥ୍‌ଡ଼୍‌ସ୍‌ୱାର୍ଥଙ୍କ ସମକକ୍ଷ ସାହିତ୍ୟ ବଙ୍ଗଳାରେ ପ୍ରଚୁର ରଚନା କରିଛନ୍ତି ରବୀନ୍ଦ୍ରନାଥ । ଏମାନେ ରବୀନ୍ଦ୍ରନାଥଙ୍କୁ ଆଦର୍ଶ କରି ଓଡ଼ିଆରେ ତାଙ୍କର କବିତାର ଅନୁକରଣ ଚଳେଇଲେ । "ଉତ୍କଳ ସାହିତ୍ୟ"ର ସହାୟତାରେ ସବୁଜମାନେ ଓଡ଼ିଆ କବିତା କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କଲେ । କିନ୍ତୁ ସବୁଜ କବିତା କେବଳ କଳ୍ପନା ବିଳାସରେ ଯେ ସମାହିତ ହେଲା, ତା ନୁହେଁ ଏହା ପାରମ୍ପରିକ ଓଡ଼ିଆ ସାହିତ୍ୟରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ଏକ ବଙ୍ଗାଳି ଢଙ୍ଗର ଓଡ଼ିଆ ପରିମ୍ପୁରଣ ହେଲା ।

ସତ୍ୟବାଦୀର କବିଯୁଗଳ ରାଧାନାଥ ଓ ସବୁଜଦଳଙ୍କ ଅପଚେଷ୍ଟାର ବିରୋଧ କରିଥିଲେ । ଗୋପବନ୍ଧୁ ରାଧାନାଥଙ୍କ ପ୍ରଭାବରୁ ମୁକ୍ତ ନ ହେଲେ ମଧ୍ୟ ନୀଳକଣ୍ଠ-ଗୋଦାବରୀଶ କାବ୍ୟ ସାହିତ୍ୟରେ ଯେଉଁ ନୂଆ ଚଳଣି ଆରମ୍ଭ କଲେ ତାହା ଓଡ଼ିଶାର ପାରମ୍ପରିକ ସାହିତ୍ୟର ଉତ୍ତର ସାଧନା ବୋଲି ଚିହ୍ନିତ କରାଯାଇପାରେ ।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେତେବେଳେ ଏହି ଅବସ୍ଥା, ହଠାତ୍ ଉତ୍କଳ-ସାହିତ୍ୟରେ ଗୋଟିଏ କବିତା ପ୍ରକାଶିତ ହେଲା, "ହାୟରେ ତରୁଣ କବିର ଆଶା ।" ଓଡ଼ିଆ ପାଠକ ଏ କବିତାଟି ପଢ଼ି ଏକ ନୂଆ ଗନ୍ଧ, ନୂଆ ବର୍ଣ୍ଣ ଓ ନୂଆ ସ୍ୱାଦ ପାଇଲା । ଚଞ୍ଚଳ ହୋଇ ଉଠିଲା ତାର ମନ, କିଏ ଏହି କବି ।

ମାୟାଧର ମାନସିଂହ ଯେତେବେଳେ ରେଭେନଶ କଲେଜର ଆଣ୍ଡାର-ଗ୍ରେଜୁଏଟ । ଚିଲିକାର ଦକ୍ଷିଣ କୂଳରୁ ଏକ ସାମନ୍ତ; କିନ୍ତୁ ଦରିଦ୍ର ପରିବାରର ପିତୃମାତୃହୀନ ମାୟାଧର ପ୍ରବେଶିକାରେ ବୃତ୍ତି ନେଇ କଲେଜକୁ ଆସିଥିଲେ ଉଚ୍ଚଶିକ୍ଷା ପାଇଁ । ତାପରେ ଉଚ୍ଚଶିକ୍ଷାର ଏକ ପାବଚ୍ଛରୁ ଅନ୍ୟକୁ ଯିବା ସଙ୍ଗରେ ମାୟାଧରଙ୍କ ଲେଖନୀରୁ ଅଜସ୍ର ଧାରାରେ କାବ୍ୟକବିତା ଝରି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅଭିନବତାସ୍ୱ ପ୍ଲାବନ ଆଣିଥିଲା ।

ମାୟାଧରଙ୍କ କବିତାର ସ୍ୱାତନ୍ତ୍ର୍ୟ ତାର ଭାଷା, ଭଙ୍ଗୀ ବିଷୟ ସବୁଥିରେ । ଓଡ଼ିଆ ପାଠକ ତାଙ୍କ କବିତାରେ ଏକ ନିର୍ମଳ, ଅନନୁଭୂତ, ସହଜ ଓ ସ୍ୱାଭାବିକ ବାତାବରଣ ପାଇ ସ୍ୱଚ୍ଛନ୍ଦ ନିଃଶ୍ୱାସ ମାରିଥିଲା । ମାୟାଧରଙ୍କ କବିତାରେ ଯେ ଖୋଜ-ପାଇଲା ସେହି ହଜିଯାଇଥିବା ଶିଅଳୁ ଯାହା ରାଧାନାଥ ଓ ତାଙ୍କ ପରବର୍ତ୍ତୀ କବିମାନେ ଛିନ୍ନ କରି ଦେଇଥିଲେ ।

ମାୟାଧର ପୁରାତନପନ୍ଥୀ ନୁହନ୍ତି । ତାଙ୍କ ମନ ଉପରେ ପଶ୍ଚିମର ସାହିତ୍ୟ, ବଙ୍ଗଳା, ଓଡ଼ିଆ ଓ ସଂସ୍କୃତ ସାହିତ୍ୟ, ଏମାନଙ୍କର ପ୍ରଭାବ ସୁସ୍ପଷ୍ଟ । ତଥାପି ତାଙ୍କ କବିତାର ଇଂରେଜୀରେ ଯାହାକୁ 'ହାର୍ଡ଼ କୋର' କହନ୍ତି, ତାହା ଏକାବେଳକେ ଓଡ଼ିଆ ।

ମାୟାଧର ବିପ୍ଳବୀ କବି । ତାଙ୍କ କବିତାବଳୀ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେଉଁ ଆଲୋଡ଼ନ ଆଣିଥିଲା, ତାଙ୍କ କବିତାର ଯେତେ ଯେତେ 'ପେରୋଡ଼ି' ଲେଖା ହୋଇଥିଲା, ଆଉ କୌଣସି କବିଙ୍କ ଭାଗ୍ୟରେ ସେ ସୌଭାଗ୍ୟ ଘୁଟି ନାହିଁ । ତାଙ୍କ କବିତାର ଢଙ୍ଗ ଏକାବେଳକେ ଅଭିନବ । ଏହି ଦେଶର ମାଟି ପାଣି ପବନର କଥା, ଜେମା, ରମା, ରୁକ୍ମଣୀ, ରାମ, ଦାମ, ନିଧିଆଙ୍କର ସୁଖ ଦୁଃଖର କାହାଣୀ, ସାଧବ-ଝିଅର ବିରହ ଗୀତ, ପାଇକପୁଅର ବୀର ଗାଥା, ସେ କବିତାର ପ୍ରତିପାଦ୍ୟ । ଏ ଭଳି ବିଷୟବସ୍ତୁକୁ ଯେକ ତାଙ୍କ ଆଗରୁ କେହି କବିତା ଲେଖି ନ ଥିଲେ । ତଥାପି ତାଙ୍କ କବିତାରେ ପ୍ରଗତେଚେତନାର ଚିହ୍ନ ସୁସ୍ପଷ୍ଟ ।

ପ୍ରେମ କବିତା କ୍ଷେତ୍ରରେ ମାୟାଧରଙ୍କ ସମକକ୍ଷ କବି ଆଜଯାକେ ଓଡ଼ିଶାରେ ଜନ୍ମ ହୋଇ ନାହାନ୍ତି; ଏତିକ କହିଲେ ଯଥେଷ୍ଟ ହେବ ।

ମାୟାଧରଙ୍କ ପ୍ରତିଭା ବହୁମୁଖୀ । ତାର ସବୁ ଦିଗର ମୂଲ୍ୟାୟନ କରିବା ବହୁ ଆୟାସସାଧ୍ୟ । ଓଡ଼ିଶାର ଆଉ ଅନେକ ସାହିତ୍ୟସେବୀଙ୍କ ଭଳି ମାୟାଧର ମଧ୍ୟ ଅବହେଳିତ ।

କବି ବର୍ତ୍ତମାନ ଜୀବନର ସପ୍ତମ ଦଶକର ପାଦଦେଶରେ ଉପନୀତ ମଧ୍ୟ କର୍ମନିଷ୍ଠ ଅଛନ୍ତି । ଉତ୍କଳ ସରସ୍ୱତୀଙ୍କ ଏହି ବରପୁତ୍ରଙ୍କ ଏକାନ୍ତ ସାଧନା ପାଇଁ ତାଙ୍କୁ ଆଜି କୃତଜ୍ଞ ଚିତ୍ତରେ ସ୍ମରଣ କରୁଛୁଁ ।



ମହେଶ ଚନ୍ଦ୍ର ମହାପାତ୍ର
ଗୋପବନ୍ଧୁ ଭବନ,
କଟକ-୧

# କବି ମାନସିଂହଙ୍କ ପନ୍ଦର ବର୍ଷ ରଚନାର କାଳ ନିର୍ଣ୍ଣୟ

ଡକ୍‌ଟର ନଟବର ସାମନ୍ତରାୟ

କବି ମାୟାଧର ମାନସିଂହ ଦୀର୍ଘ ତିରିଶ ବର୍ଷ ଧରି ନିଜର ବଳିଷ୍ଠ ଲେଖନୀ ସାହାଯ୍ୟରେ ଓଡ଼ିଆ ସାହିତ୍ୟକୁ ଯେପରି ରୁଦ୍ଧିମନ୍ତ କରିଛନ୍ତି, ସେପରି ଉଦାହରଣ ଓଡ଼ିଆ ସାହିତ୍ୟରେ ଏକାନ୍ତ ସୁଲଭ ନୁହେଁ । କିନ୍ତୁ ଏଇ ତିରିଶ ବର୍ଷର ନିରଳସ ସାଧନା-ପ୍ରସୂତ ସାହିତ୍ୟ ଉପରେ ଯଥାଯଥ ସମାଲୋଚନା ହୋଇ ତାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ପ୍ରତିଷ୍ଠା କରିବାର ପ୍ରୟାସ ଏ ଦେଶରେ ହୋଇ ନ ଥିବା କେବଳ ଓଡ଼ିଆ ସାହିତ୍ୟ ଭାଗ୍ୟରେ ଏକାନ୍ତ ସମ୍ଭବପର । କେବଳ ମାନସିଂହ ସାହିତ୍ୟ ନୁହେଁ, ଆଧୁନିକ ଜୀବିତ ଲେଖକ ନୀଳକଣ୍ଠ, କାଳିନ୍ଦୀ, ବୈକୁଣ୍ଠ ପ୍ରଭୃତି ଲେଖକମାନଙ୍କ ରଚନାକୁ ଆମେ ଆଜି ପର୍ଯ୍ୟନ୍ତ ଯେ ଉପଯୁକ୍ତ ସମ୍ମାନ ଦେଖାଇ ପାରିନୁ, ଏ କଥା ମୁକ୍ତ କଣ୍ଠରେ ମଧ୍ୟ ସ୍ୱୀକାର କରାଯାଇପାରେ । ଏ ଦିଗରେ ସମୟ ସମୟରେ ପ୍ରାଥମିକ ପ୍ରଚେଷ୍ଟା ସ୍ୱରୂପ ଯେଉଁ ଆଲୋଚନା ପ୍ରକାଶ ପାଏ, ସେ ସବୁ ବହୁ ଦିଗରୁ ମଧ୍ୟ ଅସମ୍ପୂର୍ଣ୍ଣ ଓ ଅସନ୍ତୋଷଜନକ ।

ଆଧୁନିକ ଯୁଗର କବିମାନଙ୍କ ରଚନା ଆଲୋଚନା କଲାବେଳେ ଆମେ ସାଧାରଣତଃ ସେମାନଙ୍କ ପ୍ରଥମ ରଚନା ବା ପ୍ରକାଶ କାଳ ଉପରେ ଆଦୌ ଦୃଷ୍ଟି ଦେଇ ନ ଥାଉ । କବି ଯେ ଯୁଗରେ ଜନ୍ମଲାଭ କରିଥିବା ହେତୁ ସେହି ଯୁଗ ଚିନ୍ତାଦ୍ୱାରା ସେ ବହୁ ପରିମାଣରେ ପ୍ରଭାବିତ ହୋଇଥାଏ, ସମୟର ଅଗ୍ରଗତି ଓ ପରିବର୍ତ୍ତନର ତାଡ଼ନାରେ କବିର ମାନସିକ ପ୍ରକ୍ରିୟା ଓ କବି ପ୍ରତିଭାର ଯେ କ୍ରମବିକାଶ ଏକାନ୍ତ ସମ୍ଭବପର; ସମାଜର ପରିବେଷ୍ଟନୀ, ବ୍ୟକ୍ତି ଜୀବନର ସ୍ୱତନ୍ତ୍ର ଆଭିମୁଖ୍ୟ, କବିର ରଚନାକୁ ଯେ ବହୁ ପରିମାଣରେ ନିୟନ୍ତ୍ରଣ କରିଥାନ୍ତି—ଏପରି ବହୁବିଧ ସମସ୍ୟାର ସମ୍ମୁଖୀନ ଆମେ ଆଦୌ ହେଉନି, କାରଣ ସମାଲୋଚନା କଲାବେଳେ ଆମେ ରଚନାକାଳ ଉପରେ ବିଶେଷ ଗୁରୁତ୍ୱ ଦେବାକୁ ଇଚ୍ଛା କରୁନି ।

ରଚନାର ତାତ୍ତ୍ୱିକ ବିଶ୍ଳେଷଣ ତାର ରସ-ସୌନ୍ଦର୍ଯ୍ୟ ପ୍ରତିଷ୍ଠାପନର ମାନଦଣ୍ଡ ବୋଲି କେହି କେହି ରଚନା କାଳ ଜାଣିବା ପାଇଁ ଆଦୌ ଚିନ୍ତିତ ହୁଅନ୍ତି ନାହିଁ । କିନ୍ତୁ ଦେଖିବାର କଥା, ସାହିତ୍ୟାଲୋଚନାର ଏହା କଦାପି ସର୍ବଶେଷ ମାନଦଣ୍ଡ ନୁହେଁ, ପୁନଶ୍ଚ ଏହା ଯେ ସର୍ବଶ୍ରେଷ୍ଠ ମାନଦଣ୍ଡ ତାହା ମଧ୍ୟ ଦୃଢ଼ ଭାବରେ କୁହାଯାଇ ନ ପାରେ । କାରଣ ସମୟଜ୍ଞାନ ବିରହିତ ହୋଇ ତାତ୍ତ୍ୱିକ ବିଶ୍ଳେଷଣ କଲେ ସାହିତ୍ୟ-ସୌନ୍ଦର୍ଯ୍ୟ ପ୍ରତିଷ୍ଠା ନିର୍ଭୁଲ ଭାବେ ହୋଇ ନ ପାରେ । କାଳଜ୍ଞାନ ଓ ତାତ୍ତ୍ୱିକ ବିଶ୍ଳେଷଣ ଏ ଉଭୟର ମଧୁର ମିଳନରେ କଳାର ଉତ୍କୃଷ୍ଟ ମହତ୍ତ୍ୱ ପ୍ରତିଷ୍ଠିତ ହୁଏ । ଆଧୁନିକ ଓଡ଼ିଆ ସାହିତ୍ୟର ବିଶିଷ୍ଟ କବି ମାନସିଂହଙ୍କ ରଚନାର କାଳ ନିର୍ଣ୍ଣୟ ମୁଁ ସେହି ଅଭାବ ପୂରଣ ନିମନ୍ତେ ପ୍ରସ୍ତୁତ କରିଛି । ଆଶା, ଏ ଦେଶର ପାଠକ-ପାଠିକା ମାନସିଂହଙ୍କ ସାହିତ୍ୟ ଅଧ୍ୟୟନ ଓ ଆଲୋଚନା କଲାବେଳେ ଯଦି ଏ ହେତୁରୁ କିଛି ଉପକାର ପାଇ ପାରନ୍ତି ତାହେଲେ ମୋର ସମସ୍ତ ପରିଶ୍ରମ ସଫଳ ହେବନି ।

କବି ମାନସିଂହଙ୍କ ଯେଉଁ ରଚନା ମୋର ଆଖିକି ଆସିଛି, ସେ ସମସ୍ତଙ୍କୁ ମୁଁ କାଳାନୁକ୍ରମିକ ଭାବେ ସଜାଇ ରଖିଛି ।

୧—ଗୀତକବି (ପ୍ରଥମ ପ୍ରକାଶ ୧୯୨୮) କଟକ ସତ୍ୟବାଦୀ ପ୍ରେସରେ ମୁଦ୍ରିତ ଓ 'ପ୍ରଗତି ସଂଘ' ଦ୍ୱାରା ପ୍ରକାଶିତ । ଏହାର ଭୂମିକାରେ କବି ଲେଖିଛନ୍ତି, "ଏ ଲେଖା ପ୍ରାୟ ତିନିବର୍ଷ ତଳର" ଅର୍ଥାତ୍, 'ଗୀତକବି' ରଚନାର ସମୟ ହେଉଛି ୧୯୨୫ ସାଲ । କିନ୍ତୁ ଏ ପୁସ୍ତକରେ ଥିବା ଶେଷ ଗୀତଟି "କାନନେ ଆଜି ମୋର ଚିତ୍ତ ଗେହ୍ଣୀ" ପ୍ରଥମେ 'ଜୀବନ ସ୍ପନ୍ଦନ' ନାମରେ ଉତ୍କଳ ସାହିତ୍ୟ ୩୦।୧୦ ମାଘ ୧୩୩୫ ( ଜାନୁଆରୀ ୧୯୨୮ )ରେ ପ୍ରକାଶିତ ହୋଇଥିଲା । କବି ପଦ୍ମ ଚରଣ ପଟ୍ଟନାୟକ ଏ ପୁସ୍ତକ ଉପରେ ଅଭିମତ ଦେଇଛନ୍ତି—"ତମ ବହିର କଳ୍ପନା ଓଡ଼ିଶାରେ ଗୋଟିଏ ନୂଆ କଥା । ଏ ଧରଣର ସୃଷ୍ଟି କେବଳ ଦୃଶ୍ୟ କାବ୍ୟରେ କାହିଁକି, ଆମ ଦେଶର ଆଧୁନିକ ସାହିତ୍ୟର କୌଣସି ବିଭାଗରେ ଏତେ ସୁସ୍ପଷ୍ଟ ଓ କବିତ୍ୱପୂର୍ଣ୍ଣ ଭାବରେ ପଢ଼ିଥିବାର ମୁଁ ଦେଖି ନାହିଁ ।" ଉତ୍କଳ ସାହିତ୍ୟ ୩୨।୯ ପୌଷ ୧୩୩୬ ( ଡିସେମ୍ବର ୧୯୨୮ ) ସଂଖ୍ୟାର ଗୋଟିଏ ସ୍ୱତନ୍ତ୍ର କ୍ଷୁଦ୍ର ବିଜ୍ଞାପନରୁ ଉଦ୍ଧୃତ ।

୨—'କୋଣାର୍କ'—କୋଣାର୍କ ଗୀତି କାବ୍ୟର ସର୍ବପ୍ରଥମ କବିତା । ଏହା ପ୍ରଥମେ "ଲେଖକ ଶ୍ରୀ—" ନାମରେ 'ବାରୁଣୀ' ଆଷାଢ଼ ୧୩୩୩ (ଜୁନ ୧୯୨୬)ରେ ପ୍ରକାଶିତ । ଯେତେଦୂର ମନେହୁଏ, ଏହା ହିଁ ମାନସିଂହଙ୍କ କବି ଜୀବନରେ ପ୍ରଥମ ପ୍ରକାଶିତ କବିତା ।

୩—'ବାରବାଟୀ' (କ-ତା) ଉତ୍କଳ ସାହିତ୍ୟ ୩୦।୮ ମାର୍ଗଶିର ୧୩୩୪ (ନଭେମ୍ବର ୧୯୨୭)—ମାଟିବାଣୀ (୧୯୪୭) ପୃଷ୍ଠା ୧୧ ।

ପତ୍ରିକାରେ ଏହାର ପ୍ରଥମ ପଦ ଥିଲା ଏମିତ—

"ମହିମାର ଶୁଭ୍ରତାର ଇତିହାସ ଶିରେ,
ରାଜଟୀକା ସମ
ନମସ୍ୟ ପରମ,

ତୁମେ ତୁଙ୍ଗ ବାରବାଣୀ ବୀରରକ୍ତ ମାଂସରେ ଗଠିତ,

ଅତୀତର ବକ୍ଷ ପରେ, ଏ ଜାତିର ଜୟସ୍ତମ୍ଭ ପରି
ଦର୍ପଭରେ ମଥା ଟେକି କରି
ବିଜୟ ପତାକା ତବ ଚନ୍ଦ୍ରୋଜ୍ଜ୍ୱଳ ଚିର ଉନ୍ନମିତ ।"

ପୁସ୍ତକରେ ସ୍ଥାନ ପାଇଥିବା କବିତାଟିରେ କେତେକ ସ୍ଥଳରେ ଏମିତ ପରିବର୍ତ୍ତନ ଲକ୍ଷ୍ୟ କରାଯାଇପାରେ ।

୪—'କବିର ନିମନ୍ତ୍ରଣ'—ଉତ୍କଳ ସାହିତ୍ୟ ୩୦।୧୧ ଫାଲ୍‌ଗୁନ ୧୩୩୪ (ଫେବୃୟାରି ୧୯୨୭) ଏ କବିତାର ଆରମ୍ଭ ଏମିତ—

"କବି ଯେବେ ଥିଲେ ଶଇଶବେ ଜ୍ୟୋତ୍ସ୍ନା-ସ୍ୱପ୍ନ-ସୃଷ୍ଟି ଝାଲ ଧରି,
ପାଇଲେ ସେ ଦିନେ ଆମନ୍ତ୍ରଣ ଭ୍ରମିଲେ ସେ ତାକ ଅନୁସରି ।"

୫—'ପ୍ରାବୃଟ ସମ୍ଭାଷଣ'—ଉତ୍କଳ ସାହିତ୍ୟ ୩୧।୫ ଭାଦ୍ର ୧୩୩୪ (ଅଗଷ୍ଟ ୧୯୨୭), ହେମ ପୁଷ୍ପ (୧୯୩୫) ପୃ. ୧୧, ହେମ ପୁଷ୍ପ (୧୯୪୭) ପୃ. ୨୨ ।

୬—'ବଂଶୀର ଡାକ'—ରେଭେନ୍‌ସାଭିଆନ୍, ସେପ୍‌ଟେମ୍ବର ୧୯୨୭—ହେମ ପୁଷ୍ପ ୧୯୩୫ ।

୭—'ଅନୃତା'—ଉତ୍କଳ ସାହିତ୍ୟ ୩୧।୮ ମାର୍ଗଶିର ୧୩୩୫ (ନଭେମ୍ବର ୧୯୨୭), ହେମ ପୁଷ୍ପ (୧୯୩୫) ପୃ: ୧୦୫, ମାଟିବାଣୀ (୧୯୪୭) ପୃ: ୮୭ ।

୮—'ତରୁଣ କବିର ଆଶା'—ଉତ୍କଳ ସାହିତ୍ୟ ୩୨।୧ ବୈଶାଖ (୧୩୩୫) ଓ 'ଜୀବନ ଚିତା' ୧୯୪୭ରେ ଏଇ କବିତାଟିର କେବଳ ୨୦ଟି ପଦ ଦେଖିବାକୁ ମିଳେ । 'ଧୂପ' (୧୯୪୮) ରେ, କିନ୍ତୁ ଏଇ ୨୦ ପଦ ସହିତ ଆଉ ଅଧିକ ୩ଟି ପଦ ଯୋଗ କରାଯାଇଛି । କିନ୍ତୁ ପତ୍ରିକାରେ ଥିଲା ୨୧ଟି ପଦ । "ସବୁ ତରୁଣୀଙ୍କ ଚିବୁକ ଧରି" ପଦଟି ଯାହା ପ୍ରଥମେ ପତ୍ରିକାରେ ସ୍ଥାନ ପାଇଥିଲା, ତାହାକୁ ଲକ୍ଷ୍ୟ କରି ସହକାର ୮।୭ ଚୈତ୍ର ୧୩୩୫ (ମାର୍ଚ୍ଚ ୧୯୨୮)ର ସମ୍ପାଦକୀୟ ଲେଖାରେ ଅତି ତୀବ୍ରତର ମନ୍ତବ୍ୟ ପ୍ରକାଶ ପାଇବାରୁ ବୋଧହୁଏ କବି ଏଇ ପଦଟିକୁ ଧୂପ (୧୯୪୮)ରେ ସ୍ଥାନ ଦେଇ ନାହାନ୍ତି ।

୯—'ଗୋପ ତର୍ପଣ'—ଉତ୍କଳ ସାହିତ୍ୟ ୩୨।୩ ଆଷାଢ଼ ୧୩୩୫ (ଜୁନ ୧୯୨୮), ମାଟିବାଣୀ ୧୯୫୭ ପୃ: ୪୨ ।

ଏ କବିତାଟି ଆରମ୍ଭ ହୋଇଛି ଏମିତ—

"ତୁମେ ତାଣ୍ଡବ ନଟ ନୁହଁ ଶଙ୍କର ଭୋଳା,
ନୁହଁ ବୈଶାଖ ରକ୍ତ-ପ୍ରବଣ-ଡୋଳା ?
ତୁମେ ଧରନାହଁ କେବେ ରୁଦ୍ରର ଅବତାର,
ଅତ୍ୟାଗ୍ଭରର କରିବାକୁ ପ୍ରତିକାର ।
ରାଜା ହୋଇ ହାତେ ଧରନାହଁ ରାଜଦଣ୍ଡ
ଗର୍ଜନ ହାତେ ନ କରିଛ ନର ଖଣ୍ଡ ।
ତୁମେ ପ୍ରଳୟଙ୍କର ନୁହଁ ହେ ମହାଷଲାମ,
ଅଥବା ଲେନନ୍, ଶ୍ରମ-ବିପ୍ଳବ-ବାଣୀ ।
ତୁମେ ଅଟ ହେ ଶାନ୍ତ, ସତ୍ୟର ପୁରୋହିତ,
ସନ୍ନ୍ୟାସୀ, ଋଷି, ଅବତାର ପରିହିତ ।
ତୁମେ ଥିଲ ହେ କେବଳ ପତିତ ଜାତିର ବନ୍ଧୁ,
ଓଡ଼ିଆ ଜାତିର ଆପଣାର ଗୋପବନ୍ଧୁ ।"

ଏଥିରୁ କେବଳ ଶେଷ ଚାରି ଧାଡ଼ି ସାମାନ୍ୟ ପରିବର୍ତ୍ତନ ସହ ପୁସ୍ତକରେ ସ୍ଥାନ ପାଇଛି ।

୧୦—'ରୂପସୀର ପୂଜା'—ସହକାର ୮ମ କଳସ ବାର ଅଞ୍ଜଳି ଭାଦ୍ର ୧୩୩୫ (ଅଗଷ୍ଟ ୧୯୨୮) ହେମ ପୁଷ୍ପ (୧୯୫୭, ପୃ: ୭୫ ।

୧୧—'ଉପେକ୍ଷିତା' ଏକ ଦୀର୍ଘ ଅମିତ୍ରାକ୍ଷର କବିତା ।

ପ୍ରକାଶ ସମୟ—

(କ) ସହକାର ୮।୧୨ ଭାଦ୍ର ୧୩୩୫ (ଅଗଷ୍ଟ ୧୯୨୮)

(ଖ) ସହକାର ୯।୧ ଆଶ୍ୱିନ ୧୩୩୬ (ସେପ୍ଟେମ୍ବର ୧୯୨୮)

(ଗ) ସହକାର ୯।୨ କାର୍ତ୍ତିକ ୧୩୩୬ (ଅକ୍ଟୋବର ୧୯୨୮)

ପତ୍ରିକାର ଏହି ସଂଖ୍ୟାର ଶେଷରେ କ୍ରମଶଃ ବୋଲି ଲେଖାଅଛି । କିନ୍ତୁ କବିଙ୍କ ମତାନୁସାରେ ଏଇଠାରେ ହିଁ କବିତାଟି ଶେଷ । ଏ କବିତାଟିର ନିର୍ଦ୍ଦେଶ ଦେଖନ୍ତୁ—"ଗୋଦାବରୀ କୂଳରେ ସୁରମ୍ୟ ଉପବନ । ତା ମଧ୍ୟରେ ବିରାଟ ଓ ସୁଦୃଶ୍ୟ ସୌଧ । ଗୋଟିଏ କକ୍ଷରେ ରାକ୍ଷସ ରାଜକୁମାରୀ ସୂର୍ପଣଖା ବ୍ୟାକୁଳ ଭାବରେ

ଗୋଟିଏ ପଲଙ୍କ ଉପରେ ଅର୍ଦ୍ଧଶାୟିତା ରହିଛି । ତା'ର ଅପୂର୍ବ ରୂପରାଶି, ଅଳକାସ୍ପିତ କୁନ୍ତଳ ଓ ଶ୍ଳଥ ବସନ ଭୂଷଣ ମଧ୍ୟରୁ ଉଚ୍ଛୁଳି ପଡ଼ୁଛି । ଗବାକ୍ଷ ପାଖରେ ଅନାଇଁଲେ ଦୂର ବନ କୋଳରେ ରାମ ଲକ୍ଷ୍ମଣଙ୍କର ପର୍ଣ୍ଣଶାଳୀ ଓ ତାର ଗୃହ ପାଖରେ ଜୀବଜନ୍ତୁ । ଗଛ ଲତାର ଅସ୍ପଷ୍ଟ ଛବି ଦେଖାଯାଉଛି । ସେ ସେହି ଆଡ଼କୁ ଅନିମେଷ ନୟନରେ ଅନାଇଁ ରହି ହୃଦୟର ଅବ୍ୟକ୍ତ ବେଦନାକୁ କବିତା-ପ୍ରସାରରେ ଭସାଇ ଦେଉଛି ।"

୧୨—'ତ୍ୟକ୍ତ ପୁତ୍ର' (କ୍ଷୁଦ୍ର ଗଳ୍ପ)—ସହକାର ୯।୨ କାର୍ତ୍ତିକ ୧୩୩୬ (ଅକ୍ଟୋବର ୧୯୨୮) କବି ମାନସିଂହଙ୍କର ଏଇ ଏକମାତ୍ର କ୍ଷୁଦ୍ର ଗଳ୍ପ ମୁଁ ଏ ପର୍ଯ୍ୟନ୍ତ ଦେଖିବାକୁ ପାଇଛି । ଶୁଣିଲି, ସେ ଆଉ କେତୋଟି କ୍ଷୁଦ୍ର ଗଳ୍ପରେ ମଧ୍ୟ ହାତ ଦେଇଛନ୍ତି ।

୧୩—'ନବ୍ରହ୍ମ ଭଗବାନ'—ଉତ୍କଳ ସାହିତ୍ୟ ୩୨।୮ ମାର୍ଗଶୀର ୧୩୩୬ (ନଭେମ୍ବର ୧୯୨୮) ଜୀବନ ଚିତା (୧୯୪୭) ପୃ: ୮ ।

୧୪—'ପ୍ରଣୟୀ'—ଉତ୍କଳ ସାହିତ୍ୟ ୩୨।୧୦ ମାଘ ୧୩୩୬ (ଜାନୁୟାରି ୧୯୨୯) ଧୂପ (୧୯୪୮) ପୃ: ୫୯, ଜୀବନ ଚିତା (୧୯୪୭) ପୃ: ୪୯ ।

୧୫—'ପ୍ରେମର ପରିମାଣ'—ଉତ୍କଳ ସାହିତ୍ୟ ୩୨।୧୨ ଚୈତ୍ର ୧୩୩୬ (ମାର୍ଚ୍ଚ ୧୯୨୯) ଧୂପ (୧୯୪୮) ପୃ: ୮୯ । ପୁସ୍ତକରେ ଏ କବିତାର ନାମ ଅଛି 'ପ୍ରେମର ପରିମାପ' ।

୧୬—'ସାଧବ ଝିଅ' (କାବ୍ୟ)—ପ୍ରଥମ ପ୍ରକାଶ ୧୯୪୭ ସାଲ । କିନ୍ତୁ ଏହାର ଗୁଡ଼ାଏ କବିତା ଭିନ୍ନ ଭିନ୍ନ ସମୟରେ ପ୍ରକାଶିତ ।

(କ) 'ସାଧବ ଝିଅ'—ପୁସ୍ତକର ପ୍ରଥମ କବିତା—ଉତ୍କଳ ସାହିତ୍ୟ ୩୩।୨ ଜ୍ୟେଷ୍ଠ ୧୩୩୬ (ମେ ୧୯୨୯)

(ଖ) 'ମାଳୁଣୀ'—ପୁସ୍ତକର ଚତୁର୍ଥ କବିତା—ସହକାର ୧୨।୭ କାର୍ତ୍ତିକ ୧୩୩୯ (ଅକ୍ଟୋବର ୧୯୩୧)

(ଗ) 'ସାଧବ ପୁଅ'—ପୁସ୍ତକର ଦ୍ୱିତୀୟ କବିତା—ସହକାର ୧୨।୮ ମାର୍ଗଶୀର ୧୩୩୯ (ନଭେମ୍ବର ୧୯୩୧)

ଏ କବିତାର ଫୁଟ୍‌ନୋଟ୍‌ରେ ଅଛି—"ସପ୍ତମ ସଂଖ୍ୟା ସହକାରରେ 'ମାଳୁଣୀ' କବିତାର ମାଳୁଣୀ, ଯେଉଁ ସାଧବ ପୁଅକୁ ରାଜଦଣ୍ଡରେ ଭେଟିବାର ଲେଖା ଅଛି, ପାଠକମାନଙ୍କୁ ଅନୁରୋଧ, ଏହି କବିତାର

ସାଧବ ପୁଅକୁ ସେଇ ଲୋକ ବୋଲି ମନେ କରିବେ । ବହୁଦିନ ତଳେ ଉତ୍କଳ ସାହିତ୍ୟରେ ପ୍ରକାଶିତ, ଏଇ ଲେଖକର 'ସାଧବ ଝିଅ' ନାମକ କବିତାର ବାଳପତ୍ନୀ ତରୁଣୀ ନାୟିକା, ଏଇ ସାଧବ ପୁଅର କାମ୍ୟବସ୍ତୁ ।"

(ଘ) 'ମାଳା ଗ୍ରହଣ'—ପୂର୍ବୋକ୍ତର ୮ମ କବିତା—ସହକାର ୨୩।୧୦ (ଅକ୍ଟୋବର ୧୯୪୩) ।

ଏ କବିତା ଫୁଟ୍‌ନୋଟ୍‌ରେ ଦିଆଯାଇଛି—"ଲେଖକଙ୍କ ଅପ୍ରକାଶିତ 'ସାଧବ ଝିଅ' କାବ୍ୟର ଏକ ଅଂଶ ।"

୧୭—'ଦକ୍ଷିଣ ପ୍ରତି'—ଉତ୍କଳ ସାହିତ୍ୟ ୩୩।୫ ଭାଦ୍ର ୧୩୩୭ (ଅଗଷ୍ଟ ୧୯୨୯), ହେମ ପୁଷ୍ପ (୧୯୩୫) ପୃ: ୮୦, ଜୀବନ ଚିତା ପୃ: ୨

୧୮—'ମହାନଦୀରେ ଜ୍ୟୋତ୍ସ୍ନାବିହାର'—ଉତ୍କଳ ସାହିତ୍ୟ ୩୩।୭ କାର୍ତ୍ତିକ ୧୩୩୭ (ଅକ୍ଟୋବର ୧୯୨୯) ମାଟିବାଣୀ ୧୯୪୭ ପୃ: ୩ ।

୧୯—'ରେଙ୍ଗୁନ ଚିଠି'—ରେଭେନ୍‌ସାଇଆନ୍—ଅକ୍ଟୋବର ୧୯୨୯, ମାଟିବାଣୀ ପୃ: ୨୭ ।

୨୦—'ଯଥା ସ୍ଥାନ'—ଉତ୍କଳ ସାହିତ୍ୟ ୩୩।୮ ମାର୍ଗଶୀର ୧୩୩୭ (ନଭେମ୍ବର ୧୯୨୯) ହେମ ପୁଷ୍ପ (୧୯୩୫) ପୃଷ୍ଠା ୮୪, ହେମ ପୁଷ୍ପ (୧୯୦୭) ପୃଷ୍ଠା ୨୫ ।

୨୧—'କୁଳଟା ରାଧା'—ସହକାର ୧୦।୯ ପୌଷ ୧୩୩୭ (ଡିସେମ୍ବର ୧୯୨୯) ହେମ ପୁଷ୍ପ (୧୯୩୫)

୨୨—'ପୂର୍ଣ୍ଣିମା' (ନାଟିକା)—ସହକାର ୧୧।୪ ଶ୍ରାବଣ ୧୩୩୭ (ଜୁଲାଇ ୧୯୩୦)

ଏ ନାଟକଟି ସହକାରରେ ପ୍ରକାଶ ପାଇବାର ପରମାସରେ ହରିଶ୍ଚନ୍ଦ୍ର ବଗଲ ? ଏହାକୁ ସମାଲୋଚନା କରନ୍ତି । 'ପୂର୍ଣ୍ଣିମା ଲେଖକର 'କୈଫିୟତ୍' ନାମରେ ମାନସିଂହ ଏହାର ଉତ୍ତର ଦିଅନ୍ତି ସହକାର ୧୧ ଭାଗ ଆଶ୍ୱିନ ୧୩୩୮ (ସେପ୍‌ଟେମ୍ବର ୧୯୩୦) ସଂଖ୍ୟାରେ ।

୨୩—'ଶୁଭଦୃଷ୍ଟି'—ସହକାର ୧୧।୮, ୯ ସଂଖ୍ୟା ମାର୍ଗଶିର, ପୌଷ ୧୩୩୮ (ନଭେମ୍ବର, ଡିସେମ୍ବର ୧୯୩୦)
'ହେମ ପୁଷ୍ପ' (୧୯୩୫)ରେ ଯେଉଁ 'ଶୁଭଦୃଷ୍ଟି' 'ଖାଦ୍ୟ ସ୍ୱର୍ଗ' ଓ 'ପରପାକ' ନାମକ ସ୍ୱତନ୍ତ୍ର ତିନୋଟି କବିତା ଅଛି, ସେ ସବୁ ହେମ ସସ (୧୯୪୭)ରେ କେବଳ ଗୋଟିଏ କବିତା 'ଶୁଭଦୃଷ୍ଟି'ର ୩ଟି ସର୍ଗରେ ସ୍ଥାନ ପାଇଛନ୍ତି ।

୨୪—'ଧୂପ'—ପୁସ୍ତକ ପ୍ରକାଶ କାଳ ୧୯୩୧ ସାଲ—ଉତ୍କଳ ସାହିତ୍ୟ ପ୍ରେସ, କଟକ । ସହକାର ୧୨।୨ ଜ୍ୟେଷ୍ଠ ୧୩୩—ଛୋଟିଆ କାଗଜରେ ନିମ୍ନଲିଖିତ ବିଜ୍ଞାପନ ଦିଆଯାଇଛି, ମାୟାଧର ମାନସିଂହଙ୍କ ପ୍ରଥମ କବିତା ଗ୍ରନ୍ଥ ଧୂପ ଶୀଘ୍ର ପ୍ରକାଶିତ ହେବ ।

ପ୍ରାଣସ୍ପର୍ଶୀ ପ୍ରେମ କବିତାର ସଂଗ୍ରହ ପ୍ରାୟ ସମସ୍ତ କବିତା ଅପ୍ରକାଶିତ ଥିଲା, ଆଗାମୀ ପୂର୍ଣ୍ଣିମାକୁ ଅପେକ୍ଷା କରନ୍ତୁ ।

ସୁନ୍ଦର ଛପା, ଶସ୍ତା ଦାମ୍, ଉପହାରର ଶ୍ରେଷ୍ଠ ସାମଗ୍ରୀ ।

ସହକାର ୧୨।୩ ଆଷାଢ଼ ୧୩୩୮ (ଜୁନ, ୧୯୩୧)ରେ ପତ୍ରିକାର ସମ୍ପାଦକ 'ଧୂପ' ଉପରେ କହିଛନ୍ତି, 'ଲେଖକ ଶ୍ରୀମାନ୍ ମାୟାଧର ମାନସିଂହ, ୩୨ଟି ପ୍ରେମ କବିତା ପୁସ୍ତକଟିର କଳେବର, କବିତାଗୁଡ଼ିକ ଗୀତଛନ୍ଦରେ ଲିଖିତ'', ଇତ୍ୟାଦି ।

'ଧୂପ'ର ଦୁଇଟି ସଂସ୍କରଣରେ ୩୨ଟି ଲେଖାଏଁ କବିତା ଅଛି ।

୨୫—'ବିକମ ସମ୍ବର୍ଦ୍ଧନା'—ଉତ୍କଳ ସାହିତ୍ୟ ୩୫।୩ ଆଷାଢ଼ ୧୩୩୮ (ଜୁନ ୧୯୩୧)

୨୬—'ଶାପ ପ୍ରସ୍ଥାଣ'—'ସମାଜ' ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା ୩ୟ ଶ୍ରାଦ୍ଧ ବାର୍ଷିକ ଦିବସ ୧୫।୭ ବୁଧବାର ୧୯୩୧ ।

ଏଥିରେ ଲେଖକ—'ଦୁର ଅତିଥି' ବୋଲି ସ୍ଥାନ ପାଇଛି । ପାଟଣାରେ ଏମ୍ ଏ. ପଢ଼ିଲାବେଳେ ଏହା ଲେଖାଯାଇଛି । ମାଟିବାଣୀ ପୃଷ୍ଠା ୪୭ ।

୨୭—'ରୂପ ଦେବତା'—ସହକାର ୧୨।୧୨ ଚୈତ୍ର ୧୩୩୯ (ମାର୍ଚ୍ଚ ୧୯୩୨) ହେମ ପୁଷ୍ପ (୧୯୩୫) ପୃଷ୍ଠା ୧୨୦; ହେମ ପୁଷ୍ପ (୧୯୪୭) ପୃଷ୍ଠା ୯ ।

୨୮—'ବର୍ଷା ସନ୍ଧ୍ୟା'—ସହକାର ୧୨।୧୨ ଚୈତ୍ର ୧୩୩୯ (ମାର୍ଚ୍ଚ ୧୯୩୨) ମାଟିବାଣୀ ପୃଷ୍ଠା ୨୧।

୨୯—'ପ୍ରାଚୀନ ଓଡ଼ିଆ କାବ୍ୟ' (ପ୍ରବନ୍ଧ)—ସହକାର ୧୩।୫ ଭାଦ୍ର ୧୩୩୯ (ଅଗଷ୍ଟ ୧୯୩୨) ''ଓଡ଼ିଆ ସମାଜ ଓ ସାହିତ୍ୟ'' ପୃଷ୍ଠା ୧ ।

୩୦ —'ଗୃହ ମାୟା'—ସହକାର ୧୩।୭ କାର୍ତ୍ତିକ ୧୩୪୦ (ଅକ୍ଟୋବର ୧୯୩୨) ଏହାର ନାମ 'ଘରପଣା' ବୋଲି 'ମାଟିବାଣୀ ପୃଷ୍ଠା ୩'ରେ ଅଛି ।

୩୧—'ପୂଜାରିଣୀ—(ପ୍ରଥମ ପ୍ରକାଶ ୧୯୩୨)—'ସବୁଜ ସାହିତ୍ୟ ସମିତି'ର ଏହା ହିଁ ଚତୁର୍ଥ ଗ୍ରନ୍ଥ । ଏହାର ପ୍ରକାଶକ 'ସବୁଜ ସାହିତ୍ୟ ସମିତି' ଲକ୍ଷ୍ମୀନାରାୟଣ ପ୍ରେସରେ ମୁଦ୍ରିତ । ପୁସ୍ତକଟି କବିଙ୍କ ବନ୍ଧୁ ଶ୍ରୀ ରତ୍ନାକର ଷଡ଼ଙ୍ଗୀଙ୍କୁ ଉତ୍ସର୍ଗୀକୃତ ।

୩୨—'ରବୀନ୍ଦ୍ରନାଥଙ୍କ କବିତା' (ପ୍ରବନ୍ଧ)—ସହକାର ୧୩।୧୦ ମାଘ ୧୩୪୦ (ଜାନୁୟାରୀ ୧୯୩୩) 'କବି ଓ କବିତା' ପୃଷ୍ଠା ୧୨ ।

୩୩—'ପର ଧର୍ମ' (ପ୍ରବନ୍ଧ)—ସହକାର ୧୩।୧୧ ଫାଲ୍‌ଗୁନ ୧୩୪୦ (ଫେବ୍ରୁୟାରୀ ୧୯୩୩) ଓଡ଼ିଆ ସମାଜ ଓ ସାହିତ୍ୟ ପୃଷ୍ଠା ୩୭ ।

୩୪—'ରାଧାନାଥ ଓ ମଧୁସୂଦନ' (ପ୍ରବନ୍ଧ)—ଯୁଗବାଣୀ ମାର୍ଚ୍ଚ ୧୯୩୩ "କବି ଓ କବିତା" ।

୩୫—'ହେମ ଶସ୍ୟ'—ସହକାର ୧୪।୫ ଭାଦ୍ର ୧୩୪୦ (ଅଗଷ୍ଟ ୧୯୩୩)
'ହେମ ପୁଷ୍ପ' ୧୯୩୫ ପୃଷ୍ଠା ୪୫ରେ ଏ କବିତା 'ପ୍ରେମ ଓ ସିଦ୍ଧି' ନାମରେ ସ୍ଥାନ ପାଇଛି ।

୩୬—'ହେମ ଶସ୍ୟ' (କବିତା ପୁସ୍ତକ)—ପ୍ରଥମ ପ୍ରକାଶ ୧୯୩୩ । "ପ୍ରଗତି ସଂଘ" ଏହାର ସତ୍ତ୍ୱାଧିକାରୀ । ଲକ୍ଷ୍ମୀନାରାୟଣ ପ୍ରେସରେ ମୁଦ୍ରିତ । ପୁସ୍ତକଟି ଭଗବତୀ ଚରଣ ପାଣିଗ୍ରାହୀଙ୍କୁ ଉତ୍ସର୍ଗୀକୃତ । ଏ ପୁସ୍ତକର ଚାରୋଟି କବିତା 'ହେମ ଶସ୍ୟ' ନାମରେ ପ୍ରଥମେ ସହକାର ୧୩।୯ ପୌଷ ୧୩୪୦ (ଡିସେମ୍ବର ୧୯୩୨ ରେ ପ୍ରକାଶିତ ହୋଇଥିଲା । ସେ ଚାରୋଟି କବିତା—"ଜୟ ପରାଜୟ", "ଜାଣେ ଜାଣେ", "ଆକର୍ଷଣ" ଓ ପ୍ରେମିକର ଅଧିକାର" ।

'ହେମ ଶସ୍ୟ' (୧୯୩୩) ପୁସ୍ତକର କବିତାମାନ ଅନ୍ୟ ବିଭିନ୍ନ ସ୍ଥାନରେ କିପରି ସ୍ଥାନ ପାଇଛି ତାହା ପରେ ଦେଖାଇ ଦିଆଯିବ ।

୩୭—'ଆର୍ଯ୍ୟ ମଧୁସୂଦନ'—ସହକାର ୧୪।୧୦ ମାଘ ୧୩୪୧ (ଜାନୁୟାରୀ ୧୯୩୪) ଏ କବିତାଟି ଏମିତି ଆରମ୍ଭ ହୋଇଛି ।

"ଆର୍ଯ୍ୟ ହେ ବୀର ବର୍ଯ୍ୟ ହେ
ସ୍ତବ କି ତବ ଗୁର୍ଯ୍ୟ ହେ ?
ଗୋଟି ଗୋଟି କରି ଜଳାଇ ଯାଇଛ
କୋଟିଏ ଜାତିର ସୂର୍ଯ୍ୟ ଯେ ।"

୩୮—'ଆତ୍ମପର'—ନବ ଭାରତ ୧୮ ମିଥୁନ ୧୩୪୧ (ଜୁନ ୧୯୩୪) ହେମ ପୁଷ୍ପ (୧୯୩୫) ପୃଷ୍ଠା ୧୨୮; ହେମ ପୁଷ୍ପ (୧୯୪୭) ପୃଷ୍ଠା ୫୯ ।

୩୯—'ଦେବ ପୂଜା'—ନବ ଭାରତ ୧।୫ ତୁଳ ୧୩୪୧ (ଅକ୍ଟୋବର ୧୯୩୪) ହେମ ପୁଷ୍ପ (୧୯୩୫) ପୃଷ୍ଠା ୧୪୩, ଜୀବନ ଚିନ୍ତା ପୃ: ୩୯ ।

ଏହାର ଫୁଟ୍‌ନୋଟ୍‌ରେ ଲେଖା ଅଛି "ଲେଖକଙ୍କର ଅପ୍ରକାଶିତ ହେମ ପୁଷ୍ପରୁ" ।

୪୦—'ପଲ୍ଲୀକବି ନନ୍ଦକିଶୋର' (ପ୍ରବନ୍ଧ)—ସହକାର ୧୬।୨ ଜ୍ୟେଷ୍ଠ ୧୩୪୨ (ମେ ୧୯୩୫) "କବି ଓ କବିତା" (୧୯୪୮) ପୃଷ୍ଠା ୧୧୯ ।

୪୧—"ଉତ୍କଳ ଗାଉଁଲି ଗୀତର ପରିଚୟ" (ପ୍ରବନ୍ଧ)—ନବ ଭାରତ ୨।୨ କର୍କଟ ୧୩୪୨ (ଜୁଲାଇ ୧୯୩୫) "ଓଡ଼ିଆ ସମାଜ ଓ ସାହିତ୍ୟ" (୧୯୫୧) ପୃଷ୍ଠା ୭୩ ।

୪୨—'କୋଣାର୍କର ଲାସ୍ୟ ଲୀଳା'—'କୋଣାର୍କ' କାବ୍ୟର "ଲାସ୍ୟ ଲୀଳା"—ସହକାର ଷୋଡ଼ଶ ଭାଗ ଷଷ୍ଠ, ଆଶ୍ୱିନ ୧୩୪୩ (ସେପ୍‌ଟେମ୍ବର ୧୯୩୫)

ଏହାର ପ୍ରଥମ ନାମ ଥିଲା—'କୋଣାର୍କର ଲାସ୍ୟ ଲୀଳା' । (ଜ୍ୟୋତ୍ସ୍ନା-ଜୀବନ୍ତ ପାଷାଣ-ବିଗ୍ରହମାନଙ୍କର ନୃତ୍ୟ ବିଳାସ) ଏହାର ପାଦଟୀକାରେ ଲେଖକ କହିଛନ୍ତି "ଛନ୍ଦରକ୍ଷା ପାଇଁ ଓ କେତେକ ସ୍ଥାନରେ ରଚନାକୁ ଶ୍ରୁତିମଧୁର କରିବା ପାଇଁ ଏହି କବିତାରେ ଚନ୍ଦ୍ରବିନ୍ଦୁ ସାହାଯ୍ୟରେ ଯୁକ୍ତାକ୍ଷର ପରିହାର କରାଯାଇଛି ।" କବି ନିମାପଡ଼ା ହାଇସ୍କୁଲରେ ଶିକ୍ଷକ ଥିଲାବେଳେ କୋଣାର୍କ ମନ୍ଦିର ଦେଖିବାର ସୁଯୋଗ ପାଇଥିଲେ । କୋଣାର୍କ ଦେଖିସାରି ସେ 'କୋଣାର୍କ' ପ୍ରବନ୍ଧ ସହକାର ଜୁଲାଇ ୧୯୩୫ ସଂଖ୍ୟାରେ ପ୍ରକାଶ କରିଥିଲେ । 'ଲାସ୍ୟ ଲୀଳା' ଏଇ 'କୋଣାର୍କ' ପ୍ରବନ୍ଧର ବହୁ ପରିମାଣରେ ଗୀତରୂପ ମାତ୍ର ।

୪୩—'ତୀର୍ଥ ଯାତ୍ରା'—ନବ ଭାରତ ୨।୭।୭ ବିଛା, ଧନୁ ୧୩୪୨ (ନଭେମ୍ବର, ଡିସେମ୍ବର ୧୯୩୫) ମାନସିଂହଙ୍କ ଚୟନ (୨ୟ ଭାଗ) ପୃଷ୍ଠା ୧୭୦ ।

୪୪—'ହେମ ପୁଷ୍ପ' (କବିତା ପୁସ୍ତକ)—ପ୍ରକାଶକ, ଗଣେଶ୍ୱର ମିଶ୍ର, ସମ୍ପାଦକ, 'ପ୍ରଗତି ପଥ' ନୂତନ ମୁଦ୍ରଣ ୧୯୩୫ ସାଲ ।

ଏ ପୁସ୍ତକର କବିତା ସବୁ କିପରି ଅନ୍ୟତ୍ର ପ୍ରକାଶ ପାଇଛି ପରେ ଦେଖାଇ ଦିଆଯିବ ।

୪୫—'ନାପିଉଣୀର ଗାନ୍ଧୀ ପୂଜା,—ନବ ଭାରତ ୨।୯ କୁମ୍ଭ ୧୩୪୨ (ଫେବୃୟାରୀ ୧୯୩୬) ବାପୁ ତର୍ପଣ (୧୯୪୮) ପୃଷ୍ଠା ୨୩, ମାଟିବାଣୀ ପୃଷ୍ଠା ୬୬ ।

୪୬—'ନବ ଲକ୍ଷ୍ମୀ' (କବିତା)—ନବ ଭାରତ ୨।୧୨ ବୃଷ ୧୩୪୩ (ଜୁନ ୧୯୩୬)

୪୭—'ଶିଳ ଲକ୍ଷ୍ମୀ'—ଆଧୁନିକ ୧।୫ ସେପଟେମ୍ବର ୧୯୩୬ ମାଟିବାଣୀ (୧୯୪୭) ପୃଷ୍ଠା ୩୯ ।

୪୮—'ନବ ସାହିତ୍ୟର ପ୍ରତିଷ୍ଠା' (ପ୍ରବନ୍ଧ)—ନବଭାରତ ୩।୪ କନ୍ୟା ୧୩୪୩ (ସେପ୍‌ଟେମ୍ବର ୧୯୩୬) ।

୪୯—'ଓଡ଼ିଆରେ କାହିଁକି ଲେଖିବ ?'—ନବଭାରତ ୩।୫ ତୁଳା ୧୩୪୩ (ଅକ୍ଟୋବର ୧୯୩୬) 'ଓଡ଼ିଆ ସମାଜ ଓ ସାହିତ୍ୟ' ପୃଷ୍ଠା ୬୪ ।

୫୦—'ବିରହ ପ୍ରଦୀପ'—ଆଧୁନିକ ୧।୬ ଅକ୍ଟୋବର ୧୯୩୬ ପ୍ରେମ ଶଯ୍ୟା (୧୯୪୫) ପୃଷ୍ଠା ୧୨୪ ।

୫୧—'ଜେମା' (କାବ୍ୟ)—ପ୍ରଥମ ପ୍ରକାଶ ୧୯୪୭ । ଏହାର ଭୂମିକାରେ କବି ଲେଖିଛନ୍ତି, "ଏହା ପ୍ରାୟ ୧୦ ବର୍ଷ ତଳେ ଲେଖା ହୋଇ ଅବହେଳିତ ଭାବରେ ପାଣ୍ଡୁଲିପିରେ ପଡ଼ିରହିଥିଲା । ଏହାର ପ୍ରଥମ ସର୍ଗର କିଛି ଅଂଶ 'ବୁଢ଼ା ଦଳେଇ' ନାମରେ 'ନବଭାରତ' ୪।୧ ମିଥୁନ ୧୩୪୪ ଜୁନ୍ (୧୯୩୭)ରେ ପ୍ରକାଶ ପାଇଥିଲା । ଏଇ କବିତାର ଫୁଟ୍‌ନୋଟରେ ଲେଖାଅଛି, "ଲେଖକର ଅପ୍ରକାଶିତ ଜେମା କାବ୍ୟର ଅଂଶ ।"

ଏହି କବିତାଟି ପୁନର୍ବାର "ଆରତି" ୧।୬ ଓ ୧।୭ କାର୍ତ୍ତିକ ଓ ମାର୍ଗଶିର ୧୩୪୮ (ଅକ୍ଟୋବର ଓ ନଭେମ୍ବର ୧୯୪୦ ଦୁଇ ସଂଖ୍ୟା)ରେ ପ୍ରକାଶିତ । ଏଥିର ପ୍ରଥମ ସଂଖ୍ୟାରେ କବିତାର ଆରମ୍ଭରେ 'ନାୟିକା ପ୍ରତି' କବିତାଟି ଅଛି ଓ ପ୍ରଥମେ ନିର୍ଦ୍ଦେଶ ଦିଆଯାଇଛି—"ବର୍ଣ୍ଣିତ ବିଷୟ—ଦଳାଇ ଓରଙ୍କର ଦୁଇ କନ୍ୟା । ଗଞ୍ଜାମ ଧନୀଙ୍କର ସେମାନଙ୍କ ପ୍ରତି ଆଗ୍ରହ । ପଦ୍ମାର ବିବାହ ଓ ମୃତ୍ୟୁ । କିଶୋରୀ ଜେମାର ବୟସ୍କ ଧନୀକଙ୍କ ସହ ବିବାହ ।" ପ୍ରକାଶିତ ଜେମା କାବ୍ୟ (୧୯୪୭)ରେ ଏଇ 'ନାୟିକା ପ୍ରତି' କବିତାଟି ନାହିଁ ।"

୫୨—'ଉତ୍କଳ ବନ୍ଦନା'—'ବିଚ୍ଛିନ୍ନା' ୧।୧ ଭାଦ୍ର ୧୩୪୫ (ଅଗଷ୍ଟ ୧୯୩୬) ମାଟିବାଣୀ ପୃଷ୍ଠା ୧୧୫ ।

୫୩—(ନଷ୍ଟମାତୃ)—ନାଟକ—( ପ୍ରଥମ ପ୍ରକାଶ ୧୯୩୭ ) ଏହାର ପ୍ରଥମ ଅଙ୍କର କେତେକାଂଶ 'ବଣ୍ଡିକା' ୧।୨ କାର୍ତ୍ତିକ ୧୩୪୫ (ଅକ୍ଟୋବର ୧୯୩୭)ରେ ପ୍ରକାଶିତ ହୋଇଥିଲା ।

୫୪—'ପଶ୍ଚିମ ପଥିକ'—(ପ୍ରଥମ ପ୍ରକାଶ ୧୯୪୭, ୪।୮ ମକର ୧୩୪୫ (ଜାନୁଆରୀ ୧୯୩୮)ଠାରୁ କ୍ରମଶଃ କେତେଗୁଡ଼ିଏ ପରିଚ୍ଛେଦ ପ୍ରକାଶ ପାଇଛି ।

୫୫—'ବାପୁଜୀ'—ନବ ଭାରତ'—୫।୨ କର୍କଟ ୧୩୪୬ (ଜୁଲାଇ ୧୯୩୮) ମାଟିବାଣୀ ପୃଷ୍ଠା ୫୮ ବାପୁତର୍ପଣ (୧୯୪୮) ପୃଷ୍ଠା ୧୫ ।

୫୬—'ୟୁରୋପରେ ଭାରତୀୟ ଚିନ୍ତାଧାରା'—(ପ୍ରବନ୍ଧ) 'ଆରତି ୧।୧ ବୈଶାଖ ୧୩୪୭ (ଏପ୍ରିଲ୍ ୧୯୪୦)

୫୭—'ବୋଇତ ବନ୍ଦାଣ' (କାବ୍ୟ ନାଟିକା)—'ଆରତି ୧।୩ ଆଷାଢ଼ ୧୩୪୭ (ଜୁନ ୧୯୪୦) । ଏହାର ଫୁଟ୍‌ନୋଟ୍‌ରେ ଅଛି ଲେଖକଙ୍କର ଅପ୍ରକାଶିତ କାବ୍ୟ ନାଟିକା 'ତପୋଇ'ର ଏକ ଅଂଶ—ମାଟିବାଣୀ ପୃ ୭୭ । ଏ କାବ୍ୟ ନାଟକଟି ବୋଧହୁଏ ପୂର୍ଣ୍ଣାଙ୍ଗ ରୂପରେ ପୁସ୍ତକାଗାରରେ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇନ ।

୫୮—'ଉରସ୍ୱାରଣୀ' (କବିତା)—'ଆରତି' ୧।୪ ଶ୍ରାବଣ ୧୩୪୭ ( ଜୁଲାଇ ୧୯୪୦ ) ।

୫୯—'ଦାନ' (କବିତା)—'ଆରତି' ୧।୫ ଭାଦ୍ର ୧୩୪୭ (ଅଗଷ୍ଟ ୧୯୪୦) ।

୬୦—'କୁନ୍ତଳା କୁମାରୀ'—'ଆରତି' ୧।୫ ଭାଦ୍ର ୧୩୪୭ ( ଅଗଷ୍ଟ ୧୯୪୦ ) 'କବି ଓ କବିତା' (୧୯୪୮) ପୃଷ୍ଠା ୧୨୭ ।

ଏହାର ଫୁଟ୍‌ନୋଟ୍‌ରେ ଲେଖାଅଛି ।

'ତା ୨୪।୮।୧୯୪୦ରେ ନବଯୁଗ ସାହିତ୍ୟ ପରିଷଦରେ ପଠିତ' ।

୧୯୨୨ ସାଲଠାରୁ ୧୯୪୦ ସାଲ ପର୍ଯ୍ୟନ୍ତ କବି ମାନ ସିଂହଙ୍କ ବିଭିନ୍ନ ରଚନା କେବେ କେଉଁଠି ପ୍ରକାଶିତ ହେଉଥିଲା ତାହା କୁହାଗଲା । ପାଠକ ପାଠିକା-ମାନେ ଏହା ଦେଖି ଯେପରି ମନେ ନ କରନ୍ତୁ ଯେ ମାନ ସିଂହ ଏତଦ୍‌ବ୍ୟତୀତ ଆଉ କିଛି ଲେଖି ନ ଥିଲେ । ପତ୍ର ପତ୍ରିକାମାନଙ୍କରୁ ମୁଁ ଯେତିକ ସଂଗ୍ରହ କରିଥିଲି, ତାକୁ କେବଳ ଏଠାରେ ଉପସ୍ଥାପନା କରିଛି । ଆଉ ଅଧିକ ଏଥିରେ କେହି ଯୋଗ

ଜଣପାରିଲେ ମାନ ସିଂହ ସାହିତ୍ୟ ଅନୁଶୀଳନ ପାଇଁ ବହୁତ ଉପକାର ହୋଇପାରେ । ବର୍ତ୍ତମାନ ମୁଁ 'ହେମଶସ୍ୟ' (୧୯୩୩) ଓ ହେମପୁଷ୍ପ (୧୯୩୫) କବିତା ପୁସ୍ତକ ଦୁଇଟିର କବିତା ତଥ୍ୟ ବର୍ଣ୍ଣନ କରୁଛି । ଏ ଉଭୟ ପୁସ୍ତକ ଆଜି ସାଧାରଣଙ୍କ ପକ୍ଷରେ ଅତୀବ ଦୁଷ୍ପ୍ରାପ୍ୟ । ତେଣୁ ଏ ପୁସ୍ତକ ଦୁଇଟିର କବିତା ସବୁ ଅନ୍ୟତ୍ର କିପରି ସ୍ଥାନ ପାଇଛି ତାହା ଦେଖାଇ ଦେଉଛି । (କ) 'ହେମଶସ୍ୟ' (୧୯୩୩) ।

୧—'ମାଟିବାଣୀ'—('୯୪୭)—୨ଟି କବିତା (ଗୋପବନ୍ଧୁ ଓ ଚନ୍ଦ୍ରଶେଖର)

୨—'ମାନ ସିଂହ ଚୟନ'—(୨ୟ ଭାଗ—୪ଟି କବିତା)—ସରମ, ରୂପାଲୋକ, ସାଧନା, ଅପରାଧ । ଏହି ଚୟନରେ ଆଉ ମଧ୍ୟ ୭ଟି କବିତା ଏଥିରେ ଅଛି) ।

୩—ପତ୍ରିକାରେ ସ୍ଥାନ ପାଇଛି—୧—(ପ୍ରେମିକର ଅଧିକାର, ଅନ୍ୟ ଦୁଇଟି 'ପ୍ରେମଶସ୍ୟ'ରେ ଅଛି ।)

୪—'ପ୍ରେମଶସ୍ୟ' (୧୯୪୫) ୩୭ଟି କବିତା—(ଏଥିରେ ମଧ୍ୟ ପତ୍ରିକାର ସ୍ଥାନ ପାଇଥିବା 'ଆକର୍ଷଣ' 'ଜାଣେ ଜାଣେ' ଓ ଜୟ ପରାଜୟ ଅନ୍ତର୍ଭୁକ୍ତ ।

୫—ଅନ୍ୟାନ୍ୟ—୧୭ଟି କବିତା (ଯଥା—ପ୍ରାରମ୍ଭ ଭାଷ, କଳ୍ପଲତା, ସ୍ୱର୍ଗର ଜୀବନ, ପ୍ରେମସ୍ୱର୍ଗ, ସୋହାଗ, ନାରୀ, ଦାନ, ପ୍ରତିଦାନ, ବିଦ୍ରୋହ. ଯୋଗ୍ୟତା, ଅଭିମାନ, ମୃତ୍ୟୁ ଭୟ, ଭୋଗ ଓ ତ୍ୟାଗ, ଭକ୍ତି, ପ୍ରାର୍ଥନା, ଭଗିନୀ, ଜିଜ୍ଞାସା, ଭଗିନୀ) ।

ହେମ ଶସ୍ୟ ପୁସ୍ତକର କବିତା ସଂଖ୍ୟା ହେଉଛି ୫୯; କିନ୍ତୁ ଏହାର ପ୍ରଥମରେ ଥିବା 'ପ୍ରିୟା ପ୍ରତି' ଓ 'ପ୍ରାରମ୍ଭ ଭାଷା'କୁ ମିଶାଇ ଏ ପୁସ୍ତକର କବିତା ସଂଖ୍ୟା ୬୧ । (ଖ) 'ହେମ ପୁଷ୍ପ'—(୧୯୭୫) ଏ ପୁସ୍ତକର ସମଗ୍ର କବିତା ସଂଖ୍ୟା ହେଉଛି ୪୬ଟି । ପୁସ୍ତକଟି 'ସୂଚୀ', 'ପ୍ରେମ ସେଚ୍ୟ' ଓ 'ହେମ ପୁଷ୍ପ' ଏହି ତିନି ଭାଗରେ ବିଭକ୍ତ । ଏହି ତିନି ବିଭାଗର କେଉଁ କେଉଁ କବିତା ଅନ୍ୟ କେଉଁ କେଉଁ ପୁସ୍ତକରେ ସ୍ଥାନ ପାଇଛି ତାହା ଦେଖନ୍ତୁ—

୧—ସୂଚୀ—ଏଥିରେ ଅଛି ୫ଟି କବିତା ।

(କ) 'ଜୀବନ ଚିନ୍ତା'—୧—(କବିର ପୁରସ୍କାର) ।

(ଖ) 'ହେମ ପୁଷ୍ପ'—୧୯୪୭—୩ଟି କବିତା—(ଶୁଭ ଦୃଷ୍ଟିର ୩ଟି ସର୍ଗ)

(ଗ) ଅନ୍ୟାନ୍ୟ—୧—(ମାଙ୍ଗଳିକ) ।

୨ । 'ହେମ ଶସ୍ୟ'—ଏଥିରେ ଅଛି ୧୩ଟି କବିତା ।

(କ) ପ୍ରେମଶସ୍ୟ—(୧୯୪୫)—୩ଟି—(ମିଳନ ମାଧୁରୀ, ଅତୃପ୍ତ ଭୋଗ ଓ ବିରହଗାଥା)

(ଖ) ଅନ୍ୟାନ୍ୟ—୧୦ଟି କବିତା—ପ୍ରେମ ଓ ସିଦ୍ଧି, ମନୋରଥ, ଋତ୍ୟବସନ୍ତ, ପ୍ରିୟ ଚକ୍ଷୁ କଥା କହ, ଅପେକ୍ଷା, କଥୟନ୍ତୀ, ପ୍ରଥମ ଓ ପ୍ରଧାନ । ସର୍ବମୟ ଓ କରିଚ୍ଛି ଆ ) ।

୩—'ହେମ ପୁଷ୍ପ' ଏଥିରେ ଅଛି ୨୮ଟି କବିତା—

(କ) ମାଟିବାଣୀ—୩ଟି କବିତା—ଅନୂଢ଼ା' ମହାନଦୀରେ ଜ୍ୟୋତ୍ସ୍ନା ବିହାର ଓ କଣ୍ଟକାଚ)

(ଖ) ଜୀବନଚିନ୍ତା—୧୦ଟି କବିତା—ଦକ୍ଷିଣା ପ୍ରତି, ଧରଣୀ ବାସ୍ର, ଜୀବନ, ସୃଷ୍ଟି ସ୍ତୁତି, ସୁଖ ଦୁଃଖ, ସାଣା-ଭିକ୍ଷା, ପ୍ରାଣ ପକ୍ଷୀ, ବିଶ୍ୱ ରୂପ, ଦେବ ପୂଜା ଓ ଗୀତାପଣ । ଜୀବନ ଚିନ୍ତାର 'ମୂକ ଦେବତା', 'ଆଲୋକ ମାଗେ', 'ଆହ୍ୱାନ' ଓ 'ତୁମର ପ୍ରୟୋଜନ' ଏଇ ଚାରୋଟି କବିତା 'ଗୀତାର୍ପଣ'ର ଚାରୋଟି କବିତା ସଙ୍ଗେ ସମାନ । )

(ଗ) ହେମ ପୁଷ୍ପ (୧୯୪୭)—୧୩ଟି କବିତା—(ପରେ ଏ କବିତାଗୁଡ଼ିକର ନାମ ଲୁହାଯାଇଛି)

(ଘ) ଅନ୍ୟାନ୍ୟ ୨ଟି କବିତା—(ଭଗିନୀ ଓ ଭଗ୍ନ ମନୋରଥ) । ସମୁଦାୟ—୪୭ଟି କବିତା ।

୧୯୪୦ ସାଲ ପରେ ମାନ ସିଂହ ଅନେକ କବିତା ଲେଖିଛନ୍ତି, କବିତା ପୁସ୍ତକ ମଧ୍ୟ ସେ ଛପାଇଛନ୍ତି; କିନ୍ତୁ ପ୍ରେମ ଶସ୍ୟ (୧୯୦୫) ଜୀବନଚିନ୍ତା (୧୯୪୭) ମାଟିବାଣୀ (୧୯୪୭) ଓ ହେମପୁଷ୍ପ (୧୯୪୭) ପୁସ୍ତକମାନଙ୍କରେ ଆମର ଆଲୋଚ୍ୟ ସମୟର ଅନେକ କବିତା ସ୍ଥାନ ପାଇଛି । କେଉଁ ପୁସ୍ତକରେ ଏପରି କେତେ କବିତା ସ୍ଥାନ ଲାଭ କରିଛି ତାହା ବର୍ତ୍ତମାନ ଦେଖନ୍ତୁ ।

୧—ପ୍ରେମ ଶସ୍ୟ (୧୯୪୫) ଧୂପ, ହେମ ଶସ୍ୟ ଓ ଶେଷ ଗୁଚ୍ଛ ନାମରେ ଏହା ୩ଟି ଭାଗରେ ବିଭକ୍ତ । ପ୍ରତ୍ୟେକ ବିଭାଗର କବିତା ଦେଖନ୍ତୁ ।

(କ) ଧୂପ-ଧୂପ ବହିରୁ ୨୨ଟି କବିତା, ଶେଷଗୁଚ୍ଛ—ଧୂପ ବହିରୁ ୩ଟି କବିତା । ତେଣୁ 'ଧୂପ'ର ୨୫ଟି କବିତା ଏଥିରେ ଅଛି । ବାକି ନ ଥିବା ୭ଟି କବିତା ହେଉଛି ତରୁଣ କବିର ଆଶା, ପ୍ରଣୟୀ, ପାଶୋର ପ୍ରଣୟ, ପ୍ରେମର ପରିମାପ, ପ୍ରେମର ଭିକ୍ଷା, ପ୍ରେମ ଓ ଜରା ଏବଂ ପ୍ରେମ ଓ ମୃତ୍ୟୁ ।

(ଖ) ଶେଷ ଗୁଚ୍ଛ (୧) ହେମ ପୁଷ୍ପ (୧୯୩୫)ରୁ ୩ଟି କବିତା । ବିରହୀ ଗାଥା, ମିଳନ ମାଧୁରୀ ଓ ଅତୃପ୍ତ ଭୋଗ ।

୨—ଅନ୍ୟାନ୍ୟ ୭—(ଜ୍ୟୋତ୍ସ୍ନା ଭୋଗ, ଶ୍ରାବଣ ଅଭିସାର, ନିତ୍ୟ ସ୍ୱୟମ୍ବର, ଯୋଗ୍ୟ ହେବି, ନବଜନନୀ, ନାରୀର ଅଧିକାର ଓ ବିରହ ପ୍ରଦୀପ, 'ବିରହ ପ୍ରଦୀପ' ପତ୍ରିକାରେ ପ୍ରକାଶିତ—(ଆଧୁନିକ ଅକ୍ଟୋବର ୧୯୩୭)

(ଗ) ହେମ ଶସ୍ୟ—୩୭ଟି କବିତା—ସର୍ବମୋଟ ୭୨ଟି କବିତା—

୨—ଜୀବନ ଚିନ୍ତା (୧୯୪୭) ଏଥିରେ ଅଛି ୩୦ଟି କବିତା ।

(କ) ହେମ ପୁଷ୍ପ' (୧୯୩୫ରୁ)—୧୪ଟି କବିତା—

(ଖ) 'ଧୂପ'ରୁ—୨ଟି କବିତା—(ତରୁଣ କବିର ଆଶା ଓ ପ୍ରଣୟୀ)

(ଗ) ପତ୍ରିକାରୁ—୩ଟି କବିତା—(ନିନ୍ଦିତ ଭଗବାନ, ଶକ୍ତିର ଗୌରବ)—ଭଞ୍ଜପ୍ରଦୀପ ଜାନୁୟାରୀ ୧୯୪୨ ଓ ଆତତାୟୀ—ସହକାର ନଭେମ୍ବର ୧୯୪୧ ।

(ଘ) ଅନ୍ୟାନ୍ୟ—୧୧ଟି—ଶେଷକଥା, ବିଶୃଙ୍ଖଳ ସୃଷ୍ଟି, ବନ୍ଧନ କୃତାର୍ଥ, ଦୁର୍ବାର ଆରାଧନା, ଅନୁତପ୍ତ, ଦୁର୍ବଳ ସୈନିକ, ତୀର୍ଥ ଧୂଳି, ଅଶ୍ରୁ ପୂଜା, ସମରବିମୁଖ ଓ ଦ୍ୱନ୍ଦ୍ୱ । )

ମୋଟ—୩୦ଟି କବିତା

୩—ମାଟିବାଣୀ (୧୯୪୭) ଏଥିରେ ଅଛି ୨୯ଟି କବିତା ।

(କ) 'ହେମ ଶସ୍ୟ' (୧୯୩୩)ରୁ—୨ଟି କବିତା ।

(ଖ) 'ହେମପୁଷ୍ପ' (୧୯୩୫)ରୁ—୩ଟି କବିତା ।

(ଗ) 'ପତ୍ରିକାରୁ—୧୨ଟି କବିତା—ଏଥିରୁ କେବଳ 'ପଲ୍ଲୀ ସନ୍ଧ୍ୟା' ଭଞ୍ଜ ପ୍ରଦୀପ ଏପ୍ରିଲ ୧୯୪୨ରେ ପ୍ରକାଶିତ, ଅନ୍ୟାନ୍ୟ ୧୯୪୦ ପୂର୍ବରୁ) ।

(ଘ) ଅନ୍ୟାନ୍ୟ—୧୨ଟି କବିତା—କୁଟୀର ଚିତ୍ରନ, ସ୍ୱର୍ଗୀୟ କବି ଗୋପାଳକୃଷ୍ଣ, ଗାନ୍ଧିଜୀ, ରବୀନ୍ଦ୍ରନାଥ, ଡିଅପୋଇ ବିଳାପ ଇତ୍ୟାଦି) । ମୋଟ—୨୯ଟି କବିତା ।

୪—'ହେମପୁଷ୍ପ' (୧୯୪୭)—ଏଥିରେ ଅଛି ୩୫ଟି କବିତା ।

(କ) 'ହେମ ଶସ୍ୟ' (୧୯୩୫)ରୁ ୧—(ରୂପାଲୋକ) ।

(ଖ) ପତ୍ରିକାରୁ ୨ଟି (ରୂପସୀର ପୂଜା ଅଗଷ୍ଟ ୧୯୨୮) ଓ 'ଶେଲୀ ମୃତ୍ୟୁ' ଭଞ୍ଜ ପ୍ରଦୀପ (ସେପ୍ଟେମ୍ବର ଡିସେମ୍ବର ୧୯୪୩)

(ଗ) 'ହେମପୁଷ୍ପ' (୧୯୩୫)ରୁ ୧୭ଟି କବିତା ଶ୍ରୀଭଦ୍ରଦୃଷ୍ଟି ୩ ସର୍ଗ, ରୂପଦେବତା, ଇନ୍ଦ୍ରାଣୀ କଣୋଗ୍ର, ବିରହୀଘନ, ପ୍ରାବୃଟ ସମ୍ଭାଷଣ, ଯଥାସ୍ଥାନ, ଘନଶବ୍ଦରେ, ହଂସ ହତ୍ୟା, ବସନ୍ତୋତ୍ସବ, ଜ୍ୟୋତ୍ସ୍ନାମୟୀ, ଇତସ୍ତତଃ, କୁଳଟାରାଧା, ବଂଶୀର ଡାକ, ଆତ୍ମପର, ବୈଠିକ୍, 'ବୈଠିକ୍' କବିତାଟି 'ହେମପୁଷ୍ପ' (୧୯୩୫) ପୁସ୍ତକରେ କୌଣସି ନାମରେ ନାହିଁ ।

(ଘ) ଅନ୍ୟାନ୍ୟ—୧୫ଟି କବିତା ।

କବି ମାୟାଧର ମାନ ସିଂହ କେଉଁ ବୟସରେ ଏ ଲେଖାସବୁ ରଚନା କରିଥିଲେ ତାହା ଜାଣିବା ପାଇଁ ତାଙ୍କର ଜନ୍ମ ଓ ଶିକ୍ଷାର ସମୟ ଜାଣିବା ଉଚିତ । ଏ ବିଷୟରେ ନିମ୍ନଲିଖିତ ସମ୍ବାଦ ପାଟନା ବିଶ୍ୱବିଦ୍ୟାଳୟର ବାର୍ଷିକ କାଲେଣ୍ଡରରୁ ସଂଗ୍ରହ କରାଯାଇଛି ।

୧—ଜନ୍ମ—୧୯୦୫ ସାଲ ନଭେମ୍ବର ୧୩ ତାରିଖ ।

୨—ମେଟ୍ରିକ୍ ପାଶ୍—୧୯୨୭ ସାଲ ।

୩—ଆଇ. ଏ ପାଶ୍—୧୯୨୮ ସାଲ ।

୪—ବି. ଏ. ପାଶ୍ ୧୯୩୦ ସାଲ, ଇଂରାଜୀ ଅନର୍ସ (୨ୟ ଶ୍ରେଣୀ) ।

୫—ଏମ୍. ଏ ପାଶ୍—୧୯୩୨ ସାଲ—ଇଂରାଜୀରେ ୨ୟ ଶ୍ରେଣୀ ।



# ମାନସିଂହ କାବ୍ୟରେ ପ୍ରତିଭାର ଆଦ୍ୟ ଉନ୍ମେଷ

ଶ୍ରୀ ପଠାଣି ପଟ୍ଟନାୟକ

## ଆଦ୍ୟ-ପ୍ରତିଭାର ଉନ୍ମେଷ

ଦିନ ଥିଲା ଯେତେବେଳେ କି ମାନସିଂହ ଆଧୁନିକ ଓଡ଼ିଆ ସାହିତ୍ୟରେ ବିଶେଷତଃ ତାରୁଣ୍ୟର କବି ବୋଲି ହିଁ ପରିଚିତ ଥିଲେ । ଯୌବନର ବନ୍ଦନା ତାଙ୍କର କବିତାର ପ୍ରତିଟି ପଂକ୍ତିରେ । କିନ୍ତୁ ମାନସିଂହଙ୍କର ପ୍ରକୃତରେ ପ୍ରତିଭା ସୁଦୂରପ୍ରସାରୀ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚଳାଇ ସେ ବର୍ତ୍ତମାନ ଅପୂର୍ବ ସିଦ୍ଧିର ଅଧିକାରୀ । Poets are born, not made—ଏହି କଥାଟି ସମସାମୟିକ ସକଳ ଓଡ଼ିଆ କବିଙ୍କ ଭିତରେ କବି ମାନସିଂହଙ୍କ ପ୍ରତି ହିଁ ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ ହୋଇପାରେ । ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ପୁରୀ ଜିଲ୍ଲା ପାରିକୁଦ ଅଞ୍ଚଳରେ ଏକ ଅଖ୍ୟାତ ପଲ୍ଲୀରେ କବିଙ୍କର ଜନ୍ମ । ତେଣୁ ନଗର ଜୀବନରେ ସାଂସ୍କୃତିକ ପରିବେଶ, ସାହିତ୍ୟ ଓ କଳାର ସାଧନା ପାଇଁ ଯେଉଁ ପ୍ରେରଣା ଯୋଗାଇଥାଏ, ବାଲ୍ୟକାଳରେ ଶ୍ରୀଯୁକ୍ତ ମାନସିଂହଙ୍କୁ ତାହା ମିଳିବାର ସୁଯୋଗ ନ ଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, କି ଐଶୀ ପ୍ରେରଣାରେ ସେ ଦିନର ତରୁଣ ମାନସିଂହ ସେ କାଳର ପ୍ରତିଷ୍ଠିତ ସାହିତ୍ୟ ପତ୍ରିକା 'ମୁକୁର' ପୃଷ୍ଠାରେ ପ୍ରଥମ ଲେଖନୀ ଚାଳନା କରି ହିଁ ଶ୍ରଦ୍ଧାନ୍ୱିତ ସ୍ଥାନ ପାଇଥିଲେ । ପଲ୍ଲୀଜୀବନର ଉଷା, ବ୍ରତ ଏବଂ ପୁର୍ବଣିସେବିତ ଚଳଣି ଓ ପରମ୍ପରା ହୁଏତ କବିଙ୍କର ବାଲ୍ୟଜୀବନରେ ଅଶେଷ ସ୍ୱାଭାବିକ କୌତୂହଳ ଏବଂ ମାନସିକ ପ୍ରତିକ୍ରିୟା ସୃଷ୍ଟି କରିଥିବ । ତାଙ୍କର ଏହି ପ୍ରଥମ କାଳର ଗୋଟିଏ ଦୁଇଟି କବିତା ପାଠ କଲେ ଏହା ସ୍ପଷ୍ଟ ଅବଧାରିତ ହୋଇଥାଏ । ସେ ଦିନର ଜଣେ ସ୍କୁଲ ଛାତ୍ର 'ଜନ୍ମାଷ୍ଟମୀ' * ସମ୍ପର୍କରେ କବିତା ରଚନା କରିବାକୁ ଯାଇଁ ବର୍ଷାକାଳର

---

* ସହୃଦୟ ପାଠକବର୍ଗ ଏ କବିତାଟିକୁ ମାନସିଂହ ଗ୍ରନ୍ଥାବଳୀରେ ଖୋଜିଲେ ପାଇବେ ନାହିଁ । ଅଧ୍ୟାପକ ପଟ୍ଟନାୟକ ଯଥାର୍ଥରେ କହିଛନ୍ତି ଯେ ଏହା ହିଁ କିଶୋର ମାନସିଂହଙ୍କର ପ୍ରଥମ ପ୍ରକାଶିତ କବିତା—ସେଦିନର 'ମୁକୁର'ରେ ବାହାରିଥିଲା । କବିତାଟି କିନ୍ତୁ ସେହି ପତ୍ରିକାର ପୃଷ୍ଠାରେ ହିଁ ଏ ପର୍ଯ୍ୟନ୍ତ ପଡ଼ିରହିଛି ।

ସେଉଁ ସୂଚନା ପ୍ରଦାନ କରିଛନ୍ତି । ଏଥିରେ ରଚନାଧର୍ମିରେ ଅପରିପକ୍ୱତାର ଲକ୍ଷଣ ବାରି ହୋଇ ପଡୁଥିଲେ ହେଁ, ବର୍ଣ୍ଣନାବୈଚିତ୍ର୍ୟ ଅତ୍ୟନ୍ତ ଉପଭୋଗ୍ୟ ହୋଇଛି ଏହା ନିଃସନ୍ଦେହ । ଶ୍ରୀକୃଷ୍ଣଙ୍କୁ ବନ୍ଦୀଶାଳାରୁ ଅତ୍ୟନ୍ତ ଗୋପନରେ ପିତା ବସୁଦେବ ଅପହରଣ କରି ନେବାବେଳେ ଯମୁନା ନଦୀ କୂଳରେ ବର୍ଷାକାଳର ରୂପଶୋଭା କିଶୋର ମାନସିଂହଙ୍କ ଲେଖନୀରେ ଏହିପରି ଫୁଟିଉଠିଥିଲା—

"ସ୍ତବ୍ଧ ଧରଣୀ ନୀରବ ଜଗତ
ବହଇ ଝଞ୍ଜା ପବନ
ବରଷେ ବାରି ଚମକେ ଚପଳା
ଶୁଭଇ ଘୋର ଗର୍ଜନ ।
ଅଦୃଶ୍ୟ ଆଜି ଅମ୍ବରେ ବିଧୁ
ବାରିଦେ ଢଙ୍କା ଗଗନ
ନିରତ ଗ୍ରାମ— ମନ୍ଦ୍ର ନିନାଦେ
କମ୍ପଇ ବିଶ୍ୱଭୁବନ ।
କଳ ନାଦିନୀ ଯମୁନା ଆଜି
ମୁଖରି ଉର୍ମି-ନିନାଦେ
ମୋହନ-ରୂପ ତେଜି ଶ୍ରୀଷଣ-
ବେଶ, ବରଷା-ଉନ୍ମାଦେ ।" (୧)

ଏହି ସମୟରେ କବି ଖୋର୍ଦ୍ଧା ଉଚ୍ଚ ଇଂରାଜୀ ବିଦ୍ୟାଳୟର ନବମ ଶ୍ରେଣୀର ଛାତ୍ର ଥିଲେ । ଖୋର୍ଦ୍ଧାର ଅବଲୋକିତ ବାତାବରଣ ମଧ୍ୟରେ କବି ନିଜର ମାତୃଭୂମି ଏବଂ ମାତୃଭାଷାର ସ୍ୱରୂପ ଚହ୍ନିବା ପାଇଁ ସୁଯୋଗ ଲାଭ କରିଥିବେ । ସେତେବେଳେ ପରାଧୀନତାର ଗ୍ଲାନି ଆମର ସମଗ୍ର ସାମାଜିକ ଜୀବନକୁ ଆଚ୍ଛନ୍ନ କରି ରଖିଥିଲା । ଏ ଦେଶର ନବୀ-ଇଂରେଜୀ ଶିକ୍ଷିତ ଯୁବକଗଣ ପାଶ୍ଚାତ୍ୟ ଶିକ୍ଷାଲୋକର ପ୍ରଭାବରେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହେବା ସ୍ୱାଭାବିକ । ଏ ଦେଶର ପ୍ରାଚୀନ ଐତିହ୍ୟ ସେମାନଙ୍କ ପ୍ରାଣରେ ହୁଏତ ଅହେତୁକ ପୁଲକ ସଞ୍ଚାର କରିବା ପାଇଁ ଖୋରାକ ଯୋଗାଇଥିବ । କିନ୍ତୁ ମାତ୍ର କିଶୋର ବୟସରେ ହିଁ ମାନସିଂହଙ୍କର "ମା' ଓଡ଼ିଶା" କବିତାଟି ଏଠାରେ ପ୍ରଣିଧାନଯୋଗ୍ୟ । ଉତ୍କଳ ସମ୍ମିଳନୀ ନେତୃତ୍ୱରେ ବିଚ୍ଛିନ୍ନ ଓଡ଼ିଶାର

(୧) ମୁକୁର—୧୩୩୦—୧୭ଶ ଭାଗ—ପୃ ୨୫ । ପାଠକେ, ଯେଉଁ କବି ପରେ ବଚନର ଅନବଦ୍ୟ ସିଦ୍ଧି ମନୋରମତାରେ ସମଗ୍ର ଓଡ଼ିଆ ଜାତିକୁ ମୁଗ୍ଧ କଲେ, ତାଙ୍କର ଏହି କିଶୋର-ରଚନାରେ ଛନ୍ଦ-ପ୍ରମାଦ ମଧ୍ୟ ଅତ୍ୟନ୍ତ ଉପଭୋଗ କରିବେ ବୋଲି ଆଶା ।

ଏକତ୍ରୀକରଣ ପାଇଁ ଆନ୍ଦୋଳନକୁ କବି ଅତ୍ୟନ୍ତ ବ୍ୟଗ୍ର ଭାବରେ ଲକ୍ଷ୍ୟ କରିଥିବେ । ଉତ୍କଳଭ୍ରଷ୍ଟୀ ଅଞ୍ଚଳର ଏକତ୍ରୀକରଣ ଏବଂ ଜାତିର ବହୁବିଧ କଲ୍ୟାଣ କାମନା କରି ତାଙ୍କର କିଶୋର-କବିପ୍ରାଣ ମଧ୍ୟ ଉଦ୍‌ବେଳିତ ହୋଇ ଉଠିଥିଲା । ଏହି କବିତାରେ କବି କେବଳ ଜାତିର ଅତୀତ ଜାତୀୟତାପ୍ରୀତି ପ୍ରକାଶ କରି ନାହାନ୍ତି, ତାଙ୍କର କବି ପୁରୁଷର ବ୍ୟକ୍ତିତ୍ୱ ଉପରେ ଅଧିକ ସ୍ୱୀକୃତି ଲାଭ କରୁଅଛି, ତାହା ମଧ୍ୟ ପ୍ରମାଣିତ ହେଉଅଛି ।

"ଜନ୍ମ ଭୂମି, ଶିଳ୍ପଧାତ୍ରୀ, ତୁହିଟି ମା, ବିଶ୍ୱେ ଗରବିଣୀ
    ସ୍ୱମାତା ଉତ୍କଳ ଜନନୀ ।
ଆଦିମ ତାମସ ଗର୍ଭୁ ଯେବେ, ଗୋ ମା ! ବିକାଶ ତୋହର
ପ୍ରଥମ ଚୁମ୍ବନ-କ୍ରୀଡ଼ା ରବି ଦେଲା ତୋ' ଅଙ୍ଗରେ ଭରି
ଆସିଲା ବସନ୍ତ ତହୁଁ କରିବାକୁ ତୋ ବକ୍ଷରେ ଲୀଳା
ସାଜିଲା ପ୍ରକୃତି ତହୁଁ କରି ତୋତେ ଏମନ୍ତ ଉଜ୍ଜ୍ୱଳା
ପାତାଳ ଫୁଟାଇ ତହୁଁ ବହିଲେ ଏ ନଦୀ ଶତ ଶତ
    ବ୍ୟଗ୍ର ଅବିରତ ।

× × × ×

ଛିନ୍ନ ଭିନ୍ନ ଅଙ୍ଗ ତୋର ବିଦେଶୀର ନିର୍ମମ ଶାସନେ
ସମ୍ମାନ ମରଇ ନିତ୍ୟ ଦାରିଦ୍ର୍ୟର କ୍ରୂର ନିପୀଡ଼ନେ
ବିଧାତାର ବାମ ନେତ୍ର ପଡ଼ିଛି ମା' କପାଳେ ତୋହର
ନିଅ ଆଉ କେତେ ଦିନ ଭଗବାନ ଆଦେଶେ ଏ ଭର ।
ଭାବେ ମନେ, ପାହିଲଣି ତୋର ଦୁଃଖ ତମିସ୍ର ସହିତ
    ଅଧମ ସନ୍ତତି ।" (୧)

ସେହି କଥା କିଶୋର ବୟସରେ ହିଁ ଆଜନ୍ମ ସ୍ୱପ୍ନବିଳାସୀ କବି ଆଶାବାଦୀ ହୋଇଉଠିଛନ୍ତି । ଉତ୍କଳର ଗୌରବମୟ କାହାଣୀ ତାହାଙ୍କ ପ୍ରାଣରେ ଉନ୍ମାଦନା ସୃଷ୍ଟି କରିଅଛି । ସେ ମନେ କରିଛନ୍ତି, ଏ ରାଜନୈତିକ ଓ ସାମାଜିକ ଦୁର୍ବିପାକ ହୁଏତ ଅଚିରେ ଦୂର ହୋଇଯିବ । ସେହି ବର୍ଷ କବି ଏକ କ୍ଷୁଦ୍ର ଗଳ୍ପ 'ସହକାର'ରେ ପ୍ରକାଶ କରିଥିବାର ଆମେ ଏବେ ଦେଖୁଛୁ । "ଅଭିଶାପ" ଶୀର୍ଷକ ଏହି କ୍ଷୁଦ୍ର ଗଳ୍ପର କଥାବସ୍ତୁ ଉତ୍କଳର ପ୍ରାଚୀନ ଇତିହାସ ପୃଷ୍ଠାକୁ ଆଶ୍ରୟ କରି ଲେଖା ଯାଇଛି । ଖୋର୍ଦ୍ଧାଗଡ଼ର ଭୋଇ ବଂଶର ରାଜା ରାମଚନ୍ଦ୍ର ଦେବ ଇଂରେଜମାନଙ୍କ ସହିତ ଯୁଦ୍ଧ କରି କରି ଯେତେବେଳେ ନିଶ୍ଚିତ ଭାବରେ ଜାଣିପାରିଛନ୍ତି ଯେ ଅବିଶ୍ୱାସୀ

(୧) ସହକାର—୧୩୩୨—୭ମ ସଂଖ୍ୟା—ପୃ ୧୬୧-୧୬୩

ଅନୁଚରମାନଙ୍କ କୁମନ୍ତ୍ରଣାରେ ଗଡ଼ର ପତନ ଅବଶ୍ୟମ୍ଭାବୀ, ସେତେବେଳେ ରାଣୀ କମଳମୁଦ୍ରିକାଙ୍କୁ ନିରାପଦରେ ଦୁର୍ଗର ଗୋପନ ସୁଡ଼ଙ୍ଗ ବାଟେ ପଳାୟନ କରି ଆତ୍ମରକ୍ଷା କରିବା ପାଇଁ ସେ ପରାମର୍ଶ ଦେଇଛନ୍ତି । ଜୀବନ ମରଣର ଏହି ମହାନ ସଙ୍କଟ କାଳରେ ଉଭୟ ରାଜା ଓ ରାଣୀଙ୍କର ବିଦାୟକାଳୀନ ମୁହୂର୍ତ୍ତ ଅତ୍ୟନ୍ତ କରୁଣ ଏବଂ ମନୋଜ୍ଞ ହୋଇଅଛି । (୩) ଓଡ଼ିଆ ସାହିତ୍ୟରେ ସାର୍ଥକ ଐତିହାସିକ ଗଳ୍ପର ସଂଖ୍ୟା ଅତ୍ୟନ୍ତ ନଗଣ୍ୟ । କିନ୍ତୁ ଗାଳ୍ପିକ ମାନସିଂହ ଯଦି ଏ କ୍ଷେତ୍ରରେ ନିରବଚ୍ଛିନ୍ନ ସାଧନା କରିଥିଲେ ଓଡ଼ିଆ ସାହିତ୍ୟର ଏକ ଅଭାବ ପୂରଣରେ ସେ ସମର୍ଥ ହୋଇପାରିଥାଆନ୍ତେ । କବି ମାନସିଂହ ଗଳ୍ପ ନ ଲେଖିଲେ ମଧ୍ୟ ଏହି ଗଳ୍ପ ରଚନାର ଅନ୍ତରାଳରେ କବିଙ୍କର ପ୍ରାଣରେ ମଧ୍ୟଯୁଗୀୟ ସୁବର୍ଣ୍ଣ ଯୁଗର କାହାଣୀ କିପରି ରୂପର ଭେଳକି ସୃଷ୍ଟି କରୁଥିଲା, ତାହା ପ୍ରାଞ୍ଜଳ ଭାବରେ ଲକ୍ଷ୍ୟ କରାଯାଇଥାଏ । ସେଥିପାଇଁ ପରବର୍ତ୍ତୀକାଳରେ ଏକ ବଳିଷ୍ଠ କବି ପୁରୁଷର ପ୍ରାଣଧର୍ମରେ ରୋମାଣ୍ଟିକ-ଚେତନାର ଅଶରୀରୀ ବାଣୀ ସହସ୍ର-ମୂର୍ଚ୍ଛନା ତୋଳିବାର ଦେଖିବାକୁ ମିଳେ ।

ଏହି ପ୍ରାଚୀନକୁ ଆମ ଆଗରେ ଜୀବନ୍ତ କରି ଯୋଗାଇବାର ସାଧନାର ପ୍ରଥମ ପରୀକ୍ଷା କବି ମାନସିଂହ ବୋଧହୁଏ କରିଛନ୍ତି ତାଙ୍କର 'ଉପେକ୍ଷିତା' କବିତାରେ । 'ସହକାର' ପତ୍ରିକାରେ ଧାରାବାହିକ କେତୋଟି ସଂଖ୍ୟାରେ ଏହି ବୃହତ୍ କବିତାଟି ଆତ୍ମପ୍ରକାଶ କରିଥିଲା । 'ଉପେକ୍ଷିତା'ର ଛନ୍ଦୀସ୍ୱମାନ କିପରି ଯେ ଦିନେ ଉତ୍କଳର "କବି ମାନସିଂହ"ରେ ପରିଣତ ହେବେ, ଏହାର ନିର୍ଭର ପ୍ରତିଶ୍ରୁତି ଆଲୋଚ୍ୟ କବିତାରୁ ମିଳିଥାଏ । (୪)

ପୁରାଣ ପାଠକମାନଙ୍କ ଦୃଷ୍ଟିରେ ସୂର୍ପଣଖା ଏକ ବିକଟାଳ ରାକ୍ଷସୀ । ଏହି ବିଶ୍ୱବିଜୟିନୀ କାମୁକୀ ନାରୀ ରାମଙ୍କଦ୍ୱାରା ଦଣ୍ଡିତା ହୋଇଥିବାର କାହାଣୀ କୌଣସି ରାମାୟଣ ପାଠକକୁ ଅବିଦିତ ନୁହେଁ । ସେଥିପାଇଁ ସୂର୍ପଣଖା ପାଇଁ କୌଣସି ପାଠକ ସହାନୁଭୂତିରେ ଆହା ! କହିବାର ଜଣାଯାଏ ନାହିଁ । ମାତ୍ର ତରୁଣ କବି ମାନସିଂହ ସୂର୍ପଣଖାର ହୃଦୟ ସାଗରରେ ଯେଉଁ ପ୍ରଣୟର ତରଙ୍ଗ ଆବିଷ୍କାର କରିଛନ୍ତି, ତାହା କାହାର ଅବା ଚିତ୍ତ ସ୍ପର୍ଶ ନ କରିବ ? ସୂର୍ପଣଖା ବିଶ୍ରବା ଋଷିଙ୍କର କନ୍ୟା । ବାଲ୍ୟକାଳରୁ ତପୋବନର ଶାନ୍ତ ଶୀତଳ ପରିବେଶ ମଧ୍ୟରେ ସୁନ୍ଦରୀ ସୂର୍ପଣଖାର ଜୀବନ ଗିରି-ତରଙ୍ଗିଣୀ ପରି କଳକଳ ଛଳଛଳ ନାଦରେ ପ୍ରବାହିତ ହେଉଥିଲା । ଜୀବନରେ ଅସୁମାରି ସ୍ୱପ୍ନ ଏବଂ ପ୍ରକୃତି କୋଳରେ କୁଞ୍ଜେ କୁଞ୍ଜେ ଲତା ବୃକ୍ଷ ମେଳରେ ଅନନ୍ତ ପ୍ରେମର ସାଧନରେ ସେ ରହିଥିଲା ନିମଗ୍ନ । ସେ ଜୀବନ ଥିଲା ନିର୍ମଳ ଏବଂ ପବିତ୍ର ।

---

(୩) ସହକାର— ୧୩୩୬ — ୧୧ଶ ୧୨ଶ ସଂଖ୍ୟା

(୪) ସହକାର— ୧୩୩୭-ନବମ କଳସ- ୧ମ ଅଞ୍ଜଳି-ତୃତୀୟ ଅଞ୍ଜଳି

"ମୋଦ ଦେଇ ଅନ୍ୟ ପ୍ରାଣେ, ସଜ ଫୁଲ ପତ୍ର
ହସି ହସି ଦୁଇ ଦନ ସୂର୍ଯ୍ୟାଲୋକ ତଳେ—
ମିଶାଇ ବାୟୁର ଅଙ୍ଗେ ସ୍ୱଅଙ୍ଗ ସୁରଭି
ଧୂଳରେ ମିଶିବା ଶେଷେ ; ଏ ଥିଲା ହୃଦୟେ
ଏକାନ୍ତ ବାସନା ମମ ।"

ମାତ୍ର ସେହି ନସ୍ତରଙ୍ଗ ଜୀବନରେ ହଠାତ୍ ଝଡ଼ର ପ୍ରକୋପ ଉଠେ । ନଚଳସ ଜୀବନରେ ଅଗ୍ନନକ ତରଙ୍ଗ ସୃଷ୍ଟି ହୁଏ । ଋଷି ଆଶ୍ରମକୁ ଜଣେ ସୁଦର୍ଶନ କଶୋର ଆସିଲେ ଅଧ୍ୟୟନ କରବା ପାଇଁ । ଏହି କଶୋରର ରୂପ ଶୋଭାରେ ଅଲଅଲୀ ସରଳା କଶୋରୀ ସୂର୍ପଣଖା ଅତ୍ୟନ୍ତ ମୁଗ୍ଧ ହେଲ । ଏହି କଶୋରମଣିଙ୍କୁ ଥରେ ଦେଖିଲେ ନେତ୍ର ମନ ପୂରଉଠେ । ଆଉ କଏତ ତାଙ୍କୁ ଭୁଲିବାକୁ ମନ ଡାକେ ? ଏହି ସମୟରେ ପ୍ରକୃତର ସଂସାରରେ ଆସେ ଐନ୍ଦ୍ରଜାଲକ ପରବର୍ତ୍ତନ, ମନଚାଁ ଯାଦୁକସ୍ପର୍ଶ । କବ କଳ୍ପନାରେ ତାହା ରୂପାୟିତ ହୁଏ ଏହିପର—

"ଆସିଛୁ ସେ ତପୋବନେ ସ୍ୱର୍ଗଶୋଭା ଧର
ଚନ୍ଦ୍ରକାର ମଧୁକ୍ରୀଡ଼ା ଲଗାଇଛୁ ଯାଦୁ
କାନନର ଅଂଶେ ଅଂଶେ ; ଆଶ୍ରମ ତଟିମା
ଫୁଲ୍ଲ ଫୁଲ୍ଲ ରାବ୍ର ବେଗେ ବହୁଛୁ ଭସାଇ
ବକ୍ଷେ ବକ୍ଷେ କୌମୁଦୀର ନୃତ୍ୟମାନ ଲୀଳା,
ଫୁଟିଛୁ ଅସଂଖ୍ୟ ଫୁଲ ଅଧର ମେଲାଇ
ବୃକ୍ଷେ ବୃକ୍ଷେ ଡାଳେ ଡାଳେ ହସ୍ୟ ଭର ଥରେ
ଚନ୍ଦ୍ରକା ପିଇବା ଆଶେ; ତପୋବନେ ଯେତେ
ବାଳକ ବାଳକା ସଙ୍ଗେ ମାତଛୁ ସେ ଦନ
ମହୋତ୍ସବେ, ନଜେ ନଜେ ରଜାରାଣୀ ହୋଇ
ଆଚର୍ମ୍ମିଲୁ ଅଭିଷେକ, ରାଣୀ କର ମୋତେ
ବନ୍ଦଲେ ପ୍ରଥମେ ସର୍ବେ ଫୁଲ ଫଳ ଦେଇ
ଯେ ଯାହାର ଉପହାର ଯତନେ ସମ୍ଭାର
ଢାଳଲେ ମୋ ପଦତଳେ ।"

କଶୋର ବଦ୍ୟାର୍ଥୀ ମଧ ମନରୁ ଆଁ ବ୍ୟାକୁଳତା, ହଜଯିବାର ପାଗଳାମି । ଏତକବେଳେ ଅନ୍ଧାରରୁ ବାହାର ଆସି କଶୋରମଣି 'ଘେନବ କ ମୋର ମାଳାଟି' କହ ଋଷିକନ୍ୟା ସୂର୍ପଣଖାର ଗଳାରେ ଲମ୍ବାଇଦେଲେ ।

ଯୌବନର ତରଙ୍ଗ ଉଠିବା ପାଇଁ ଏବେ ମଧ୍ୟ ବାକି ଅଛି, ତଥାପି ସେହିଦିନଠୁ କିଶୋରୀ ଋଷିକନ୍ୟାର ପ୍ରାଣରେ ପ୍ରେମର ଶିଖା ଜାଗିଉଠିଲା । ତାର ପ୍ରାଣ ଓ ମନରେ ଖାଲି ପ୍ରତିଧ୍ୱନିତ ହେଲା ମୋହନ ମୁରଲୀର ମୂର୍ଚ୍ଛନା । ନିର୍ଜନ ଉପବନର ଛାୟାଶୀତଳ ଅଙ୍ଗନରେ ବସିବାର ଭଳି ସେମାନେ ପରମ ପରିତୋଷ ଲାଭ କଲେ । କିନ୍ତୁ ଏ ଦୁଇଟି କିଶୋର କିଶୋରୀ ପ୍ରାଣର ଏ ହସଖୁସି ଅଧିକ ଦିନ ରହିଲା ନାହିଁ । ହଠାତ୍ ଋଷିତନୟାର ଜୀବନପଥରେ ଯୌବନର ଝଡ଼ ସୃଷ୍ଟି ହେଲା । ଅଚାନକ ଏ ପରିବର୍ତ୍ତନ ସୂର୍ପଣଖାର ପ୍ରାଣ ଓ ମନରେ ଯେଉଁ ଆଲୋଡ଼ନ ସୃଷ୍ଟି କଲା, ତାହା ଥିଲା ସମ୍ପୂର୍ଣ୍ଣ ଅଭାବନୀୟ । କବି କଳ୍ପନାରେ ଯୌବନର ଏହି ଆଗମନର ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର ହୋଇଅଛି—

"ଆସିଲା ଯୌବନ ଦିନେ । ସେ ଦିନ ସହସା
ଚମକିଲି ନିଜେ ଦେଖି 'ନିଜେ ମୁଁ ସଜନି !
ଚମକଇ ଯଥା ମେଘ ଆଦ୍ୟ ଆଷାଢ଼ରେ
ନିଜ ଅଙ୍ଗେ ଦେଖି ଶମ୍ପା କନକ-ନର୍ତ୍ତନ !
ପୂଜାର ନୈବେଦ୍ୟରୂପେ ପୀନ ପୟୋଧର
ଭରସେ ଉଠିଲା ସଖି ! ଯତନେ ସାଇତି
ରଖିବାକୁ, ସେ ଅବାଧ-ମୁକ୍ତ ଅଞ୍ଚଳକୁ
ଆଣିଲି ଟାଣି ମୁଁ ବକ୍ଷେ, ଅଙ୍ଗେ ଅଙ୍ଗେ ମୋର
ଗୋପନେ ଫିଟିଲା ଝଙ୍କା, ପ୍ରତି ପ୍ରଭାତରେ
ବଢ଼ିଲା ମୋ ଶିଖ-ଶୋଭା, ନିଶାନ୍ତ ଶିଶିରେ
ଅବଗାହି ପୁଷ୍ପକାନ୍ତ ବଢ଼ିଥାଏ ଯଥା ।
ତରଳ-ଚଞ୍ଚଳ ଦୃଷ୍ଟି ହୋଇଲା ବିନୀତ
ଉଚ୍ଛ୍ୱାସ-ଶଙ୍ଖର ସୃଷ୍ଟି ହେଲା କ୍ରମେ କ୍ରମେ
ଅତି ଗୁରୁ, ଅଧରରେ କିଶୋରୀ କନ୍ୟାର
ସେ ସରଳ-ବାଗ୍ମିତା ମିଶିଗଲା କାହିଁ ।"

ବ୍ରହ୍ମଜ୍ଞ ବ୍ରତର ଅନୁରୋଧରେ ଋଷି ସେହି କିଶୋର ସହିତ ନିଜର କନ୍ୟାକୁ ଆଉ ମିଶିବାକୁ ଅନୁମତି ଦେଲେ ନାହିଁ । ହୃଦୟ ଏ ବିଧିବନ୍ଧନର ଅର୍ଥ ଅବା କଣ ବୁଝେ ! ଦୁଇଟି ପ୍ରାଣ ମିଳିଯିବା ପାଇଁ ସତତ ବ୍ୟାକୁଳ ଥିଲେ ସିନା, ତାପସୀ-ଜୀବନର କଠୋରତା ମଧ୍ୟରେ ଅନେକ ପରିବର୍ତ୍ତନ ହୋଇଗଲା । ଅନୁଶୋଚନାର ଏହି ରାଗିଣୀ ହୁଏତ କ୍ରମେ କ୍ରମେ ନୀରବ ହୋଇ ଯାଇଥାଆନ୍ତା, ମାତ୍ର ଅତର୍କିତ ଭାବରେ ପୁଣି ଏକ ତୋଫାନର ସୃଷ୍ଟି ହୁଏ । ସେତେବେଳେ ଗୋଦାବରୀର ଉପବନରେ ରାମଚନ୍ଦ୍ର ଭ୍ରାତା ଓ ପତ୍ନୀଙ୍କ ସହିତ ଉପସ୍ଥିତ ହୁଅନ୍ତି । ସେଠାରେ

ଶ୍ରୀରାମଙ୍କର ବନବିହାର ବେଶ, ପ୍ରଶାନ୍ତ-ବଦନ-ବିମ୍ବ, ସୁକୁଞ୍ଚିତ ଜଟା, ବଲ୍କଳ ପରିଧାନ ଦେଖି ସୂର୍ପଣଖାର ହୃଦୟରେ ପ୍ରଥମ ପ୍ରଣୟୀ କିଶୋରର ରୂପ ନାଚି ଉଠିଲା । ସେ ପୁନର୍ବାର ପାଗଳିନୀ ହେଲା ପ୍ରଣୟର ସାଧନା ପାଇଁ । ତାର ଧାରଣା ଥିଲା କ୍ଷତ୍ରିୟ କୁଳରେ ବହୁଦାର ପ୍ରଥା ପ୍ରଚଳିତ ଅଛି । ତେଣୁ ରାମଚନ୍ଦ୍ର ତାକୁ ଗ୍ରହଣ କରି ପ୍ରଣୟତୃଷ୍ଣା ମେଣ୍ଟାଇ ପାରିବେ । ମାତ୍ର ରାମଙ୍କଠାରୁ ସେ ଯେତେବେଳେ ରାମଙ୍କର ଏକପତ୍ନୀବ୍ରତର ଦୃଢ଼ତା ଜାଣିବାକୁ ପାଇଲା, ସେତେବେଳେ ସେ ହେଲା ଉଦ୍‌ଭ୍ରାନ୍ତ । ଋଷିକନ୍ୟା ହୋଇ ମଧ୍ୟ ସେ ରାକ୍ଷସିନୀ ପରି ଭ୍ରମିବାକୁ ଲାଗିଲା । ମନର ଏ କୋହ ମେଣ୍ଟିଲା ନାହିଁ । ଜୀବନରେ ବ୍ୟର୍ଥତାର କାହାଣୀକୁ ସମ୍ବଳ କରି ପରିହାସ ଓ ଉପହାସକୁ ବରଦାସ୍ତ କରିଛି ମାତ୍ର । ପ୍ରଣୟର ଇତିହାସରେ ଏପରି ଦୁଃଖିନୀ ଆଉ କିଏ ଅଛି ? ନାରୀଜନ୍ମ ପାଇଁ ସେ ବ୍ୟାକୁଳିତା ହୋଇଛି, ପ୍ରେମର ପ୍ରତିଦାନ ପାଇବା ପାଇଁ । ମାତ୍ର ବିନିମୟରେ ପାଇଛି କେବଳ ନିନ୍ଦା ଏବଂ ଅପଖ୍ୟାତି । ଏତେ ଧନଜନର ସଂସାରରେ ଲାଳିତା ପାଳିତା ହୋଇ ସୁଦ୍ଧା ସୂର୍ପଣଖା ସୁଖୀ ହୋଇ ପାରିଲା ନାହିଁ । କିନ୍ତୁ ଏଥିପାଇଁ ସେ ରାମଙ୍କୁ ନିନ୍ଦା କରି ନାହିଁ । ପ୍ରଣୟରାଜ୍ୟରେ ପ୍ରଣୟୀ ପାଇଁ ପ୍ରଣୟିନୀ ସବୁକିଛି ସହ୍ୟ କରିପାରେ । ସୀତାଙ୍କ ପାଇଁ ତାର କୌଣସି ଅନୁଶୋଚନା ଅଥବା ଈର୍ଷା ମଧ୍ୟ ନାହିଁ । ନାରୀହୃଦ ବନ୍ଧ କେବେ ସେ କଳ୍ପନା କରି ନ ପାରେ । କିନ୍ତୁ ସୂର୍ପଣଖାର ପ୍ରଣୟ ସାଧନାର ତୁଳନା ନାହିଁ । ଘରଦ୍ୱାର ସବୁ ଧ୍ୱଂସ କରି ସେ ନିରୁଦ୍ଦେଶ୍ୟ ଯାତ୍ରା କରିଅଛି । କିଶୋରମଣି ଏବଂ ଶ୍ରୀରାମଙ୍କର ଦୁଇଟି ପ୍ରତିମା ନିର୍ମାଣ କରି ସେ ଆଜୀବନ ସେମାନଙ୍କୁ ପୂଜା କରି ବୁଲିଛି । ଏହି ପ୍ରେମ-ପାଗଳିନୀ ପ୍ରୀତି-ସୋହାଗିନୀର ସର୍ବଶେଷ ମିନତି ଅତ୍ୟନ୍ତ କାରୁଣ୍ୟଭରା । ସଖୀମାନଙ୍କ ଉଦ୍ଦେଶ୍ୟରେ ସେ ଶେଷ କଥା କହିଦେଇ ଯାଇଛି—

"କହିବ ଜଗତେ—'ଥିଲେ ରାବଣ ଭଗିନୀ
ବିପୁଳ ବିଭବ ସଙ୍ଗି, ଗୋଇଠା ପ୍ରହାରି
ରାଜଭୋଗେ ଧନରତ୍ନେ ; ପ୍ରୀତି-ଭିକାରିଣୀ
ହେଲା ସେହୁ ଅବଶେଷେ ପ୍ରେମ-ପୂଜା ପାଇଁ
ଅରଣ୍ୟବାସିନୀ ଭଦ୍ରା'—ଶୁଣୁ ତା ଜଗତ
ବୁଝି ଜନା ଥରେ ଖାଲି ପ୍ରେମ ହିଁ ସଂସାରେ
ସବୁଠାରୁ ବଡ଼ ବସ୍ତୁ !"

## ପ୍ରେମାନୁଭୂତି ଓ ପ୍ରେମ ଦର୍ଶନ

ଆଦ୍ୟ ଯୌବନରେ କବି ପ୍ରେମ-ଦର୍ଶନର ଯେଉଁ ଆଲେଖ୍ୟ ଏହି 'ଉପେକ୍ଷିତା' ମାଧ୍ୟମରେ ଚିତ୍ରଣ କରିଛନ୍ତି ତାହା ପରେ ତାଙ୍କର ସମଗ୍ର କାବ୍ୟ ସଂସାରକୁ ସମୃଦ୍ଧ ଏବଂ ବିକଶିତ କରିଅଛି । ତାହାଙ୍କୁ ଅନେକ ଦେହବାଦୀ କବି ବୋଲି ଆକ୍ଷେପ କରିଥାଆନ୍ତି ।

ମାତ୍ର ଦେହର ସାନ୍ନିଧ ଲଭ ନ କଲେ ହୃଦୟର ବନ୍ଧନମଯ୍ଯ ଅସମ୍ଭବ ନୁହେଁ କି ? ହୃଏତ ପ୍ରଣୟର ସାଧନାରେ ଶରୀରର ସମ୍ଭୋଗ ଉପଲକ୍ଷ ମାତ୍ର, ମାତ୍ର ପ୍ରେମାନୁଭୂତର ଚରିତାର୍ଥତା ପାଇଁ ତାହା ପ୍ରଧାନ ମାଧ୍ୟମ ହୋଇ ରହେ ନାହିଁ । କବି ମାନସିଂହଙ୍କର ଯେ କୌଣସି କାବ୍ୟ ଆଲୋଚନା କଲେ ଏହା ପ୍ରମାଣିତ ହୋଇପାରିବ । ସେହି କାବ୍ୟର ଉଦ୍‌ବୋଧନ ବସ୍ତୁବାଦୀ ହେଉ ବା ବ୍ୟକ୍ତିବାଦୀ ହେଉ, ମାନସିଂହଙ୍କ କାବ୍ୟ କବିତାର ସର୍ବତ୍ର ଏକ ଅପୂର୍ବ ସୂକ୍ଷ୍ମ ପ୍ରେମାନୁଭୂତର ଆବେଦନ ରହିଅଛି । କେବଳ ଇହଲୋକରେ ନୁହେ, ପରଲୋକରେ ମଧ୍ୟ ସେ ପ୍ରିୟା ସହିତ ମିଳିତ ହୋଇ ଚରମ ସୁଖ ଲଭ କରିବେ ବୋଲି ଆଶା ପୋଷଣ କରିଛନ୍ତି ।

ଏ କ୍ଷେତ୍ରରେ 'ମିଳନପଥ' କବିତାଟି ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ବିଦଗ୍ଧ-ଚନ୍ଦ୍ରାମଣିର ରାଧା କୃଷ୍ଣଙ୍କ ଗତିପଥରେ ଆପଣାର ଶବକୁ ପୋଡ଼ିବା ପାଇଁ ସଖୀମାନଙ୍କୁ ପ୍ରାର୍ଥନା କରିଥିଲେ । ମାନସିଂହ ଭାବିଛନ୍ତି—

"ଯେ ପଥେ ପ୍ରିୟେ ଆସୁଥିଲେ ମୋ ପାଶେ
ଏ ଦେହ ମିଶିଯାଉ ସେ ପଥ ଘାସେ ।
ଆଉ ତ ଆସିବାର, ରହିବା ଅଭିସାର
ସେ ପଥେ ଯୋଗ ନାହିଁ ମଧୁର-ରାସେ
ଏ ଦେହ ମିଶୁ ତେବେ ସେ ପଥ ଘାସେ ।"

( ପ୍ରେମଶହ୍ୟ )

ପ୍ରଣୟ ରାଜ୍ୟରେ ପ୍ରଣୟୀ ପ୍ରେୟସୀ ଦୁଃସାହସ କରନ୍ତି । ସମାଜର ଲୋକ-ନିନ୍ଦାକୁ ବରଦାସ୍ତ କଲେ ମିଳନ ପଥରେ ଅଗ୍ରସର ହେବା ସମ୍ଭବ ନୁହେ । ବରଂ ଜୀବନଟାଯାକ ମିଳନର ଦାବି ସହ୍ୟ କରି ମୁଦ୍ଧା ସେମାନେ କୁଣ୍ଠସଙ୍କୋଚରେ ମିଳନ ପଥର ଅଧିକାରୀ ହୋଇଥାଅନ୍ତି । ପାପପୁଣ୍ୟର ଭେଦାଭେଦ ସେମାନଙ୍କ ନିକଟରେ ନିରର୍ଥକ । ସେଠାରେ ପ୍ରିୟା କେବଳ ଜାଣେ "ପ୍ରିୟ ଲଗି ତାର ଲୁହ ଦେବାର ।" ସେହିପରି ପ୍ରିୟ ମଧ୍ୟ ଗୋଟିଏ କଥା ବୁଝେ—

"ନ କହ ପୁରୁଣା ପୋଥି ଏଥେ କିବା କହିଲ
ମୋ ନୟନେ ସେ ତ ପରମ ପୂଜ୍ୟ ମହିଳା ।"

ପାପଡ ପ୍ରେମ)

କବି କିନ୍ତୁ ସ୍ୱାର୍ଥାନ୍ଧ ପ୍ରଣୟ ବ୍ୟାପାରକୁ ନିନ୍ଦା କରିଛନ୍ତି । ଯେଉଁ ପ୍ରଣୟରେ ଅଭିଳାଷ ଏବଂ ପ୍ରତିଦାନର ଆକାଙ୍‌କ୍ଷା ରହେ, ସେଠାରେ କବିଙ୍କର ଆତ୍ମା ପୀଡ଼ିତ ଏବଂ ମର୍ମାହତ । ସେ କେବଳ ଦୁଇଟି ଆତ୍ମାର ମିଳନ ଖୋଜିଛନ୍ତି ।

"କବି ଆତ୍ମା ଖୋଜେ ଆଜି ସେହି ସେ ପ୍ରଣୟ
ନାହିଁ ଯହିଁ ବିପଣୀର ପଣ୍ୟ ବିନିମୟ ।"

( ଅକ୍ଷତ )

ଏହି ଆଦର୍ଶର ଭୂମିକା ଉପରେ ତାଙ୍କର ଶ୍ରେଷ୍ଠ କାବ୍ୟ କମଳାୟନର ରୂପାୟନ । କର୍ମମୟ କର୍ମକ୍ଲାନ୍ତ ଜୀବନର ସଂଗ୍ରାମ ଥିଲେ ଥିଲେ ମନୁଷ୍ୟକୁ ବିଚଳିତ କଲେ ହେଁ ସେଠାରେ ପ୍ରଣୟୀ ପ୍ରଣୟିନୀ ଆନ୍ତରିକ ଭାବରେ ଚାହିଁଛନ୍ତି—

"ଏକ ଏବେ ଚାହେଁ ଆନ, ଅଚ୍ଛିନ୍ନ ସନ୍ନିଧି
ଏକ ଚାହେଁ ଆରେକର ହୃଦୟ ପରିଧି

ଉଭୟେ ଚାହାଁନ୍ତି ଅଧିକାର ଉଭୟର
ଶୁଣିବାକୁ ତମେ ମୋର, ଏକାନ୍ତ ମୋହର ।"

ଏହି ପ୍ରଣୟରେ ସ୍ୱପ୍ନାଲୋକର ଉଦ୍ଦାମ ବାସନା ନାହିଁ, ସମ୍ଭୋଗର ଉଚ୍ଛ୍ୱାସ ସେଠାରେ ବିଚଳିତ କରୁ ନାହିଁ, ଅଥବା ଦାନ ପ୍ରତିଦାନର ସ୍ୱାର୍ଥାନ୍ଧ କଳ୍ପନା ମଧ୍ୟରେ ଜୀବନ ବିଚଳିତ ହେଉ ନାହିଁ । ପ୍ରଣୟର ସାର୍ଥକ-ସାଧନା ପାଇଁ ଆତ୍ମତ୍ୟାଗର ଉଜ୍ଜ୍ୱଳ ମହିମା ଲୋଡ଼ିବାକୁ ହୁଏ । ଏହି ମୃତକଳ୍ପ ଧରଣୀରେ ଅମୃତର ସଞ୍ଚାର ହୁଏ କେବଳ ପ୍ରେମାନୁଭୂତିର ଆଗମନୀରେ । ସେତେବେଳେ ସଂସାରର ଝଡ଼ଝଞ୍ଜା, ଅଶ୍ରୁ-ଅନୁଶୋଚନା ଅବଲୀଳାକ୍ରମେ ଦୂର ହୋଇଯାଏ । ଲବଣ୍ୟବତୀର ବାସକସଜ୍ଜା ଗୃହରେ କାବ୍ୟ ନାୟିକା ପ୍ରେମ ଲୋଡ଼ି ନାହିଁ କମ୍ବା ନାୟକ ତାଙ୍କର ଅଭିସାରିକାର ମିଳନ ପାଇଁ ବ୍ୟାକୁଳ ହେଉ ନାହିଁ । ଏହି ତେଲ ଲୁଣର ସଂସାରରେ ପ୍ରେମର ତପସ୍ୟା ସାଧନା କରିବାକୁ ହେବ । ସେଠାରେ ପ୍ରେମିକ ପ୍ରେମିକା—

"ଚାଲିବା ସରଣୀ ଖୋଜି, ଏ ସଂସାର ଭିଡ଼େ
ଜୀବନ ସଂଗ୍ରାମ କାଟି, ମିଥ୍ୟା ବ୍ୟଭିଚାର
ଦାରିଦ୍ର୍ୟ ଲାଞ୍ଛନା ଦୁଃଖ ଦୈନ୍ୟ ଅବିଚାର
ସମସ୍ତ ଜିଣିବା ଆତ୍ମା ଆତ୍ମାରେ ମିଶାଇ
ଦୁର୍ଦ୍ଦିନ କାଟିବା ପରସ୍ପର ମୁଖ ଚାହିଁ ।"

( ଜୀବନ ପଥ )

ସେମାନେ କେବଳ ଚାହାଁନ୍ତି ପ୍ରେମସ୍ଥାନ ଏ ସଂସାରରେ ପ୍ରଣୟ ବିତରଣ କରି ଧନ୍ୟ ମଣିବେ । ଜୀବନ ସଂଗ୍ରାମର ରକ୍ତାପ୍ଲୁତ ଜୀବନପଥରେ ତାଙ୍କର ପ୍ରଣୟସାଧନା ମହୀୟାନ ହୋଇଅଛି । ସେହି ପ୍ରଣୟର ସର୍ବଶ୍ରେଷ୍ଠ ଆଦର୍ଶ ହେଲା—

"ପ୍ରେମ ନୁହେଁ ଦେହ—ଦେହଁ ଭୋଗ ଅନ୍ୱେଷଣ
ପ୍ରେମ, ଏକ ଆତ୍ମା ପ୍ରତି ଅନ୍ୟର ବନ୍ଧନ
ପ୍ରେମ, ପୂର୍ଣ୍ଣ ସମର୍ପଣ ଏକ ଅନ୍ୟ ପାଇଁ
ପ୍ରେମ, ଆନ ପାଇଁ ଦେବା ନିଜକୁ ହଜାଇ ।
ନୈରାଶ୍ୟ, କଷଣ, ଅଶ୍ରୁ, ସାଥୀ ପ୍ରଣୟର
ପ୍ରେମିକ ପ୍ରେମିକା ପୋଛେ ଅଶ୍ରୁ ଅନ୍ୟୋନ୍ୟର ।"

( କମଳାୟନ )

ଆମେ ଦେଖୁଁ ଯେ, ମାନସିଂହଙ୍କ ତରୁଣ ଜୀବନର କବି ପ୍ରତିଭା ଦୁଇଟି ଦିଗରେ ବିଶେଷ ଭାବରେ ପ୍ରବାହିତ । ଗୋଟିଏ ଦେଶାତ୍ମବୋଧ ଏବଂ ଅନ୍ୟଟି ପ୍ରଣୟାନୁଭୂତି । ତରୁଣ ଜୀବନରେ କବିପୁରୁଷର ଅଭ୍ୟୁଦୟ କାଳରେ ଏହି ଦ୍ୱୈତ ରୁଚିବୋଧର ପରିଚୟ ମିଳିଥିଲା । 'କମଳାୟନ', 'ମାଟିବାଣୀ' ପ୍ରଭୃତି ଅଧ୍ୟୟନ କଲେ ତାଙ୍କର ଗଭୀର ଜାତୀୟତାପ୍ରୀତି ଅନୁଭୂତ ହୁଏ । ସେଠାରେ ପ୍ରେମରୂପା ପୃଥିବୀର ଦୁଃଖୀ ଦରିଦ୍ରଙ୍କୁ ମଧ୍ୟ ସେ ଭଲପାଇ ବସିଛନ୍ତି । ସର୍ବଦା ସେ ଆଲୋକର ସନ୍ଧାନୀ ଭାବରେ ହିଁ ଦଣ୍ଡାୟମାନ । ଦୁଃଖୀ ପାଇଁ ଅଶ୍ରୁ ଢାଳି ସେ ଭଗବାନଙ୍କ ବିରୁଦ୍ଧରେ ମଧ୍ୟ ବିଦ୍ରୋହ କରିଛନ୍ତି । ଧରଣୀ ବକ୍ଷରେ ସଇତାନର ଖେଳ ବନ୍ଦ କରିବାକୁ ସେ ଦେଇଛନ୍ତି ଆହ୍ୱାନ । ପରିବାରକୁ ଭଲ ପାଇବାକୁ ଯାଇଁ ବିଶ୍ୱତୋମୁଖୀ ଅନୁଚିନ୍ତାରେ ସେ ତନ୍ମୟ ହୋଇପଡ଼ିଛନ୍ତି । ତାଙ୍କର ଏକାନ୍ତ କାମନା—

'ଜଗାଇବ ଦେବତାରେ ମାନବ-ମରମେ ।"



# ନିସର୍ଗର ଉଦ୍‌ଗାତା ମାନସିଂହ

ଅଧ୍ୟାପକ ଶ୍ରୀ ଦାଶରଥି ଦାସ

ମାନସିଂହଙ୍କ ବିପୁଳ କାବ୍ୟ ସୃଷ୍ଟି ଭିତରେ ଜଗତ, ଜୀବନ ଓ ରୂପର ପ୍ରବଳ ଆକର୍ଷଣ ଅନସ୍ୟୁତ-ଲକ୍ଷ୍ୟ । ତାଙ୍କର ଅନେକ କବିତା ସମ୍ଭାନରେ ହିଁ, ଆମ ପାରିପାର୍ଶ୍ୱିକ ସମାଜ ଓ ଜୀବନରେ ଯାହା କିଛି ଅଶୁଭ ଓ ଅନୁଦାର, ନିଷ୍ଠୁର ଓ କୁତ୍ସିତ, ତଥା କ୍ଷୁଦ୍ର ଓ ଇତର, ସେସବୁ ବିରୁଦ୍ଧରେ ତାଙ୍କର ଘୋର ବିଦ୍ରୋହ । ରୂପ ଓ ସୌନ୍ଦର୍ଯ୍ୟର ଶତ୍ରୁ ହିଁ ତାଙ୍କର ଶତ୍ରୁ । ସୌନ୍ଦର୍ଯ୍ୟ-ମୋହ ତାଙ୍କୁ କରିଛି କୁତ୍ସିତତା ପ୍ରତି ବିଦ୍ୱିଷ୍ଟ ଏବଂ ସୌନ୍ଦର୍ଯ୍ୟର ସନ୍ଧାନ ହିଁ ତାଙ୍କର କବିତାରେ ଘଟାଇଛି ମହତ୍ତ୍ୱ କଳ୍ପନା ଓ ରୋମାଣ୍ଟିକ ସ୍ୱପ୍ନର ସଞ୍ଚାର । ତାଙ୍କ ସୌନ୍ଦର୍ଯ୍ୟବୋଧ କିନ୍ତୁ ସର୍ବଦା ସତ୍ୟ, ଆନନ୍ଦ ଓ ମଙ୍ଗଳର ନିୟନ୍ତ୍ରଣାଧୀନ । ଜଡ଼ର ଲାବଣ୍ୟ ମଧ୍ୟରେ ଆତ୍ମାର ଜ୍ୟୋତି ବିକିରଣ ସମ୍ଭବ ହୋଇଥାଏ ବୋଲି କବି ସର୍ବଦା ସଚେତନ । ତେଣୁ ଅନୁଭୂତିର ପ୍ରଗାଢ଼ତା ସହିତ ତାଙ୍କର କବିତାରେ ଅନେକତ୍ର ହିଁ ଶବ୍ଦ-ଯୋଜନା ଓ ଛନ୍ଦ ପ୍ରବାହର ଚମତ୍କାର ସହଯୋଗିତା ଆପେ ଆପେ ଘଟିଯାଇଛି । ତାଙ୍କର ଅନେକ କବିତା ରୂପ ଦେବତାର ବେଦୀପାଦମୂଳେ ବିମୁଗ୍ଧ କବିଙ୍କର ପ୍ରାଣପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଛଡ଼ା ଆଉ କିଛି ନୁହେଁ ।

ମାନସିଂହଙ୍କ କାବ୍ୟ ବିଚାର ବେଳେ ଅନ୍ନଦା ଶଙ୍କର ରାୟଙ୍କର ଗୋଟିଏ କବିତା ମନେ ପଡ଼ିଯାଏ । ସେ ରଚନା କରିଛନ୍ତି—

"ରହୁକ ଆମାର କାବ୍ୟେ, ବାଲାର୍କମୟୂଖଛଟା, ଶତବର୍ଣ୍ଣ ମେଘ,
ବିହଙ୍ଗେର ଗୀତିମୁକ୍ତି, ବନସ୍ପତି ପରମାୟୁ, ମୃତ୍ତିକାର ରସ
ଶିଶୁଦେର ସ୍ୱଚ୍ଛଳତା, ଶିଶୁର ଶୁଚିତା, ପଶୁଦେର ନିରୁଦ୍‌ବେଗ
ସର୍ବଶେଷେ ଶର୍ବରର ପ୍ରଶାନ୍ତ ଅମ୍ବର ତଳେ ନାସ୍ତିକ ପରଶ ।"

ମାନସିଂହଙ୍କ "ଧୂପ"—ପୂର୍ବବର୍ତ୍ତୀ କବିତାବଳୀରେ ଉପରୋକ୍ତ ପ୍ରାର୍ଥନାର ବିପୁଳ ସିଦ୍ଧି, ଯେ କେହି ପାଠକ ସହଜରେ ଉପଲବ୍ଧି କରି ପାରିବେ । କେବଳ ସର୍ବଶେଷେ ନୁହେଁ; ସର୍ବପ୍ରଥମରୁ ହିଁ ମାନସିଂହ-କାବ୍ୟ-ଉପବନକୁ ଫୁଲ୍ଲ ପରି

ନାରୀ ସ୍ପର୍ଶ ଛୁଇଁ ଛୁଇଁ ସ୍ନିଗ୍ଧ-ସରସ କରି ଚାଲିଛି । ଶୁଭ୍ରତା ଏବଂ ସୌନ୍ଦର୍ଯ୍ୟର ଆକର୍ଷଣ ଦେଇ ହିଁ କବି ସ୍ନେହ, ଆନ୍ତରିକତା ଓ ପ୍ରାଣର ମାଧୁରୀ ଢାଳି ନିସର୍ଗ ପ୍ରତି ଉଚ୍ଛ୍ୱସିତ ଉପାସନା ଚାଲିଛନ୍ତି ।

ଓଡ଼ିଆ ସାହିତ୍ୟର ନିସର୍ଗ-କବିତାରେ ପ୍ରକୃତିର ଜୀବନ୍ତ ଓ ସ୍ୱତନ୍ତ୍ର ସତ୍ତା ପ୍ରଥମେ ସ୍ୱୀକାର କରନ୍ତି ରାଧାନାଥ । ତାଙ୍କର କାବ୍ୟମାନଙ୍କରେ ଶୋଭାଧିଷ୍ଠାନ ଭୂମି ଉତ୍କଳ-ପ୍ରକୃତି ରୂପରସରଙ୍ଗ ଘେନି ନିଜର ବ୍ୟକ୍ତିତ୍ୱ ଛଟାରେ ଓଡ଼ିଆ କାବ୍ୟ-ଜଗତକୁ ପ୍ରଥମେ ସମୁଜ୍ଜ୍ୱଳ କରେ । ସ୍ୱଦେଶପ୍ରେମିକ ହୋଇ ମଧ୍ୟ କବି ମାନସିଂହ, କିନ୍ତୁ ରାଧାନାଥଙ୍କ ପରି ଠିକ୍ ଆଞ୍ଚଳିକ ଉତ୍କଳୀ ପ୍ରକୃତିର ପୂଜା କରିବାକୁ ଯାଇ ନାହାନ୍ତି । ସେ ଦେଶ-କାଳ-ସ୍ଥାନ ଭାବରେ ନରନାରୀର ବହିରଙ୍ଗ ଓ ଅନ୍ତରଙ୍ଗ ସୌନ୍ଦର୍ଯ୍ୟରେ ଯେପରି ମୁଗ୍ଧ, ସେହିପରି ସେ ମୁଗ୍ଧ ପ୍ରକୃତିର ବିବିଧ ଶ୍ୟାମ-କାନ୍ତି ପ୍ରକାଶରେ ତାଙ୍କର 'ଦକ୍ଷିଣାପ୍ରତି' ବା 'ପ୍ରାବୃଟ ସମ୍ଭାଷଣ' କୌଣସି ବିଶେଷ ଭୌଗୋଳିକ ସୀମାରେ ଆବଦ୍ଧ ନୁହେଁ । ସେସବୁ ଗୋଟିଏ ଦେଶକାଳ-ସଙ୍କୀର୍ଣ୍ଣତାରୁ ଊର୍ଦ୍ଧ୍ୱସ୍ଥ, ଅମଳ-ସରଳ-କବିପ୍ରାଣର ସାର୍ବଭୌମ ପ୍ରକୃତି-ସୁନ୍ଦରୀ ପ୍ରତି ପ୍ରାଣର ସାମଗାନ ଛଡ଼ା ଆଉ କିଛି ନୁହେଁ । ପ୍ରକୃତିର ସଂସାରରେ ମନୁଷ୍ୟକୃତ ମାନଚିତ୍ରର ବଙ୍କା ଟଙ୍କା ସୀମାରେଖା କୌଣସିଠାରେ ନାହିଁ । ପ୍ରକୃତି କେଉଁଠି ମହାନଦୀକୁ ମଧ୍ୟପ୍ରଦେଶ ଓ ଓଡ଼ିଶା ଭିତରେ ବନ୍ଧ ପକାଇ ବାନ୍ଧି ଦେଇନି । ତେଣୁ ମାନସିଂହଙ୍କ "ମହାନଦୀରେ ଜ୍ୟୋସ୍ନାବିହାର" କେବଳ ଉତ୍କଳୀୟ ଆଞ୍ଚଳିକବିଶେଷତାର ବନ୍ଦାପନା ବୋଲି କହି ହେବନି । ତାହା 'ଦକ୍ଷିଣା ପ୍ରତି' ବା 'ବର୍ଷା ସନ୍ଧ୍ୟା' ପରି ନିଛକ ପ୍ରକୃତି ବନ୍ଦାପନା । ସେମାନଙ୍କର ଓଡ଼ିଶୀତ୍ୱ ଏକାନ୍ତ ଆକସ୍ମିକ । ପୁଣି କେବଳ ବିକଟ ଓଡ଼ିଶୀ ପ୍ରେମ ଘେନି କେହି 'ମହାନଦୀରେ ଜ୍ୟୋସ୍ନାବିହାର' ସୃଷ୍ଟି କରିବାର ଉଦ୍ଭଟ କଳ୍ପନା ଯେପରି ନ କରନ୍ତୁ । ମନେ ରଖିବାକୁ ହେବ ଯେ, ଏ କବିତା ଅପୂର୍ବ କଳା-ସିଦ୍ଧି-ସମ୍ପନ୍ନ ହୋଇପାରିବାର ଏକମାତ୍ର କାରଣ ହେଉଛି, ଏଠି ଅପୂର୍ବ ପ୍ରାକୃତିକ ସୁଷମା ସହ ଦୁର୍ଲ୍ଲଭ ମିଳନ ଘଟିଛି ଏକ ତରୁଣ, ସରସ, ରୂପବୁଭୁକ୍ଷୁ, ସୂକ୍ଷ୍ମଦୃଷ୍ଟିବନ୍ତ ପ୍ରତିଭାର— ଯେପରି କି, ଶତବର୍ଷ ତଳେ ଘଟିଥିଲା ଚିଲିକା ଓ ରାଧାନାଥଙ୍କ ଭିତରେ । ଚିଲିକାର ରାଧାନାଥୀ-ବନ୍ଦାପନାରେ ଉତ୍କଳ ଓ ଓଡ଼ିଆ ଜାତି ଗୌଣ । ମୁଖ୍ୟ ହେଉଛି, ନିସର୍ଗ ମୁଗ୍ଧ ଏକ କବିପ୍ରାଣର ଉଚ୍ଛ୍ୱସିତ ରଙ୍ଗ ରଚନା । ସେହି ଦୃଶ୍ୟ ମଧ୍ୟ ଆମେ ଦେଖିବାକୁ ପାଉ ମାନସିଂହଙ୍କ 'ମହାନଦୀରେ ଜ୍ୟୋସ୍ନାବିହାର'ରେ ।

ଓଡ଼ିଆ ସାହିତ୍ୟରେ ଜ୍ୟୋସ୍ନାରଜନୀର ଶୋଭା ବର୍ଣ୍ଣନାର ଅଭାବ ନ ଥିଲା । ଅଭାବ ଥିଲା, କେବଳ ଏପରି ଏକ କବିଙ୍କର ଜ୍ୟୋସ୍ନା-ଧୌତ ମହାନଦୀର ଏପରି ପ୍ରାଣମୟ ମୁଗ୍ଧ ଅନୁଭବ । ଆମର ଅନେକ କବି, ଜ୍ୟୋସ୍ନା ରାତିର ଚନ୍ଦ୍ର, ଚକୋର, କୁମୁଦ ଓ ଜ୍ୟୋସ୍ନା ଇତ୍ୟାଦି ସ୍ଥୂଳଲକ୍ଷଣଗୁଡ଼ିକୁ ବାଛି ଦେଇ ହିଁ କବିତା ଶେଷ

କରିଛନ୍ତି । ବେଶି କିଛି ହେଲେ 'କୁସୁମବନ୍ତୀବ୍ରତତି, ଅଦୃଷ୍ଟରଜାର ଗୀତ, ମୋତିହାର-ବନୀମାନେ ଚନ୍ଦ୍ରାଙ୍କୁ ପାଇ'—ପରି ଅଳଙ୍କାର ଶାସ୍ତ୍ରୀୟ କିଛି ରୂଢ଼ିର ରୋମନ୍ଥନ । ପଦେ ପଦେ, କନ୍ଦର୍ପର ଦର୍ପ ଅତିଶଯ୍ୟ, କିନ୍ତୁ ମହାନଦୀର ଉଦାର ଜଳପ୍ରବାହ ଉପରେ ଶୁଭ୍ରରଜନୀର ରୂପ-ସୃଷ୍ଟି ଯେପରି ଦେଖିଛନ୍ତି, କବି ମାନସିଂହ, ସେଠାରେ ଆମେ ଦେଖିବା ଯେ, ସେ ସେହି ରୂପର ବୁକୁତଳେ ଯେଉଁ ଅଶ୍ରୁତ ସଙ୍ଗୀତର ଢେଉ ଖେଳୁଥିଲା, ତାହା ସେ ମନର କାନପାତି ଶୁଣିପାରିଛନ୍ତି ଏବଂ ସେହି ରାତିର ଭାବ-ବିହ୍ୱଳତା, କବି ହୃଦୟର ସବୁ ଅନୁଭୂତି ଓ ଭାବାବେଗକୁ ଛୁଇଁ ଛୁଇଁ ଯାଇଛି, ଠିକ୍ ଯେପରି ଅସ୍ତସୂର୍ଯ୍ୟର ରକ୍ତାଭ ବର୍ଣ୍ଣାଭାସ, ତରୁଶୀର୍ଷ, ଗିରିଶ୍ରେଣୀ ଓ ସାଗର ବକ୍ଷକୁ ଛୁଇଁ ଛୁଇଁ ଯାଇଥାଏ । ସୂର୍ଯ୍ୟ ଆକାଶରେ ପ୍ରତ୍ୟକ୍ଷତଃ ନ ଥାନ୍ତି; ଅଥଚ ଥାଏ ତାଙ୍କର କରସ୍ପର୍ଶର ରଙ୍ଗ ଓ ରୋମାଞ୍ଚ । ପ୍ରକୃତିର ଶୁଭ୍ରରୂପ ଅନ୍ତରାଳରେ ଥାଇ ରାତିର ସୁନ୍ଦର-ଭାବବୋଧ କବିଙ୍କ ହୃଦୟବୃତ୍ତିକୁ ନିଜର ରଙ୍ଗ ଓ ମାଧୁର୍ଯ୍ୟରେ ଅନୁରଞ୍ଜିତ କରି ଦେଇଛି । ରୂପରୁ ଭାବ ଓ ସଙ୍ଗୀତ ଝରି ଝରି ପଡ଼ୁଛି । ସେଣୁ ଭାବ, ଛନ୍ଦ ଓ ସଙ୍ଗୀତର ତ୍ରିବେଣୀ ସଙ୍ଗମରେ 'ମହାନଦୀରେ ଜ୍ୟୋତ୍ସ୍ନାବିହାର' କବିତାଟି ଝଳଝଳ ହୋଇଉଠିଛି । ଧବଳ ରାତିର ଶୀତଳତାରେ ହିଁ ଦୀର୍ଘ କବିତାଟି ଆମୂଳାନ୍ତ ଲଳିତମଧୁର । ମଧୁର ପ୍ରକୃତି ଜ୍ୟୋତ୍ସ୍ନାସ୍ପର୍ଶରେ ମଧୁରତର । ଜଳ, ସ୍ଥଳ, ଅନ୍ତରୀକ୍ଷ ବ୍ୟାପିଛି ଖାଲି ରୂପ ଓ ସୌନ୍ଦର୍ଯ୍ୟର ରାଗରଙ୍ଗ । ସେ ସବୁକୁ ଭାଷାନ୍ତର କରି ବୁଝାଇ ହେବ ନାହିଁ । କେବଳ ଆଖି ଓ କାନ ଦେଇ ସେହି ଛନ୍ଦ, ସଙ୍ଗୀତ ବୁଝିବାକୁ ହେବ ।

ଧବଳ ଉତ୍ତରୀ ସମ ରଜନୀବଧୂର
ଜ୍ୟୋଛନା ବ୍ୟାପିଛି ଦୂର ଦିଗଚକ୍ର ଲାଗି,
ତଳେ ତାର ଏ ଧରଣୀ ପ୍ରକୃତି-ମଧୁର
ହୋଇଛି ମଧୁରତର ତା ପରଶେ ଜାଗି ।
ଆକାଶର ଖଣ୍ଡ ସମ ମହାନଦୀ ବାରି
ଚନ୍ଦ୍ରିକା ଚୁମ୍ବନ ପାଇ ଧବଳ-ଚପଳ
ତରଳ ମୁକୁର ଅବା ଦେଇଛି କେ ଧରି
ଦେଖିବେ ବଦନ, ନଭ-ସୀମନ୍ତିନୀ ଦଳ
ଦୁଇ କୂଳେ ବୃକ୍ଷରେଖା ଜ୍ୟୋଛନା ଧଉତ
ପାଣ୍ଡୁର ଆଲୋକ ଧରି ତନ୍ଦ୍ରାଳସ ଶିରୀ,
ସ୍ୱପ୍ନପୁରୀ କରେ ସୃଷ୍ଟି ! ଅଳସ ମରୁତ
ଜ୍ୟୋଛନା ମଦିରମତ୍ତ ବହେ ଥିରି ଥିରି ।

× × ×

ଉଠିଛୁ ଶିଂଶପାମାଳା ପଶ୍ଚାତୁଁ ଆକାଶ —
ସନ୍ୟାସିନୀ-ମୁଖ ସମ ପ୍ରଶାନ୍ତ ଧବଳ
ତା ତଳେ ରଜନୀବଧୂ ଚନ୍ଦ୍ରିକାର ବାସ
ଉଡ଼ାଇ, ଧରଣୀନରେ ପରଶେ ଉଜ୍ଜ୍ୱଳ ।

ଶେଷ ଶ୍ଲୋକଟିରେ ଦୁଇଟି ଚିତ୍ରକଳ୍ପ—ସନ୍ନ୍ୟାସିନୀ ମୁଖ ଓ ମୁଗ୍ଧବଧୂବାସ । ଗତ ପବିତ୍ର, ସୁନ୍ଦର, ପ୍ରଶାନ୍ତ ଓ ଉଜ୍ଜ୍ୱଳ । ଚାହିଁଦେଲେ ପ୍ରାଣ ଶୀତଳ ହୋଇ ଉଠେ । ଅଥଚ, ମୁଗ୍ଧବଧୂର ଅଙ୍ଗବାସ ସ୍ପର୍ଶ କିଛି କମ୍ ଉତ୍ତାପ ଓ ଉତ୍ତେଜନା ଆଣେ ନାହିଁ । ରଜନୀର ସେହି ଉତ୍ତାପ ଓ ଉତ୍ତେଜନାକୁ ଖର୍ବ ନ କରି କରୁଛି ସଂଯତ ଓ ମଧୁର । ଏଠାରେ ଦୁଇଟି ଚିତ୍ରକଳ୍ପର ଶାନ୍ତ ଓ ସୌନ୍ଦର୍ଯ୍ୟାନୁଭୂତି ବଡ଼ ଉପଭୋଗ୍ୟ ।

କବିତାଟିର ପରବର୍ତ୍ତୀ ଅଂଶରେ କବି ଚିତ୍ତ ଦେଶକାଳରେ ଦୁଃଖ-ବିହ୍ୱଳିତ ହୋଇ ପଡ଼ିଛି, ଠିକ୍ ସ୍ୱାଧୀନାର୍ଥୀଙ୍କ ଠାଣିରେ । ମୌନ ଉତ୍କଳ-ପ୍ରକୃତି ଓ ମୌନ ଉତ୍କଳ-ଇତିହାସ, ଜ୍ୟୋତ୍ସ୍ନାର ଯାଦୁ-ସ୍ପର୍ଶରେ ଯେମିତି ଯୁଗଯୁଗର ଅଭିମାନ ତେଜି, ମୁହୂର୍ତ୍ତିକେ ଯେପରି ବାକ୍‌ବିହ୍ୱଳ ହୋଇ ଉଠିଛନ୍ତି । ଦେଶପ୍ରେମୀ କବି ମହାନଦୀ ସହିତ ସେମାନଙ୍କର ନିବିଡ଼ ସମ୍ପର୍କ ହେତୁ ଉତ୍କଳର ଇତିହାସକୁ ଦେଇଛନ୍ତି ପ୍ରାଣେ ଆଲିଙ୍ଗନ, ନେତ୍ରର ଅଶ୍ରୁ ଓ କଳ୍ପନାର ଶୁଭ ଆଶୀର୍ବାଦ । ପ୍ରକୃତିଠାରୁ ପ୍ରାଣର ନିବିଡ଼ ବନ୍ଧନ ତୁଟାଇ, ଅନ୍ଧକାରକୁ ଫେରିବାର ଆଶଙ୍କାରେ କବି ପ୍ରକୃତରେ କାନ୍ଦି ପକାଇଛନ୍ତି । 'ଫେରିବା କହୁଛ ବନ୍ଧୁ ! ପୁଣି ଅନ୍ଧକାରରେ ?' ଶୋକାର୍ତ୍ତି ଏହି ଶ୍ଲୋକଟି ଭଗବତି ବାଣୀ ପରି ଓଡ଼ିଆଙ୍କ ମୁଖେ ମୁଖେ ଥାଇ ଝୁଲୁଛି । ବିସ୍ତୃତ ଧରଣୀ, ନୀରବ ନିସ୍ତବ୍ଧ । ଶାନ୍ତ ମହାନଦୀ ଜଳ କ୍ଳାନ୍ତ ଶିଶୁ ସମ ଶାନ୍ତ, ଉଜ୍ଜ୍ୱଳ ରଜନୀ ପକ୍ଷପାତି ଆବରିଛି ନଭଜଳସ୍ଥଳ । ଅଥଚ କବିଙ୍କୁ ଫେରିବାକୁ ହେବ ପୁଣି ଅନ୍ଧକାର ଭିତରକୁ ! କବିଙ୍କ ପାଇଁ ଏହାଠାରୁ ବଳି ଅଭିଶାପ କାହିଁ ? ମା' କୋଳରୁ ଶିଶୁକୁ ଛଡ଼ାଇ ନେଲାବେଳେ ତା ପ୍ରାଣରେ ଯେଉଁ ବ୍ୟଥା ଜାଗେ, ଠିକ୍ ସେହି ବ୍ୟଥା, କବି ପ୍ରାଣକୁ ମନ୍ଥନ କରିଛି । ଫେରିବେ ସେ—ଇଚ୍ଛା କି ଆକାଙ୍କ୍ଷା ତାଙ୍କୁ କିଛି ସାହାଯ୍ୟ କରିପାରୁ ନାହିଁ । ସେହି ଉଦାର-ବିପୁଳ ଶୋଭାରେ ବିମୁଗ୍ଧ କବି ପ୍ରାଣେ ପ୍ରାଣେ ଅନୁଭବ ମଧ୍ୟ କରୁଛନ୍ତି ଅନନ୍ତଭୂମାର ପବିତ୍ର ସ୍ପର୍ଶ । କାରଣ ଯେଉଁଠି ସୌନ୍ଦର୍ଯ୍ୟ, ସେହିଠାରେ ହିଁ ସତ୍ୟ ଓ ଶିବର ଅଧିଷ୍ଠାନ । ପ୍ରକୃତିର ରୂପଲୀଳା, ଇତିହାସର ସ୍ୱପ୍ନ-ସଞ୍ଚାର ଓ ଅନନ୍ତଭୂମାର ସ୍ପର୍ଶରାଗ—ଏ ସମସ୍ତ ଏକତ୍ରିତ ହୋଇ ଜ୍ୟୋତ୍ସ୍ନାର ସେ ମହାବୈଚିତ୍ର୍ୟ କବିଙ୍କୁ କୋଳକୁ ଟେକି ନେଇଛନ୍ତି । ପଛକୁ ଅ'ଟେ ଟାଣୁଛି ଅନ୍ଧକାର । ସେ ନିର୍ଭୟରେ ଅନ୍ଧକାରକୁ ଉପେକ୍ଷା କରି ଅନ୍ତରରେ କିନ୍ତୁ ସୁନ୍ଦରର ସ୍ୱପ୍ନ ପୋଷଣ କରିଛନ୍ତି—

"ଇଚ୍ଛା ମୋ, ହୁଅନ୍ତା ଏହି ନିର୍ମଳା ରଜନୀ
ଅସୀମ, ମୁଁ ଖୋଜୁଥାନ୍ତି ସତ୍ୟ ଶୁଭ ଯାରେ
ଏ ସୁନ୍ଦର ଜ୍ୟୋତ୍ସ୍ନାତଳେ, ବାହି ଏ ତରଣୀ
ମୁଁ ଯାଏ, ନ ଫେରି ସେ ମହାଅନ୍ଧକାରେ ।"

ସୁନ୍ଦର ପ୍ରକୃତି କବିଙ୍କୁ ସୁନ୍ଦରର ପ୍ରେରଣା ଯୋଗାଇଛି । ସାରା ଜୀବନ ସେ ଧର୍ମ, ସମାଜ ଓ ସାହିତ୍ୟ କ୍ଷେତ୍ରରେ ସତ୍ୟ ଓ ଶୁଭତାର ଅନ୍ୱେଷଣ ଜାରି ରଖିଛନ୍ତି । ଅନେକେ ମହାନଦୀରେ ଜ୍ୟୋତ୍ସ୍ନାବିହାର କରି କବି ମାନସିଂହଙ୍କର ସେହି ଜ୍ୟୋତ୍ସ୍ନା ରାତିଟିକୁ ଖୋଜିଥାନ୍ତି । ଶିଳାଗୃହବାସୀଏ ରାତିକ ପାଇଁ ହେଲେ ବି ଲେଉଟନ୍ତି, ଜନନୀ ଉତ୍କଳର ରୂପଲୀଳା, ମଞ୍ଜୁଳ ମହାନଦୀ ପୁରେ । ପ୍ରତ୍ୟେକ ପାଠକର ପ୍ରାଣରେ ଗଭୀର ରୂପ-ଏଷଣା ଜଗାଇଥାଏ, ଏହି ବର୍ଣ୍ଣନା କବିତାଟି । ତାହା ବିସ୍ମୃତ ହେବାର ନୁହେଁ ।

ପ୍ରକୃତିର କୋମଳମଧୁର ଭୂମିକା ଭାବିବାକୁ ଗଲେ ରାଧାନାଥଙ୍କ ପରେ ମାନସିଂହଙ୍କ ରଚନାବଳୀରେ ପ୍ରକୃତି ଯେପରି ବହୁଭାବରେ ପ୍ରତିବିମ୍ବିତ ସେପରି ଆଉ କାହାର ରଚନାରେ ଦେଖାଯାଏ ନାହିଁ । ରାଧାନାଥଙ୍କ ପ୍ରକୃତି ପୁଣି ତାଙ୍କର ଆଞ୍ଚଳିକ କାବ୍ୟକାହାଣୀମାନଙ୍କରେ ପଟ୍ଟଭୂମି ମାତ୍ର । କିନ୍ତୁ ମାନସିଂହଙ୍କ କାବ୍ୟପୁରୁଷ ସ୍ୱୟଂ ପ୍ରକୃତି ପାଇଁ ହିଁ ପ୍ରକୃତିର ବନ୍ଦନାରେ ବିଭୋର । ସେ ଶରତ, ବସନ୍ତ, ଗ୍ରୀଷ୍ମ ପ୍ରଭୃତି ଋତୁସମ୍ଭାର ଏବଂ ଜ୍ୟୋତ୍ସ୍ନା ଓ ଦକ୍ଷିଣାବାୟୁ ସହିତ ବିଶେଷ ଭାବରେ ଉନ୍ମାଦିତ ହେବାର ଆମେ ଦେଖୁଁ, ପ୍ରକୃତିର ଗ୍ରାମ ମନୋହର ପ୍ରକାଶରେ । ଫଳତଃ ଆମେ ଆଧୁନିକ ଓଡ଼ିଆ ସାହିତ୍ୟରେ କେବଳ ତାଙ୍କରି ରଚନାରେ ହିଁ ବାରମ୍ବାର ଭେଟୁ, ଘୋର-ଅନ୍ଧକାରବୃତ, ଧାରାବର୍ଷଣମୁଖର, ପ୍ରଭଞ୍ଜନାକୁଳିତ ବର୍ଷାରାତିର ବର୍ଣ୍ଣନା—

ଘନଘୋର ଗିରିବଣ ନଶୀଥ,
ଅମ୍ବର ଆସାରେ ପୁର, ବିଲ, ବନ ବ୍ୟଥିତ,
ଅଣରୁଣ ବହେ ଘୋର ବତାସି,
ଆକାଶରେ ନାହିଁ ତାରା, କାଳିମ-ବିକଟ ଧରା
ଝଡ଼େ ଜୀବ ହୋଇଉଠେ ହତାଶୀ ।

କଳକଳ ଛଳଛଳ ବରଷାର ସଲିଳ
ବହିଯାଏ ଧାରେ ଧାରେ ଖାଇ ପଥ ଗଭୀର,
ତାଳଗଛ ଦୋଳେ ଝଡ଼େ ପବନେ
ଘରଆଡ଼େ ସାଇଁ ସାଇଁ ଜନପ୍ରାଣୀ କେହି ନାହିଁ
ଦୁଆର ଆଉଜା, ଦୃଢ଼ ଭବନେ ।

ଝଞ୍ଜା-ବାତାସ୍ୱନ ଥରେ ବତାସିର ଦମକେ
ବିଜୁଳି ଝଲକେ ଜାଗଉଠ ବୁକୁ ଚମକେ
ଫୁଟେଁ ଉଠ ଆକାଶର ଦାନବେ,
ଘଡ଼ଘଡ଼ି ଚଡ଼ଚଡ଼ି ଘଡ଼ିକେ ଘଡ଼ିକେ ଉଡ଼ି
ଭରଇ ଗଣ ଭବନ ଘୋର ଆରବେ ।

( ଶ୍ରାବଣ ଅଭିସାର )

ଅଥବା

ଅମ୍ବୁଦାମୃତ ଅମ୍ବରାଙ୍ଗନ
ଲୁପ୍ତ ତାରକ ଯାମିନୀ,
ସଘନ ବରଷଣ ବଜ୍ର ରଣରଣ
ନୃତ୍ୟ-ଚଞ୍ଚଳ ଦାମିନୀ ।
ଭେକ ମୁଖରିତ ନିଖିଳ ପ୍ରାନ୍ତର
ବିଶ୍ୱ ଘନରସପ୍ଲାବିତ,
ଥରଇ କାନନ ଝରଇ ଶ୍ରାବଣ,
ମାର୍ଗ ଭରି ହ୍ରଦଧାବିତ ।
ଇନ୍ଦ୍ର ଦିଗ୍‌ଗଜ ତ୍ରସ୍ତ ବ୍ୟାକୁଳ
ପବନ ବହଇ ବତାସିଆ,
ଏ ଘନ ରଜନୀ କିପରି ବଞ୍ଚଇ
ତରଳବୁକୁ ପରବାସିଆ ।

( ଘନଶବଂଶ )

ଏବଂ ସେହିପରି ଜଳଧିବେଳାବିହାରୀ କବିଙ୍କ ରଚନାରେ ଅମେ ଦୁର୍ଦ୍ଧର୍ଷ, ଦୁର୍ବାର ବାରିଧିର ଯେପରି ବର୍ଣ୍ଣନା ସବୁ ପାଉ ତାହା ମଧ୍ୟ ସମଗ୍ର ଉତ୍କଳ ସାହିତ୍ୟରେ ଅନନ୍ୟ । 'କ୍ଷେମା' କାବ୍ୟର ଏହି ପ୍ରଥମ କେତୋଟି ପଦ ପାଠକେ ଦେଖନ୍ତୁ—

"ଦକ୍ଷିଣ ସମୁଦ୍ର ତୀରେ ଗୁଡ଼ିଙ୍କ ଯେ ବାଲିରେ
ବାଧାମାନେ ଉଡ଼ିଯାଏ ବେଳା ବିଚରି,
କ୍ଷୀଣାଙ୍ଗୀ ହରିଣଗଣ ଖାଇ ସଇକତ ତୃଣ
ତୃଆନ୍ତ ଉତ୍ସାହେ ବାଲି ମନ୍ଥନ କରି ।
ବାଲିବନ୍ତେ କଇଁସି ଲତା
କରେ ଥାନେ ଥାନେ ମରୁ ଶ୍ୟାମଳ-ସଜ୍ଜା ।
ଦେଖିଲେ ଠିଆ ବାଲିବନ୍ତେ କୂଳରୁ ଦୂରଦିଗନ୍ତେ
ଲସିଉଠେ ଯହିଁ ନୀଳ ବାରି-ବଳୟ

ରଜତ ଝୁମ୍ପା ସମାନ                ଫେନବୃନ୍ତ ଊର୍ମିମାନ
ଝୁଙ୍କି ବେଳା କରୁଥାନ୍ତି କୁସୁମସ୍ତ ।
ଉଚ୍ଚ ଊର୍ଦ୍ଧ୍ୱେ ବିହଗଗଣ
ନୀଳ ବ୍ୟୋମେ କରୁଥାନ୍ତି ମାଳା-ରଚନ ।
ବିସ୍ତୃତ ବାରିଧି ରହି,                ଅନନ୍ତ ଅମ୍ବରେ ଗ୍ରହି
ବେଳା-ଲକ୍ଷ୍ମୀ ଓଷ୍ଠେ ହସେ ଫେନିଳ ହାସ୍ୟ
ତପନ-ତାରକା ତଳେ                ମହାକାଳ ପଟ ଘରେ
ଜଳର ତାଣ୍ଡବ, ଜଳବାଳାଙ୍କ ଲାସ୍ୟ ।
ଲଗିଥିବା ଅନବସରେ
ତାଳଦିଏ ପ୍ରଭଞ୍ଜନ ପ୍ରମତ୍ତ କରେ ।
ଅନାଦି କାଳରୁ ଗରଜ                ଫେନ ପୁଷ୍ପ ମାଳେ ସାଜ
ଯୁଗ ଯୁଗ ଧରି ସିନ୍ଧୁ କରେ ତାଣ୍ଡବ
ଊର୍ଦ୍ଧ୍ୱେ ରହି ମହାକାଶ                ନିତ୍ୟ ନବ ନବ ବେଶ
ମଉନେ ଦେଖୁଛି ହେନ୍ତ ନୃତ୍ୟଉତ୍ସବ ।
ମହାଦ୍ରଷ୍ଟା, ମହାନଟର
ଶେଷହୀନ ନୃତ୍ୟ-ବେଗେ ବେଳା ମୁଖର ।

ଅବଶ୍ୟ ସ୍ୱାଭାବିକ ଭାବରେ ଚନ୍ଦ୍ର ରଜନୀ କବିଙ୍କର ପ୍ରିୟ । ଚନ୍ଦ୍ରସ୍ୟାବୃତ ଜ୍ୟୋତ୍ସ୍ନାଲୋକ ସତ୍ୟ ଓ ଶିବର ସନ୍ଧାନ ଦିଏ । ପ୍ରାଣର ଅକୁହା କଥା ଜ୍ୟୋତ୍ସ୍ନାତଳେ କହି ହୋଇଥାଏ । ବନଭୂମିର ତରୁପତ୍ରଭେଦ କରି ପଡ଼ୁଥିବା ସ୍ୱର୍ଗର ଆଶୀର୍ବାଦ ପରି ରେଖା ଶୁଭ୍ର କୋମଳ ଜ୍ୟୋତ୍ସ୍ନା, ତାକୁ ଓଢ଼ିଆ ଖଣ୍ଡାର ଫେମରେ ବାନ୍ଧି, ଚିରକାଳ ପାଇଁ ସାଇତି ରଖିଯାଇଛନ୍ତି କେବଳ ମାନସିଂହ । 'ପୂଜାରିଣୀ'ରେ ପ୍ରେମିକର ଭାଷା ଢାଳି ଦେଇ ଚୈତ୍ର ଜ୍ୟୋତ୍ସ୍ନାମଧୁର ରଜନୀଟିର ପରିଚର୍ଯ୍ୟା କରିଛନ୍ତି । ଷୋଳଶସ୍ତନା ଦ୍ୱିଜକନ୍ୟା ଲକ୍ଷ୍ମୀକୁ ଦେବତା ଉଜ୍ଜ୍ୱଳ ଜ୍ୟୋତ୍ସ୍ନା ରାତିରେ ଶୋଇବାକୁ ଦେଉ ନାହାନ୍ତି—

ମଧୁର ଏ ଜ୍ୟୋତ୍ସ୍ନାରାତି ଶୋଇକି ପଡ଼ିଲ,
ଆଗୋ ଲକ୍ଷ୍ମି, ଆଗୋ ଲକ୍ଷ୍ମି, ଚନ୍ଦ୍ରିକା ମୁଦିର
ଦେଖ ଏ ବଉଳ ବନ । ଆଲୋକ-ଅନ୍ଧାର
ଘନବନସ୍ପତି ମୂଳେ ରଚିତ ବିହାର
କରେ ଶ୍ୟାମ ଘାସ ପରେ । ମନ୍ଦ ସମୀରଣେ
କୋମଳ ବଉଳ ଗନ୍ଧ ଭ୍ରମେ ବନାଙ୍ଗନେ
ମତ୍ତ କରି ଇନ୍ଦ୍ରିୟରେ । ପ୍ରଫୁଲ୍ଲ ବଉଳ
ବୃନ୍ତ ଛେକି ଗଣି ଗଣି ଏ ବନ ବଧୂର

ବକ୍ଷପରେ ଝରୁଛନ୍ତି ଦେହ ବିସର୍ଜ୍ଜିନ
ଚେଣ୍ଡି ଦେଖ ବନତଳ କୁସୁମଅଚ୍ଛନ୍ନ ।
ଏଇ ପୁଣି ତୁମର ଏ ଶୁଭ୍ର ଭାଲପଟେ
ବୃନ୍ତଚ୍ୟୁତ ପୁଷ୍ପ ଏକ ! କାହା ଭାଗ୍ୟେ ଘଟେ
ଏ କୁସୁମ ପରି ଏଡ଼େ ମଧୁର ପତନ !
ନେଲି କାଢ଼ି ପୁଷ୍ପଟୋଟି । ମଦିରାକ୍ଷରଣ
ପିଚ୍ଛିଳ କରିଛୁ ଗଣ୍ଡେ ।............

କବି କେବଳ ଜୀବନ୍ତ ନାରୀପ୍ରତିମା ନୁହେଁ, କୋଣାର୍କର ପାଷାଣ ମୂର୍ତ୍ତିଗୁଡ଼ିକ ମଧ୍ୟ ଜ୍ୟୋତ୍ସ୍ନାସ୍ପର୍ଶରେ ଲାବଣ୍ୟାର୍ଦ୍ର ହୋଇଉଠିବାର କବି ଅନୁଭବ କରିଛନ୍ତି । ସରସ ଶୀତାଂଶୁ ସ୍ପର୍ଶତଳେ କବି କୋଣାର୍କର ପ୍ରକୃମୋହନ କଳା ଦେଖିଛନ୍ତି—ସାଗରରୁ ଜାତ ଜ୍ୟୋତ୍ସ୍ନା ଓ ରୂପସାଗରରୁ ସଂଜାତ କୋଣାର୍କ-ହୃଦୟ-ଜ୍ୟୋତ୍ସ୍ନା ସୁଠାମ ନାରୀ ମୂର୍ତ୍ତିଚୟ । ସେହିସବୁ ପାଷାଣୀ ଅହଲ୍ୟା, ପୂର୍ଣ୍ଣିମା ଚନ୍ଦ୍ରର ଅଭିରାମ ସ୍ପର୍ଶରେ ଜୀବନ୍ତ-ଚଞ୍ଚଳ ହୋଇଉଠିଛନ୍ତି । ନିର୍ଜ୍ଜନ ଶୂନ୍‌ଶାନ୍‌ ନିସ୍ତବ୍ଧ ପ୍ରହର । ପାଷାଣପୀଠ ତଳେ ଫୁଲ ହୋଇ ଫୁଟିଛି । ଲାବଣ୍ୟମୟୀଏ ଚାରୁପଦଭୂଷଣ ବଜାଇ ବଜାଇ କୋଣାର୍କ ବେଢ଼ାରେ ଖେଳି ବୁଲୁଛନ୍ତି । ଜ୍ୟୋତ୍ସ୍ନା ଦେଇଛି ତାଙ୍କୁ ଜୀବନ ଓ ଲାବଣ୍ୟ । କବି ଦେଇଛନ୍ତି କଳ୍ପନାର ଭାଷା ଓ ସଂଗୀତ । ସୃଷ୍ଟି ହୋଇଛି କୋଣାର୍କ ବେଢ଼ାର ରୂପଲୀଳା । ହାସ୍ୟ ଓ ଲାସ୍ୟର ସେହି ରସଲୀଳା କାହାକୁ ବା ମୁଗ୍ଧ ଚକିତ ଓ ନିର୍ବାକ ନ କରେ ? କବିଙ୍କର ଅସାଧାରଣ କଳ୍ପନାବିଳାସ କାଳଦନ୍ତ ଘାତ-ବିକ୍ଷତ ଶିଳ୍ପସମ୍ପଦକୁ ସଦ୍ୟ ସୁଷମାରେ ସମୁଦ୍ଭାସିତ କରିପକାଇଛି ।

ନିସର୍ଗପ୍ରେମୀ ମାନସିଂହଙ୍କର ସାଧାରଣ ସନ୍ଧ୍ୟା ଓ ସକାଳର ବର୍ଣ୍ଣନା ମଧ୍ୟ ସ୍ୱାଦ୍ୟ ଓ ମହନୀୟ । ତନ୍ମଧ୍ୟରୁ ମନେରଖିଲା ଭଳି ଛବିଟି ହେଉଛି 'ହେମଳାସ୍ୟନ'ର ଚିଲିକାତଟସ୍ଥ ଶୀତଶାନ୍ତ ହେମନ୍ତର ହେମ ଅପରାହ୍ଣର ଛବି । ସେହି ଛବିଟିରେ ମଧ୍ୟ ମିଶିଛି ତରୁଣ ପ୍ରାଣର ଭାବୋଚ୍ଛ୍ୱାସ । "ଦେଖୁଛନ୍ତି କମନୀୟ ତରୁଣ ତରୁଣୀ, ମୁଗ୍ଧନେତ୍ରେ ଶୋଭା ଏହି ସୁନ୍ଦରୀ ହ୍ରଦର ।" ରାଧାନାଥଙ୍କ ପରେ ଚିଲିକାର ରୂପ ଅଙ୍କି ଯଶସ୍ୱୀ ହେବା କୌଣସି କବିଙ୍କ ପକ୍ଷରେ ସେତେ ସହଜ କି ସୁସାଧ୍ୟ ନୁହେଁ । ତରୁଣ ପ୍ରାଣର ଉତ୍ତାପ ଓ ଉଚ୍ଛ୍ୱାସ ଦେଇ ମାନସିଂହ, କିନ୍ତୁ ଚିଲିକାର ସାନ୍ଧ୍ୟଲଗ୍ନ ଛବିଟି ମନୋଜ୍ଞ ଭାବରେ ଅଙ୍କିପାରିଛନ୍ତି । ଅସ୍ତତପନର ସ୍ୱର୍ଣ୍ଣାଂଶୁ—ପରିବ୍ୟାପ୍ତ ଚିଲିକାର ତଳେ ବକ୍ଷ ଓ ତଟଭୂମିର ଶୈଳଟଙ୍କ ବନ ।

ରବିର ଅଦୃଷ୍ଟ ହେମ-ରଥ ଚକ୍ରରାଜି
ଛୁଇଁଲେଣି ଆସି ଧୀରେ ଗୁଳ୍ମିତ ଶିଖରେ

ପ୍ରଲମ୍ବିତ ଶୈଳେର ଛାୟା । ଜଟିଆର ବନେ
ଆସିଲଣି ମାଡ଼ି ଢେଣେ ଧୂମ୍ର ସାଂଧ୍ୟ ଛାଇ;
ଦୁଥମ ବିଶ୍ରାମ ଲିପ୍ସୁ ବିହଙ୍ଗମ ଦଳ
ପକ୍ଷ ଛାଡ଼ି ବସିଲେଣି ଚଟେଇହୁଗାର
ଶ୍ୱେତଶାନ୍ତ ସ୍କନ୍ଧ ପରେ । ପକ୍ଷୀ ଦଳ ଦଳ
ଉଡ଼ି ଛନ୍ତି ମାଳାକାରେ, ଊର୍ଦ୍ଧ୍ୱରୁଣ୍ଡେ, ଅବା
ଜଳେ ଭାସି ସ୍ୱଂଧ୍ୱର କୋଳାହଳେ ପୂର୍ଣ୍ଣି
ସ୍ନେହ ବିକମ୍ପିତ ମାତୃବକ୍ଷେ ଚଲିକାର
ସନ୍ତରନ୍ତ ପରିପୂର୍ଣ୍ଣ ଜୀବନ ଆନନ୍ଦେ;
ତରଳ ସେ ନୀଳ ସ୍ତବେ କରେ ଚକଚକ
ରବି କରେ ନୀର-ଧୌତ ପତଙ୍ଗ ତାଙ୍କର । ଇତ୍ୟାଦି ।

ପ୍ରକୃତି-ସମ୍ପର୍କୀୟ ଅନ୍ୟାନ୍ୟ ବହୁ କବିତା ମଧ୍ୟରେ 'ଦକ୍ଷିଣାପ୍ରତି' ମଧ୍ୟ ଉଲ୍ଲେଖନୀୟ । ସେଠାରେ ମଧ୍ୟ ସେହି ତୁଷାର-ଧବଳ ଜ୍ୟୋତ୍ସ୍ନା ଆବରିଛି ଗଗନ ଧରଣୀ ବ୍ୟାପି । ଅନେକ ସୁଖସ୍ମୃତି କବିଙ୍କୁ ଆକୁଳ କରୁଛି । ଏମିତି ଏକ ବସନ୍ତ ରାତିରେ ଚନ୍ଦ୍ରାଲୋକରେ ସହକାର ଛାୟାତଳେ ବସିଥିଲେ କବି । କିନ୍ତୁ ସେ ନ ଥିଲେ ଏକାକୀ । ସେଦିନର ସୁଖସୌଭାଗ୍ୟ ଆଜି ସ୍ମୃତି ମାତ୍ର । ଝୁରୁଛି ଆଜି କବିପ୍ରାଣ । ପ୍ରାଣରେ ପ୍ରବଳ ଅନ୍ୱେଷଣ, ଅଥଚ ବାସ୍ତବ ଜଗତରେ ଅଶେଷ ବାଧା ଅନ୍ତରାୟ । ଦକ୍ଷିଣା ମରୁତ ତେବେ ସେ ଭାସିଯିବାକୁ ଚାହାନ୍ତି ଦୂର ଚକ୍ରବାଳ ଡେଇଁ ସୁଦୂର ପ୍ରବାସେ—ନୀଳସିନ୍ଧୁସ୍ପୃଷ୍ଟ ବେଳାପାରେ । ସେଠାରେ ଅଶୁଚି ବାସ୍ତବ ସ୍ପର୍ଶ କିଛି ନ ଥିବ । ଖେଳୁଥିବେ ସେଠି କେବଳ ସୁନ୍ଦରୀ ଜଳକନ୍ୟାମାନେ । କବିଙ୍କର ରୋମାଣ୍ଟିକ ସ୍ୱପ୍ନ ସାର୍ଥକ ହେବ ।

କିନ୍ତୁ କିପରି, ଏ ସ୍ୱପ୍ନପ୍ରୟାଣ ସମ୍ଭବ ହେବ ? ପ୍ରକୃତିର ସହାୟତା ବିନା ମଣିଷ ସଂସାରର ଜଞ୍ଜାଳରୁ ଆତ୍ମରକ୍ଷା କରିପାରିବ କି ? ବସନ୍ତର ମଳୟ ନିକଟରେ ଶ୍ରେଷ୍ଠ କବି ମାନସିଂହ ଆକୁଳ ନିବେଦନ ଜଣାଇଛନ୍ତି, ପାରିଲେ ସେ ତାଙ୍କୁ ଦେହ ଦେହର ସବୁ ବନ୍ଧନରୁ ମୁକ୍ତ ଦେଉ । ସେଲିଙ୍କ ପରି ସେ ସଂସାର ଓ ସମାଜ ବନ୍ଧନରେ କ୍ଷତବିକ୍ଷତ ଓ ଆହତ । "ଦାରୁଣ ଏ ଭାଗ୍ୟ ମୋର, ଇଚ୍ଛାମତେ ଚଳେନା ଜୀବନ ।" ଚାହାନ୍ତି ସେ ସର୍ବାନ୍ତଃକରଣରେ ତେଣୁ ନିର୍ଜଞ୍ଜାଳ ହେବେ, ହେବେ ଅତୀନ୍ଦ୍ରିୟ ସ୍ତରରେ ଭାବ ବିଭୋର । ସେଲି ଯେଉଁ ସ୍ୱରରେ ପଶ୍ଚିମା ପବନକୁ କହିଥିଲେ "On lift me a wave, a leaf, a cloud," ଠିକ୍ ସେହି ସ୍ୱରରେ କବି ଦକ୍ଷିଣାକୁ କହୁଛନ୍ତି,

ଭ୍ରମର ପରି ରେ ମୋହିତ କରି ସତେ ଜୀବ ଦେହ ସ୍ଥାନ
କ୍ଷୁଧା ମୋର ଯାଉ ଚାଲି, ନ ରହୁ ଏ ସୀମା ଶରୀରର

× × × ×

ଅଶରୀରୀ ହୋଇ ଥରେ ମିଶନ୍ତି କି ତବ ଦେହ ସାଥେ
ନ ଥାନ୍ତା ବାସନା କ୍ଷୁଧା, ନ ଥାନ୍ତା ଏ ଶୋଣିତରେ ପୀଡ଼ା
ଅତୀନ୍ଦ୍ରିୟ ହୋଇ ଏହି ସଂସାରରେ ଫିଙ୍ଗି ପଦାଘାତେ
ଭୋଗନ୍ତି ତୋ ସଙ୍ଗେ ମିଶି ଦେହସ୍ଥାନ ସୌନ୍ଦର୍ଯ୍ୟର କ୍ରୀଡ଼ା ।

ଇନ୍ଦ୍ରିୟର ମୁଗ୍‌ଧ କବି ଅତୀନ୍ଦ୍ରିୟ ହେବାକୁ ଚାହିଁଛନ୍ତି । ରୂପରୁ ଅରୂପକୁ ଯାତ୍ରା କରିବେ । ଏହି ଆକୁଳତା ମାନସିଂହଙ୍କ ପରବର୍ତ୍ତୀ କାବ୍ୟକବିତାରେ ଏକ ସ୍ଥିର ଭାବାବେଶ ରୂପେ ପ୍ରକାଶ ପାଇଛି । ପ୍ରଥମରୁ ସେ ପ୍ରକୃତିର ରୂପରସ ରଙ୍ଗଗନ୍ଧ ସ୍ପର୍ଶକୁ ସକଳ ଇନ୍ଦ୍ରିୟ ଦେଇ ଉପଭୋଗ କରିବାକୁ ଚାହିଁଛନ୍ତି । ପୃଥିବୀ, ସମାଜ, ରାଷ୍ଟ୍ର ତାଙ୍କୁ ବିଦ୍ୱିଷ୍ଟ କରିଛି । କିନ୍ତୁ ପ୍ରକୃତି ନୁହେଁ । କୃଷ୍ଣା କାବ୍ୟ ଗ୍ରନ୍ଥରେ ସେ ରୂପରୁ ଦୃଷ୍ଟି ଫେରାଇ ପ୍ରକୃତିର ରୂପୋତ୍ତର ଜଗତ ପ୍ରତି ଆକୃଷ୍ଟ ହୋଇଛନ୍ତି । 'ବିଭୁ ଓ ପ୍ରକୃତି' ଶୀର୍ଷକ ୫ଟି ସନେଟ୍ ଦେଇ ସେ ପୌଷ ସନ୍ଧ୍ୟା, ଫାଲ୍‌ଗୁନ ପ୍ରଭାତ, ବୈଶାଖ ତାପଦଗ୍‌ଧ ଦିବା, ପ୍ରାବୃଟ ଦୁର୍ଦ୍ଦିନ ଓ ଶରତ ପୂର୍ଣ୍ଣିମା—ପ୍ରକୃତିର ଏହି ପାଞ୍ଚୋଟି ସୁନ୍ଦର ଅବକାଶରେ କବି ବିଶ୍ୱ ରୂପକାର ଅନନ୍ତ ଭୂମାଙ୍କୁ ଭେଟିଛନ୍ତି ଓ ତାଙ୍କୁ ପ୍ରଣିପାତ କରିଛନ୍ତି । ପ୍ରକୃତି ହିଁ ଈଶ୍ୱରଙ୍କୁ ସ୍ମରଣ କରାଇଦିଏ । ଏହି ଉପନିଷଦୀୟ ଭାବବିହ୍ୱଳତାରେ ତାଙ୍କର ପ୍ରକୃତି-ତଦ୍‌ଗତତା ଭକ୍ତକବି ମଧୁସୂଦନଙ୍କ ସ୍ମୃତିପଥକୁ ଆଣେ । ମାନସିଂହଙ୍କ ତରୁଣ ପ୍ରାଣର ଉତ୍ତାପ କ୍ରମେ ଶାନ୍ତ ଶୀତଳ ହୋଇ ଏସବୁ କବିତାରେ ତାଙ୍କର କ୍ରମବିବର୍ତ୍ତିତ ଆଧ୍ୟାତ୍ମିକ ବିକାଶ ଫୁଟାଇଛନ୍ତି । ଆମର କୌଣସି ହେଲେ ପ୍ରାଚୀନ ବା ଆଧୁନିକ କବିର ସୃଷ୍ଟି ଭିତରେ ଆମେ ଏକ ଅନ୍ୱେଷଣଶୀଳ, ପରାପର ଅଭିଜ୍ଞତା ଦେଇ ସଦା-ପରିବର୍ତ୍ତିତ ଓ କ୍ରମ-ପ୍ରସାରିତ-ବିବର୍ଦ୍ଧିତ ମାନବାତ୍ମାର ପ୍ରତିମୂର୍ତ୍ତି ଆର୍ଟ-ଗାଲେରୀ ଭେଟୁନା, ଯେପରି ଭେଟୁ କେବଳ ମାନସିଂହଙ୍କ କାବ୍ୟ-ସୃଷ୍ଟିରେ । ଅର୍ଥାତ୍ ଉପେନ୍ଦ୍ର ବା ରାଧାନାଥ ଆଦ୍ୟେ ଯାହା ପ୍ରାନ୍ତେ ମଧ୍ୟ ସେହି । କିନ୍ତୁ "ସେଦିନର କବିତା" ଠାରୁ 'ସିନ୍ଧୁ ଓ ବିନ୍ଦୁ' ପର୍ଯ୍ୟନ୍ତ କବି ମାନସିଂହଙ୍କ ସରସ ଆତ୍ମାର ବିବିଧ-ବିଚିତ୍ର ଭୂମିକା ଓ ବାରମ୍ବାର ପଟ୍ଟ-ପରିବର୍ତ୍ତନ ଯେପରି କୌତୂହଳପ୍ରଦ, ସେହିପରି ଶିକ୍ଷଣୀୟ । ମାନସିଂହଙ୍କ ଲେଖନୀରେ ସାହିତ୍ୟ-ସାଧନା ଯଥାର୍ଥରେ ହୋଇ-ଉଠିଛି 'ସାହିତ୍ୟ', ଯେହେତୁ ଏହା ତାଙ୍କ ଜୀବନ 'ସହିତ' ଛାଇ ପରି ଅବିଚ୍ଛିନ୍ନ ଭାବରେ ଗତି କରି ଚାଲିଛି । ହୁଏତ ସମଗ୍ର ଓଡ଼ିଆ ସାହିତ୍ୟରେ, ମାନସିଂହଙ୍କ କ୍ରମ-ବିକଶିତ କାବ୍ୟ-ସାହିତ୍ୟ-ସୃଷ୍ଟି ହିଁ ତାଙ୍କର ରାଜଯୋଗ ଓ ଏକମାତ୍ର ଧର୍ମ-ସାଧନା । କୃଷ୍ଣାରେ ତେଣୁ ସେ ଯଥାର୍ଥରେ ହୁଏତ କହିଛନ୍ତି—

ମାତପଙ୍କ ଭେଦ ଯେସ୍ନେ ଉଠେ ସରସିଜ
ରବିକର ସ୍ପର୍ଶ ପାଇଁ, ମେଲାଇ ହୃଦୟ,
ଧରଣୀ ପରଶ ପାଇଁ ଯେସନେ ବାରିଦ
ଝର୍ମିଆସେ ଭୁଙ୍ଗ ନଭୁ ଉନ୍ମାଦନାମୟ;
ଜନନୀ, ସେପରି ମୋର ଅନ୍ତର କମଳ
ଉଦ୍‌ଗତ, ଉନ୍ମୁଖ ତବ କୃପା ଲୋଭ ପାଇଁ
ଚାହିଁ ମୋର ସେସ୍ନପରି ଭବ-ଛଳ-ଛଳ
ମିଶିବାକୁ ତବ ମହା-ଜୀବନର ଧାର ।

ପ୍ରିୟା ବିରହ-ବିଦଗ୍ଧ ତରୁଣ କବିଙ୍କର ଆଜି ଏ ପୁଣି କି ପଞ୍ଚରଭେଦୀ ବ୍ୟାକୁଳ ଅନ୍ୱେଷଣ ? ଏ ପୁଣି କେଉଁ ମହାମିଳନ ପାଇଁ ଦୁର୍ବାର ଅଭିସାର ? ଆମ ଆଖି ଆଗରେ ଏକ ଧର୍ମପଥଯାତ୍ରୀ ମାନବାତ୍ମାର ଜଡ଼ରୁ ଚେତନକୁ, ଜୀବରୁ ଶିବକୁ, ଆପାତ-ସତ୍ୟରୁ ପ୍ରକୃତ ତଥ୍ୟତାକୁ କ୍ରମିକ ଊର୍ଦ୍ଧ୍ୱଗତି ଶନୈ ସଙ୍କଳମେଶନ, କୌଣସି ହେଲେ ହେଁଡ଼ିଆ କବିଙ୍କ ରଚନାରେ ଭେଟୁ କି ? କବି କବିଙ୍କର ଏହି ବୃହତ୍ତ ଜୀବନ ଓ ପ୍ରକୃତି ଦେଇ ଅନ୍ତରାଳସ୍ଥ ବିଶ୍ୱବ୍ୟାପ୍ତ ଦୈବତ-ଚେତନାର ଅନ୍ୱେଷଣ ସ୍ୱତନ୍ତ୍ର ବିଗ୍ମର ଦାବୀ କରେ ନାହିଁ କି ?

# 'ମାନସିଂ ପ୍ରତିଭାର ଇନ୍ଦ୍ରଧନୁ'

**ଅଧ୍ୟାପକ ଚିନ୍ତାମଣି ବେହେରା**

"ବିଦେଶୀ ଭାବ ଲୋକକୁ ବିଦେଶୀ କରାଏ ନାହିଁ । ବିଦେଶୀ ବେଶହିଁ ଲୋକକୁ ଇତର କରି ପକାଏ । XX ଏ ଦେଶର ଯେ କଥା, ପୋଲଙ୍ଗ ଫୁଟି ଝଡ଼ିପଡ଼ୁଛି, ସେ ଖବର ନ ରଖି ଏମାନେ ଗ୍ରୀମେଲା, ଗୋଲାପ, ବେଲ୍‌ଫୁଲ୍‌, ହାସ୍ନା-ହେନାର ଗନ୍ଧ ଆଣି ଆମକୁ ଶୁଙ୍ଘାଇଲେ । ସାଧବ ଝିଅ ନଈରେ ଗାଧୋଇବା-ବେଳେ ଛିଣ୍ଡି ପଡ଼ିବା ବାରହାତ ଲମ୍ବ ବାଳକୁ ସୁନା ଫରୁଆରେ ପୂରାଇ ପାଣିରେ ଭସାଇ ଦେଇ ଅନାଇଁ ରହିଛି, ସେ ଦୃଶ୍ୟ କବିମାନେ ଦେଖି ପାରୁ ନାହାନ୍ତି; ସେମାନେ ସବୁଜ ପକ୍ଷୀ, ଆସ୍‌ମାନୀ ପକ୍ଷୀର ନୃତ୍ୟ ଆମକୁ ଦେଖାଉ ଅଛନ୍ତି ।"

—ପରଧର୍ମ—(ମାନସିଂହ)

ସବୁଜ ଯୁଗର ସୁନାମଧନ୍ୟ କବି ଅନ୍ନଦାଶଙ୍କର, ବୈକୁଣ୍ଠ ଓ କାଳିନ୍ଦୀଙ୍କ ପ୍ରତି ଏହାହିଁ ଥିଲା କବି ମାନସିଂହଙ୍କର ଚ୍ୟାଲେଞ୍ଜ୍ ବା ଅଭିଯୋଗ ଏବଂ ଏହାରି ମଧ୍ୟରେ ନିହିତ ଅଛି କବି ମାନସିଂହଙ୍କର କାବ୍ୟ କବିତାର ସ୍ୱକୀୟ ଦୃଷ୍ଟିଭଙ୍ଗୀ । ସବୁଜ ଯୁଗର କାବ୍ୟ କବିତାରେ ରୁଚି ଓ ଦୃଷ୍ଟିଭଙ୍ଗୀ ବିଦେଶାଗତ ଏବଂ ତାର ଶରୀରର ବହିରଙ୍ଗ ବେଶ ବିଦେଶୀୟ ପୋଷାକ ଓ ଫେସନର ମୋହ ସ୍ଥଳ-ବିଶେଷରେ ଯେ ପରିହାର କରି ପାରି ନ ଥିଲା, ଏଥିରେ ମଧ୍ୟ ସନ୍ଦେହର ସ୍ୱଳ୍ପ ଅବକାଶ ରହିଛି । ତେଣୁ ଓଡ଼ିଆ କାବ୍ୟ କବିତାର ପୋଷାକ ବା ଫେସନ ପ୍ରୀତି ଓ ବଙ୍ଗଳା ଛାଞ୍ଚ ଗ୍ରହଣକୁ କଟାକ୍ଷପାତ କରି କବି ମାନସିଂହ ଉପରୋକ୍ତ ମନ୍ତବ୍ୟଟି କହିଥିଲେ । କେବଳ ବାକ୍‌ମନ୍ତବ୍ୟ ନୁହେଁ, ତାଙ୍କ ସୃଷ୍ଟିର ସ୍ତରେ ସ୍ତରେ ଏହି ମନ୍ତବ୍ୟର ସାର୍ଥକ ପ୍ରାମାଣିକତା ବିଦ୍ୟମାନ । ଏ ଦେଶର କାନନଶିଳା ଓ ସିନ୍ଧୁ-ବେଳାର ସୈକତ ପ୍ରାନ୍ତରରେ ଯେଉଁ ଅଜସ୍ର କାବ୍ୟ ଆତ୍ମଗୋପନ କରି ରହିଛି, ସ୍ମୃତି-କାରୁଣ୍ୟଭରା ତାହାର ମଧୁର ଝଙ୍କାର ସବୁଜ ଯୁଗର କବିପ୍ରାଣକୁ ଆଲୋଡ଼ିତ କରିପାରି ନାହିଁ, କିମ୍ବା ତାର ପ୍ରାଣତନ୍ତ୍ରୀରେ ମଧୁମୟ ପ୍ରତିଧ୍ୱନି ତୋଳିନାହିଁ । ନିଜର ବ୍ୟକ୍ତି ସ୍ୱାତନ୍ତ୍ର୍ୟର ପରିଧି ମଧ୍ୟରେ ସବୁଜ ଯୁଗର କବି ଯେଉଁ ସ୍ୱପ୍ନ ଦେଖିଛି,

ତାହା ଓଡ଼ିଆ କବିର ସ୍ୱପ୍ନ ପରଂପରା ସହିତ ଅନେକ ପରିମାଣରେ ସମ୍ପର୍କହୀନ । ସମ୍ପର୍କହୀନ ବୋଲି ଯେ ତାର ଶିଳ୍ପ-ସୃଷ୍ଟି ଅସ୍ୱାଦ୍ୟ, ତାହା ନୁହେଁ; ବରଂ ଏ ଦେଶର ଶିଳ୍ପଭଙ୍ଗୀରେ ତାର ଦୃଷ୍ଟିକୋଣ ଏକ ନୂତନ ସଂଯୋଜନା—ଏକ ସ୍ୱତନ୍ତ୍ର ଆସନର ତାହା ଅଧିକାରୀ । କିନ୍ତୁ ଏ ଦେଶର ମୂକ ଶିଳାଖଣ୍ଡର ପ୍ରାଣ-ସ୍ୱପ୍ନ, ଏ ଦେଶର ଗୁଳ୍ମଲତାର ପ୍ରାଣବାର୍ତ୍ତା, ଏ ଦେଶ ମଣିଷର ଗୌରବମୟ ଇତିହାସର ଆଲେଖ୍ୟ, ଏ ଦେଶ ପ୍ରେମିକ-ପ୍ରେମିକାର ମିଳନ-ବିରହ-ଜନିତ ଶଙ୍କା, ସଂଶୟ ଓ ଅଶ୍ରୁଭରା ପ୍ରାଣସ୍ପନ୍ଦନ ଏବଂ କେବଳ ଏ ଦେଶର ନୁହେଁ, ସର୍ବଦେଶୀୟ ସର୍ବକାଳୀନ ଜଣେ ସାଧାରଣ ମଣିଷର ଅନୁଭୂତି ଓ ହୃଦୟାବେଗ କବି ମାନସିଂହଙ୍କ ସୃଷ୍ଟିରେ ଯେପରି ଲିପିବଦ୍ଧ, ସବୁଜ ଯୁଗର କାବ୍ୟ କବିତାରେ ତାର ପଟାନ୍ତର ଦୁର୍ଲଭ । ତେଣୁ କବି ମାନସିଂହଙ୍କ କାବ୍ୟ ଦରବାରରେ ଏ ଦେଶର ମଧ୍ୟଯୁଗୀୟ ଇତିହାସର ଗୌରବମୟ ଅତୀତ ପୁଣି ପୁନର୍ଜୀବିତ ହୋଇ ଉଠିଛି । ଏ ଦେଶର ସାଧବଝିଅର ଅଶ୍ରୁବେଦନା ଯାହାକି ଆକାଶ-ବତାସରେ ଭାସି ଭାସି ଶୂନ୍ୟ ମନରେ ନିଜ ରୂପ-ପ୍ରକାଶ ପାଇଁ ଶିଳ୍ପୀପ୍ରାଣରେ ଆସନ ଖୋଜି ବୁଲୁଥିଲି, ସେ ପୁଣି କବିପ୍ରାଣର ସହାନୁଭୂତି ପାଇ ମୂର୍ତ୍ତି ପରିଗ୍ରହ କରି ଆମ ସମ୍ମୁଖରେ ତାର ଅଶ୍ରୁ-ଅର୍ଘ୍ୟ ଧରି ଛିଡ଼ା ହୋଇଛି । ଏହି ସ୍ୱପ୍ନ, ସ୍ୱଦେଶିକତା ଓ ପ୍ରତିଭାର ମଧୁର ସମନ୍ୱୟର ସୌଭାଗ୍ୟ ଏକା କବି ମାନସିଂହଙ୍କର ଏବଂ 'କୋଣାର୍କ', 'ସାଧବଝିଅ' ଓ 'ଜେମା' ଗ୍ରନ୍ଥ ତିନୋଟି ସବୁଜ ଯୁଗର କାବ୍ୟ ପରଂପରା ପ୍ରତି ବୈପ୍ଳବିକ ପ୍ରତିବାଦ ଓ କବି-ପ୍ରତିଭାର ସ୍ୱକୀୟତାର ଅଭ୍ରାନ୍ତ ସାକ୍ଷୀ । କେବଳ ସେତିକି ନୁହେଁ, ନିଜ ଦେଶର ଗୌରବମୟ ପରଂପରା ଓ ଐତିହ୍ୟ ପ୍ରତି କବି ନିଜର ଶିଳ୍ପସୃଷ୍ଟିର ପ୍ରାକ୍‌କାଳରୁହିଁ ଆକୃଷ୍ଟ ହୋଇଥିବାର ଆମେ ଲକ୍ଷ୍ୟ କରୁଁ । ମ୍ୟାଟ୍ରିକ ଶ୍ରେଣୀର ଛାତ୍ର ଅବସ୍ଥାରେ କବିଙ୍କର 'ବାରୁଣୀ' ପତ୍ରିକାରେ ପ୍ରକାଶିତ 'ଜନ୍ମାଷ୍ଟମୀ' ଓ 'କୋଣାର୍କ' କବିତା ଏବଂ 'ସହକାର'ରେ ପ୍ରକାଶିତ 'ମା ଓଡ଼ିଶା' କବିତାଗୁଡ଼ିକ କବିଙ୍କର ଏହି ସ୍ୱଦେଶାନୁରାଗ ମିଶ୍ରିତ ସ୍ୱତନ୍ତ୍ର ଶିଳ୍ପଭଙ୍ଗୀର ପରିଚାୟକ । ଏହି ଶିଳ୍ପ ଓ ମନନଭଙ୍ଗୀର ପରବର୍ତ୍ତୀ ବିକାଶ ପୁଣି ଆମେ ଲକ୍ଷ୍ୟ କରୁଁ କଲେଜ ଜୀବନର ପ୍ରଥମ ବାର୍ଷିକ ଶ୍ରେଣୀରେ ଛାତ୍ର ଥିବା ସମୟରେ ଲିଖିତ କବିଙ୍କର 'ବାରବାଟୀ' କବିତା ଏବଂ ପରେ ସେହି କଲେଜ ଜୀବନରେ ଲିଖିତ ତାଙ୍କର 'ରାଜକବି' ନାଟିକା ଓ କବିତାମାନଙ୍କରେ । ବସ୍ତୁତଃ, ମାନସିଂହ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରୁଥିବା 'ହୃଦକାରିଣୀ', 'ରାଜକବି', 'ଉପେକ୍ଷିତା', 'ପୁଷ୍ପିତା' ପ୍ରଭୃତି ନାଟିକାଗୁଡ଼ିକ ଏବଂ 'ଧୂପ', 'ହେମଶସ୍ୟ'ର ସମସ୍ତ କବିତା ଓ ଅନ୍ୟାନ୍ୟ ବହୁ ପରିଚିତ ପ୍ରସିଦ୍ଧ କବିତାଗୁଡ଼ିକ ଏହି କଲେଜ ଜୀବନର ଛାତ୍ରାବସ୍ଥାରେ ଲିଖିତ । ସେହି ମ୍ୟାଟ୍ରିକ ଶ୍ରେଣୀର ଛାତ୍ର ଥାଇ କବି କୋଣାର୍କକୁ ଲକ୍ଷ୍ୟ କରି ଯେତେବେଳେ ଲେଖିଛନ୍ତି—

"ବାରଶତ କବି କଳ୍ପନାରେ
ଜଗତର ବୁଦ୍ଧି ଅଜଣାରେ
ଅଙ୍କିତ ରହସ୍ୟମୟ ଶଇଶବ ଯାପିତ ତୋହର,
ଯେ ଦିନ ଚକିତ ଦୃଷ୍ଟି ବିଶ୍ୱର ଗୋ ପଡ଼ିଲା ତୋ'ପରେ
ଯୌବନ ଲବଣ୍ୟ-ଲୀଳା ଖେଳୁଅଛୁ ଅଙ୍ଗେ ଅଙ୍ଗେ ତବ
ଫୁଟିଉଠେ ଦେହେ ସୁଲଳିତ ଅଙ୍ଗ-ସଉଷ୍ଠବ
ମନ୍ତ୍ର ଶିଖି ଆସିଥିଲ ମନ ଜୟେ ମନର ସେ ପାରେ
ବାରଶତ କବି କଳ୍ପନାରେ ।"

କିମ୍ବା ଯେତେବେଳେ ୧ମ ବାର୍ଷିକ ଶ୍ରେଣୀର ଛାତ୍ର ଥାଇ ବାରବାଟୀକୁ ଲକ୍ଷ୍ୟ କରି ଲେଖିଛନ୍ତି—

"ଯାଇଛୁ ବିଶାଳ ରାଜ୍ୟ, ମାନ, ସ୍ୱାଧୀନତା—
ରାଜନ୍ୟ ସମ୍ମାନ
ବୁଦ୍‌ବୁଦ ସମାନ
ସର୍ବଗ୍ରାସୀ ମହାକାଳ-ଲହରୀରେ ଭାସି;
ତୁମର ସ୍ମୃତିଟି ମାତ୍ର
ଏ ଜାତିର ଅନ୍ତରେ ଅନ୍ତରେ
ଏ ଦେଶର କୋଟିଏ କଣ୍ଠରେ
ରାହୁମୁକ୍ତ ଶଶିସମ କାଳଗର୍ଭୁ ଉଠଇ ପ୍ରକାଶି ।"

ସେତେବେଳେ ଯେ କେହି କାବ୍ୟପାଠକ ସହଜରେ ଅନୁମାନ କରି-ପାରିଥିବ, ଏହି ପ୍ରତିଭାର ଭବିଷ୍ୟତ କିପରି ଉଜ୍ଜ୍ୱଳ; ପ୍ରତିଶ୍ରୁତିରେ ମୁଖର ଏବଂ ଶିଶୁପ୍ରତିଭାର ଉଷାକାଳୀନ ସୌର-ରଶ୍ମି ତାର ମଧ୍ୟାହ୍ନ ଦୀପ୍ତିରେ କି ପ୍ରଖର, ତେଜୋମୟ ଓ ଗରିମାମୟ ନହେବ !

ଏଇ ସମସ୍ତ ପଂକ୍ତିଗୁଡ଼ିକ ମଧ୍ୟରେ ଆମର ପୁଣି ଆଜି ଲକ୍ଷ୍ୟ କରିବାର ଅଛି ବିଦେଶୀ ଭାବକୁ କବି ସ୍ୱ-ମାର୍ଗରେ ଅନୁସରଣ କରିଥିଲେହେଁ ବିଦେଶୀ ବେଶକୁ ନିଜ ଭାଷା-ପୋଷାକରେ ପ୍ରଶ୍ରୟ ସେ ଦେଇନାହାନ୍ତି; ବରଂ ବିଦେଶୀ ଭାବକୁ ଏ ଦେଶର ପାଠକର ରୁଚି-ଅନୁକୂଳ ଓ ରସମୟ କରି ପ୍ରକାଶ କରିଅଛନ୍ତି । କବିଗୁରୁ ରବୀନ୍ଦ୍ରନାଥଙ୍କର 'ଉର୍ବଶୀ' ବା 'ଶାଜାହାନ' କବିତାର କେତେକ ଭାବର ପ୍ରତିଧ୍ୱନି ଆମେ ଯଥାକ୍ରମେ 'କୋଣାର୍କ' ଓ 'ବାରବାଟୀ' କବିତାରେ ପାଇଥାଉଁ । କିନ୍ତୁ ସେ ଭାବର ପ୍ରତିଧ୍ୱନି ହୋଇ ଆଉ ରହିନାହିଁ—ସେ ହୋଇଉଠିଛି କବିଙ୍କ ସାଧନା ବୀଣାର ଏକ ସ୍ୱତନ୍ତ୍ର ଓ ନୂତନ ସ୍ୱର ।

"କୋନୋ କାଲେ ଛିଲେ ନାକ ମୁକୁଲିକା ବାଲିକା ବୟସୀ
ହେ ଅନନ୍ତଯୌବନା ଉର୍ବଶୀ !
ଆନ୍ଧାର ପାଥାର ତଲେ କାର ଘରେ ବସିଆ ଏକେଲା
ମାଣିକ-ମୁକୁତା ଲୟେ କରେଛିଲେ ଶୈଶବେର ଖେଲା
ମଣି-ଦୀପ ଦୀପ୍ତ କକ୍ଷେ ସମୁଦ୍ରେର କଲ୍ଲୋଲ ସଙ୍ଗୀତେ
ଅକଲଙ୍କ ହାସ୍ୟମୁଖେ ପ୍ରବାଲ ପାଲଙ୍କେ ଘୁମାଇତେ
କା'ର ଅଙ୍କଟିତେ,
ଯଖନି ଜାଗିଲେ ବିଶ୍ୱେ, ଯୌବନେ ଗଠିତା
ପୂର୍ଣ୍ଣ ପ୍ରସ୍ଫୁଟିତା ।" (ଉର୍ବଶୀ)

ବା

ଏ କଥା ଜାନିତେ ତୁମି ଭାରତ-ଈଶ୍ୱର ଶା-ଜାହାନ
କାଲସ୍ରୋତେ ଭେସେଯାୟ ଜୀବନ-ଯୌବନ ଧନ ମାନ
ଶୁଧୁ ତବ ଅନ୍ତର ବେଦନା
ଚିରନ୍ତନ ହୟେ ଥାକ୍, ସମ୍ରାଟେର ଛିଲ ଏ ସାଧନା ।

× × × ×

ଏକ ବିନ୍ଦୁ ନୟନେର ଜଲ
କାଲେର କପୋଲ ତଲେ ଶୁଭ୍ର ସମୁଜ୍ଜ୍ୱଲ
ଏ ତାଜ ମହଲ" । (ଶା-ଜାହାନ)

କବିଗୁରୁଙ୍କର ଉପରୋକ୍ତ ପଂକ୍ତିଗୁଡ଼ିକର ଭାବ ଓଡ଼ିଆ କବିଙ୍କ ଲେଖନୀରେ ଯେପରି ପୁନର୍ଜନ୍ମ ଗ୍ରହଣ କରି ଓଡ଼ିଆ ପାଠକର ଅଧିକ ସ୍ୱାଦ୍ୟ ଓ ଆତ୍ମୀୟ ହୋଇ-ଉଠିଛି । ଯେକୌଣସି ପ୍ରତିଭାଶାଳୀ ସ୍ରଷ୍ଟାଙ୍କ ଶିଳ୍ପସୌଧ ମୂଳରେ ମୂଳ ଭିତ୍ତି ରୂପରେ ରହିଥାଏ ତାଙ୍କର ସମସାମୟିକ ଓ ପୂର୍ବଯୁଗର ଶିଳ୍ପସ୍ରଷ୍ଟାମାନଙ୍କର କାବ୍ୟ-ସାଧନାର ପରଂପରା । ଅତି ଉଚ୍ଚକୋଟୀର ପ୍ରତିଭା ମଧ୍ୟ ଅନ୍ୟର ସାହାଯ୍ୟ ବିନା ଅଗ୍ରସର ହୋଇପାରେନା । ତେଣୁ କବି ମାନସିଂହଙ୍କ ସୃଷ୍ଟିସୌଧ ମୂଳରେ ରହିଛି ସ୍ୱଦେଶୀ ଓ ବିଦେଶୀ, ଜାତୀୟ ଓ ବିଜାତୀୟ ବହୁ ବିଭିନ୍ନ ପ୍ରତିଭାଶାଳୀ ସ୍ରଷ୍ଟାଙ୍କର ଶିଳ୍ପ ସାଧନାର ଐତିହ୍ୟ । କିନ୍ତୁ ଏହି ଐତିହ୍ୟକୁ ମୂଳଧନ ବା ପାଥେୟ କରି ଉଚ୍ଚକୋଟୀର ପ୍ରତିଭା ନିଜ ନିଜ ଭାବ-ଐଶ୍ୱର୍ଯ୍ୟର ବିକାଶ ବା ଅଭିବୃଦ୍ଧି ସାଧନ କଲାଭଳି ଗୃହୀତ ପରଂପରା ଉପରେ ବହୁ ନୂତନ ଓ ବିଚିତ୍ର ସରଣୀ ନିର୍ମାଣରେ ସୌଭାଗ୍ୟ ଅର୍ଜନ କରିଛନ୍ତି କବି ମାନସିଂହ । ଦୃଷ୍ଟାନ୍ତସ୍ୱରୂପ, ବିଦ୍ୟାପତିଙ୍କର ଅନୁରାଗ ବୈଚିତ୍ର୍ୟ ସମ୍ବଳିତ ପଦ—

"ଜନମ ଅବଧି ହମ ରୂପ ନିହାରଲ୍ ନୟନ ନ ତରପିତ ଭେଲ
ସୋଇ ମଧୁର ବୋଲ ଶ୍ରବଣହିଁ ଶୁନଲୁ ଶ୍ରୁତିପଥେ ପରଶ ନା ଗେଲ ।

କତ ମଧୁଯାମିନୀ ରଭସେ ଗୋଁୟାୟଲୁ ନା ବୁଝଲୁ କୈଛନ କେଲ
ଲଖ ଲଖ ଯୁଗ ହିୟେ ହିୟେ ରାଖଲୁ ତବୁ ହିୟା ଜୁଡ଼ନ ନା ଗେଲ ।"

କିମ୍ବା ଓଡ଼ିଶାର ବୈଷ୍ଣବକବି ଗୋପାଳକୃଷ୍ଣଙ୍କ ଅନୁରାଗଜନିତ ପ୍ରେମ-ଅତୃପ୍ତି ଭରା ପଦ—

"ବ୍ରଜବଧୂ ପରି ମୋତେ କେ ଦିଶୁ ନାହିଁ
ମନ ପୂରୁଛି କି ହେଲେ ନିତି ଚାହିଁ ?"

ସହିତ କବି ମାନସିଂହଙ୍କ ଅତୃପ୍ତ ଭୋଗ କବିତାର—

"ଦୁଇଟି ନୟନରେ ନ ଆସେ ତୃପ୍ତି ଲକ୍ଷ ନୟନରେ ଚାହିଁବି,
ଗୋଟିଏ ରସନାରେ ନପାଏ ମୁକ୍ତି ବଚନ—,ଆଉ ହେଲେ ଗାଇବି ।

ଦୁଇଟି ଭୁଜେ ଭିଡ଼ିସାରଲେ ତାହାରେ ମୁଗ୍‌ଧେ ଦେହ ଆଉ ଖୋଜଇ,
ଅଧର ଯେତେ ପାନ କଲେହେଁ ବଳସି ଅଗ୍ନି ପୁଣି ଓଠେ ଜାଗଇ ।

ଗୋଟିଏ ବକ୍ଷରେ ପୀରତି କୁଳାଏନି ନିୟୁତ ବକ୍ଷ ମୁଁ ଚାହେଁ ଯେ
ତାହାରେ ଭାବି ସବୁ ଭୁଲିବି ଭାଲେଣି, ମରିବି ତାର ଅବଗାହେ ଯେ ।"

ପ୍ରଭୃତି ପଂକ୍ତିମାନ ତୁଳନା କଲେ ପ୍ରଣୟୀ ଓ ପ୍ରଣୟିନୀ ହୃଦୟର ନିତ୍ୟ ଅତୃପ୍ତ ତପ୍ତ ପିପାସାର ସାର୍ବଜନୀନ ଭାବଟି ଦୁଇ କବିଙ୍କ ସାଧନା-ପରଂପରାରେ ପରିପୁଷ୍ଟ ହୋଇ କ୍ରମେ ମାନସିଂହଙ୍କ ଲେଖନୀରେ ନିଜର ବିକଚ ଓ କମନୀୟ ପରିଣତି କିପରି ଲଭ କରିଛି ତାହା ସହଜରେ ଲକ୍ଷ୍ୟ କରିହେବ । ପୁଣି ରବୀନ୍ଦ୍ରନାଥଙ୍କର 'ଅନନ୍ତ ପ୍ରେମ' କବିତାର—

"ଆମରା ଦୁଜନେ ଭାସିୟା ଏସେଛି ଯୁଗଲ ପ୍ରେମେର ସ୍ରୋତେ
ଅନାଦି କାଲେର ହୃଦୟ ଉତ୍ସ ହତେ ।
ଆମରା ଦୁଜନେ କରିୟାଛି ଖେଲା କୋଟି ପ୍ରେମିକେର ମାଝେ
ବିରହବିଧୁର ନୟନ-ସଲିଲେ, ମିଲନ ମଧୁର ଲାଜେ,
ପୁରାତନ ପ୍ରେମ ନିତ୍ୟ ନୂତନ ସାଜେ ।"—

ପଂକ୍ତିଗୁଡ଼ିକ ସହିତ କବି ମାନସିଂହଙ୍କର ଏହି ବିରହୀ ଗାଥା କବିତାର—

"ଅଗଣିତ ରବି-ଚନ୍ଦ୍ର-ତାରକା-ନକ୍ଷତ୍ରର ସୃଷ୍ଟି ଲଗ୍ନେ
ତୁମେ ଆଉ ମୁହିଁ ରହିଥିଲେ କାହିଁ ଜନମେ ଜନମେ ନିତ୍ୟ ଲଗ୍ନେ ?
ସୃଜନ-ଲୀଳାରେ ଥିଲେ କି ଗୋ ଆମେ ସୃଜନ-ବିଳାସୀ ବିଷ୍ଣୁର
ନୀହାରିକା କୋଟି ବନ୍ଧୁର ମେଳେ ଯୋଡ଼ିଏ, ପ୍ରଣୟୀ ବ୍ୟାକୁଳ ?
ତାପରେ ସକଳ ସୃଜନ-ଧାରାରେ ଥିଲେ କି ଦୁଇଟି ବନ୍ଧୁ ହୋଇ
ସକଳ ରୂପର ଭୁଞ୍ଜି ମରମ, ସକଳ ଜନମେ ଯୁଗ୍ମ ରହି, ×××
ଅଭିଯାନ ଏହି ଯୁଗ୍ମ ପ୍ରାଣୀର ବିପୁଳ କାଳର କକ୍ଷେ କକ୍ଷେ
ବୋଲି କି ପାରିବ ସଙ୍ଗିନୀ ଆଗୋ, କେଉଁ ନିଗୂଢ଼ ଗୁପ୍ତ କକ୍ଷେ ?"

ପ୍ରଭୃତି ପଂକ୍ତିଗୁଡ଼ିକ ତୁଳନା କଲେ ଯୁଗଳ ପ୍ରଣୟୀ ପ୍ରାଣର ଚିରନ୍ତନ ଆଶା, ଅଭିଳାଷ ଓ ଅମର କାମନା ମାନସିଂହଙ୍କ କବିତାରେ କିପରି ଲଳିତ ଓ ପ୍ରାଞ୍ଜଳ ପ୍ରକାଶ ଲାଭ କରିଛି ତାହା ମଧ୍ୟ ସ୍ପଷ୍ଟଭାବରେ ଲକ୍ଷ୍ୟ କରିହେବ । ଏ ତୁଳନା ଦେବାର ତାତ୍ପର୍ଯ୍ୟ ହେଉଛି ପରଂପରାକୁ ଆଶ୍ରୟ କରି ଭାବରାଜ୍ୟରେ ପ୍ରଗତିର ସ୍ୱାକ୍ଷର ପ୍ରତିଭା କିପରି ଅଙ୍କନ କରିଥାଏ, ତାହାହିଁ କେବଳ ଦର୍ଶାଇଦେବା ।

କବି ମାନସିଂହଙ୍କ ଶିଳ୍ପ ସୃଷ୍ଟିର ମନ୍ଦିର ଅଭ୍ୟନ୍ତର ମଧ୍ୟରେ ଆମେ ଯେତେବେଳେ ପ୍ରବେଶ କରୁଁ, ଆମେ ଲକ୍ଷ୍ୟ କରୁଁ ଭାବବିହ୍ୱଳ ଏକ ମୁଗ୍‌ଧ ଶିଳ୍ପୀପ୍ରାଣ ସାରସ୍ୱତ ଆରାଧନାରେ ନିବିଷ୍ଟ ଚିତ୍ତରେ ଧ୍ୟାନରତ । ହୃଦୟରେ ତାର ସରଳ ପୂଜାରୀ ପ୍ରାଣର ଆବେଗ ଓ ବିଶ୍ୱାସ, ବାହାରର ତୁଚ୍ଛ ସଂଗ୍ରାମ କୋଳାହଳରୁ ନିର୍ଲିପ୍ତ ରହି ମନରେ ତାର ଭରିରହିଛି ନିଷ୍ଠା ଓ ଏକାଗ୍ରତା, ବିକ୍ଷତ ଆତ୍ମାର ଅଭିଯୋଗ ସ୍ୱରୂପ ମାଧୁର୍ଯ୍ୟାଞ୍ଜନ-ପରିହିତ ଦୁଇ ଚକ୍ଷୁକୋଣରେ ଅଶ୍ରୁର ସ୍ୱଚ୍ଛ ପ୍ରବାହ ଏବଂ ଦୁଇ ହାତରେ ତାର ରହିଛି ଭାବସମ୍ଭାରପୂର୍ଣ୍ଣ ପ୍ରୀତି-ନୈବେଦ୍ୟର ଅର୍ଘ୍ୟଥାଳି । ଆଉ ଗୋଟିଏ କଥା ଆମେ ଲକ୍ଷ୍ୟ କରୁଁ, ତାହା ହେଉଛି କବିଙ୍କର ଭାବନୈବେଦ୍ୟର ଅର୍ଘ୍ୟଥାଳିରେ ପ୍ରୀତିଧୂପର ପ୍ରାଧାନ୍ୟ । ମାନସିଂହଙ୍କର "ନିବିଡ଼ ଅନ୍ତରେ ପ୍ରଣୟ ଛଳ ଛଳ ଜାଗଇ" (ଘନ-ଶିବିରୀ)—ପ୍ରଣୟ ଛଳ ଛଳ କବିପ୍ରାଣର ଏହି ପ୍ରୀତି-ଧୂପହିଁ ପ୍ରଧାନ ପ୍ରତୀକ । ଏହି ପ୍ରୀତିଧୂପର ମହକ ତାଙ୍କର ଶିଳ୍ପକକ୍ଷକୁ ଯେପରି ସୁରଭିତ କରି ରଖିଛି, ଅନ୍ୟ ପୂଜା ସାମଗ୍ରୀର ସୁବାସ ଆଘ୍ରାଣ କରିବାର ସୁଯୋଗ ଆମେ ପାଉଥିଲେ ହେଁ ସେହି ଧୂପର ମହକରେ ହିଁ ଆମର ପ୍ରାଣ ପ୍ରଧାନତଃ ରସାପ୍ଳୁତ ଓ ବିଗଳିତ ହୋଇଉଠିଥାଏ । ପ୍ରୀତିର ଏହି ଧୂପକାଠିଗୁଡ଼ିକ ପୁଣି ଗୋଟିଏ ଧରଣର ନୁହେଁ, ସେଥିରୁ କେଉଁଟିରୁ ମାନବିକ ପ୍ରେମର ନିଚ୍ଛକ ହୋମ ଗନ୍ଧ ନିର୍ଗତ ହେଉଛି ତ କେଉଁଟିରୁ ଅପାର୍ଥିବ ପ୍ରେମର ସ୍ୱର୍ଗୀୟ ସୁବାସ ବିଚ୍ଛୁରିତ ହୋଇପଡ଼ୁଛି । ପୁଣି କେଉଁଥିରୁ ଅପୂର୍ବ ବାସ ନିର୍ଗତ ହୋଇ ଆମର ଅନ୍ତରାତ୍ମାକୁ ମିଳନ-ସୌରଭରେ ଉଲ୍ଲସିତ କରିଦେଉଛି ତ କେଉଁଥିରୁ ବିରହଜନିତ କାରୁଣ୍ୟ-

ବିଷାଦଭରା ଅଶ୍ରୁ-ବାଷ୍ପ ଆତ୍ମପ୍ରକାଶ କରି ଆମର ଅନ୍ତରକୁ ଅଭିଭୂତ ଓ ଅଶ୍ରୁସିକ୍ତ କରିଦେଉଛି । ଏତେ ବିଚିତ୍ର ବର୍ଣ୍ଣର, ଏତେ ବିଭିନ୍ନ ଗନ୍ଧର, ଏତେ ପ୍ରାଣୋନ୍ମାଦ-କାରୀ ପ୍ରୀତିଧୂପର ସମାବେଶ ଯେଉଁ କୌଣସି କବି-ଭକ୍ତ ଏଥିପୂର୍ବରୁ ଓଡ଼ିଆ କାବ୍ୟ-ମନ୍ଦିରରେ କବି ମାନସିଂହଙ୍କ ପରି କାବ୍ୟ-ପ୍ରତିଷ୍ଠାର ସୌଭାଗ୍ୟ ପାଇନାହାନ୍ତି । କବି ମାନସିଂହଙ୍କ ପୂର୍ବରୁ ପ୍ରୀତି-ସାହିତ୍ୟର ପରଂପରା ଓଡ଼ିଆ ସାହିତ୍ୟରେ ଅକ୍ଷୁଣ୍ଣ ଭାବରେ ଅବଶ୍ୟ ରହିଛି, କିନ୍ତୁ ମାନସିଂହଙ୍କ କାବ୍ୟକବିତାବର୍ଣ୍ଣିତ ପ୍ରୀତିର ଆନ୍ତରିକତା, ଗମ୍ଭୀରତା, ବୈଚିତ୍ର୍ୟ, ପ୍ରାଣ ପ୍ରାଚୁର୍ଯ୍ୟ ଓ ମାନବିକ ପ୍ରେମର ହୋମଗନ୍ଧ ଏପରି ପରିପୂର୍ଣ୍ଣ ଓ ପରିସ୍ଫୁଟ ଭାବରେ ଅନ୍ୟତ୍ର କାହିଁ ? ରୀତିଯୁଗର କାବ୍ୟକବିତା ନିଛକ ରସିକତା ଓ ଶୃଙ୍ଗାରିକତାରେ ପରିପୂର୍ଣ୍ଣ, କିନ୍ତୁ ସେ ପ୍ରୀତି-ଅଭିବ୍ୟକ୍ତିର ବର୍ଣ୍ଣନା ପ୍ରାଣହୀନ; ଗତାନୁଗତିକତା, ଦୈହିକ ସୁଖ ସମ୍ଭୋଗ ଲାଳସା ଓ ଶରୀରର ବାହ୍ୟାଡ଼ମ୍ବର ବର୍ଣ୍ଣନା ବ୍ୟତୀତ ଅଧିକ ଆଉ କଅଣ ? ସେ ବର୍ଣ୍ଣନାରେ କବିର ରସମୟ ମନଭଙ୍ଗୀ କେବଳ ମାନସିକ ରତିବିଳାସରେ ହିଁ ପର୍ଯ୍ୟବସିତ, କବିର ହୃଦୟସ୍ପୃହା ଅପେକ୍ଷା ଶରୀରସ୍ପୃହା ହିଁ ଅଧିକ ପରିଲକ୍ଷିତ । ଏହି ରତିବିଳାସକୁ ଶାସ୍ତ୍ରସମ୍ମତ ଓ ପବିତ୍ର ବୋଲି ପ୍ରତିପାଦନ କରିବାପାଇଁ କବିଗଣ ଅପାର୍ଥିବତାର ଘୋଡ଼ଣୀ ଦ୍ୱାରା ତାକୁ ଢାଙ୍କି ରଖିବାକୁ ଅବଶ୍ୟ ଚେଷ୍ଟା କରିଛନ୍ତି, ସ୍ଥଳବିଶେଷରେ କୃତକାର୍ଯ୍ୟ ମଧ୍ୟ ହୋଇଛନ୍ତି, କିନ୍ତୁ ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ସୀମାରେଖା ସ୍ପଷ୍ଟ ଭାବରେ ବହୁ କବି ହୃଦୟଙ୍ଗମ କରି ନ ଥିବାରୁ ଶିଳ୍ପରୁଚି ବହୁସ୍ଥଳରେ ସେମାନଙ୍କର ବିକାରଗ୍ରସ୍ତ ହୋଇପଡ଼ିଅଛି । ଏ କ୍ଷେତ୍ରରେ ହସ୍ତନିପୁଣତା ଅର୍ଜନ କରିଥିବା ରୀତିଯୁଗର କବିମାନଙ୍କ ମଧ୍ୟରେ ଅଭିମନ୍ୟୁ ଅବଶ୍ୟ ଅଗ୍ରଗଣ୍ୟ । କିନ୍ତୁ ତାଙ୍କର ମଧ୍ୟ ପ୍ରେମବର୍ଣ୍ଣନା ବହୁସ୍ଥଳରେ ଗତାନୁଗତିକ ଓ ଅସ୍ୱାଦ୍ୟ ହୋଇଉଠିଛି ଏବଂ କାବ୍ୟ ମଧ୍ୟରେ ରସଦୃଷ୍ଟି ଓ ତତ୍ତ୍ୱଦୃଷ୍ଟିର ମଧୁର ସମନ୍ୱୟ ସେ ରକ୍ଷା କରି ପାରି ନାହାନ୍ତି । ଅଭିମନ୍ୟୁଙ୍କ ପରେ ପ୍ରେମ ଜଗତରେ ପ୍ରତିଭାର ସ୍ପଷ୍ଟ ମୁଦ୍ରା ଅଙ୍କନ କରିପାରିଛନ୍ତି ବୈଷ୍ଣବ ପଦ୍ୟାବଳୀର ସ୍ରଷ୍ଟା କବି ଗୋପାଳକୃଷ୍ଣ ଓ ବନମାଳୀ । ତଥାପି ରାଧାନାଥ ଯୁଗ ପର୍ଯ୍ୟନ୍ତ ପ୍ରେମ ବର୍ଣ୍ଣନାରେ ଅପାର୍ଥିବ ମାଧ୍ୟମ ସର୍ବଦା ଅବଲମ୍ବିତ ଏବଂ ମାନବିକ ପ୍ରେମ ଅଲୌକିକତାର ଆବରଣରେ ଆଚ୍ଛାଦିତ ହୋଇ ରହିଥିବାରୁ ଆମର ତାହା ଅନ୍ତରଙ୍ଗ ଓ ଅଧିକ ଆତ୍ମୀୟ ହୋଇପାରିନାହିଁ । ଏହି ଶିଳ୍ପଦୃଷ୍ଟି ପାଇଁ ଯୁଗର ମନନଭଙ୍ଗୀ ଅବଶ୍ୟ ଦାୟୀ, କିନ୍ତୁ ରାଧାନାଥ ଓ ତତ୍‌ପରବର୍ତ୍ତୀ ଯୁଗମାନଙ୍କରେ ପ୍ରେମ ପ୍ରତି କବିମାନଙ୍କର ଦୃଷ୍ଟିଭଙ୍ଗୀର ସମ୍ପୂର୍ଣ୍ଣ ପରିବର୍ତ୍ତନ ଆମେ ଲକ୍ଷ୍ୟ କରୁଁ । ରାଧାନାଥ ଯୁଗରେ ମଧ୍ୟ ପ୍ରେମର ମାନବୀୟ ଦୃଷ୍ଟି କେଉଁଠି ଅତିମାନୁଷିକତାରେ ବିଲୟ ଘଟିଛି ତ କେଉଁଠି ଅତ୍ୟଧିକ ଆଦର୍ଶବାଦ ମଧ୍ୟରେ ଆମର ବିସ୍ମୟ ଉଦ୍ରେକ-କାରୀ ମାତ୍ର ହୋଇଛି । ରାଧାନାଥଙ୍କ 'ଚନ୍ଦ୍ରଭାଗା' ବା 'ଉଷା' ଅମାନବୀୟ ପ୍ରେମର ଯେପରି ସଫଳ ପ୍ରତିମୂର୍ତ୍ତି ଗଙ୍ଗାଧରଙ୍କ 'ତପସ୍ୱିନୀ' ବା ନନ୍ଦକିଶୋରଙ୍କ 'ଶର୍ମିଷ୍ଠା'

ସେହିପରି ଆଦର୍ଶ ପ୍ରେମର ଅନୁରଞ୍ଜିତ ଓ କଳ୍ପିତ ପ୍ରତିମା । କିନ୍ତୁ ମାନବିକ ପ୍ରେମର ସଫଳ ଓ ବାସ୍ତବ ପ୍ରେମର ଗୀତିହାର ନିଜର ବ୍ୟକ୍ତି-କେନ୍ଦ୍ରିକତାର ଚତୁଃସୀମା ମଧ୍ୟ ର ପ୍ରାଣରସରେ ଅନୁରଞ୍ଜିତ କରି ରଚନା କରିଛନ୍ତି ସବୁଜ ଯୁଗର ସମସାମୟିକ କବି ମାନସିଂହ ।

ରୂପ ଓ ଅରୂପ, ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ସୀମା ମଧ୍ୟରେ ଶିଳ୍ପଗତ ସାମଞ୍ଜସ୍ୟ ରକ୍ଷାକରି ପ୍ରେମ ପ୍ରତି ସ୍ୱୀୟ ଦୃଷ୍ଟିଭଙ୍ଗୀ କବି ମାନସିଂହ ଯେପରି ପ୍ରକାଶ କରିଛନ୍ତି, ସେ ଦୃଷ୍ଟିଭଙ୍ଗୀ ତାଙ୍କ ସମସାମୟିକ ଅନ୍ୟାନ୍ୟ କବିଙ୍କ ଶିଳ୍ପସୃଷ୍ଟିରେ ପରିଲକ୍ଷିତ ହେଲେହେଁ ତାହା ବିରଳ । ସ୍ଥଳବିଶେଷରେ ଇନ୍ଦ୍ରିୟଗ୍ରାହ୍ୟ ରୂପ-ପିପାସାର ଚିତ୍ର କବି ଆମକୁ ଅବଶ୍ୟ ଦେଇଛନ୍ତି, କିନ୍ତୁ ସେ ପ୍ରେମଚିତ୍ର କେବଳ ଦେହଧର୍ମୀ ବା ରୂପସମ୍ବଳୀ ନୁହେଁ । ରୂପସାଗରରେ ଅବଗାହନ କରି କବି ଯେଉଁ ଅରୂପ ରତ୍ନ ଲଭ କରିଛନ୍ତି, ତାହା ଆତ୍ମଜ୍ୟୋତିରେ ଉଦ୍ଭାସିତ ଓ ବିଶ୍ୱଭାବରେ ଉଦାର ଓ ମହନୀୟ ହୋଇଉଠିଛି । ପ୍ରତି ମୁହୂର୍ତ୍ତରେ କବିଙ୍କର ଅନ୍ତରାତ୍ମା ପୁନର୍ଜନ୍ମ ଗ୍ରହଣ କରି ଶେଷରେ ଏପରି ଏକ ରୂପବିଗ୍ରହ ସେ ଲଭ କରିଛି, ଯାହା ଅବ୍ୟୟ ଓ ଅକ୍ଷୟ । କବି ନିଜେ ମଧ୍ୟ ଏହି ପ୍ରେମର ସଜ୍ଞା ନିର୍ଣ୍ଣୟ କରି କହିଛନ୍ତି, "ଗଭୀର ସୁଖ-ଦୁଃଖ ମଧ୍ୟଦେଇ ନବ ନବ ଅନୁଭୂତି ମଧ୍ୟଦେଇ ମାନବାତ୍ମାର ଯେଉଁ ଜନ୍ମଲଭ ହୁଏ ତାହା ହିଁ ପ୍ରେମ ।" ଏହି ପ୍ରେମ ପ୍ରଥମତଃ ଦେହଧର୍ମୀ ଓ ଇନ୍ଦ୍ରିୟ-ସୁଖାନ୍ୱେଷୀ ଥିଲେ ହେଁ ବହୁଦୁଃଖ ଯନ୍ତ୍ରଣାର ମଧ୍ୟଦେଇ ଏପରି ଏକ ଦେବଲୋକରେ ସେ ଆସି ପହଞ୍ଚେ, ଯେଉଁ ରାଜ୍ୟ କି ଆତ୍ମାର ଅସୀମ ରହସ୍ୟର ପୁଣ୍ୟ ଜ୍ୟୋତିରେ ଜ୍ୟୋତିର୍ମୟ । ଦାର୍ଶନିକ ପ୍ଲେଟୋ ଏହି ଦୈହିକ ପ୍ରେମର ପୁନର୍ଜନ୍ମ ଓ ପ୍ରେମର ଇନ୍ଦ୍ରିୟାତୀତ ଅବସ୍ଥାକୁ ଲକ୍ଷ୍ୟକରି ତେଣୁ କହିଛନ୍ତି—"Our love at its highest flood goes beyond its limit and loses itself in the infinite." "ଆମ ପ୍ରେମସ୍ରୋତରେ ଚରମ ବନ୍ୟା ଯେତେବେଳେ ଆସି ଦେଖାଦିଏ ସେ ତାର କୂଳ ଲଙ୍ଘନ କରି ଅସୀମର ପାରାବାରରେ ନିଜକୁ ନେଇ ନିମଗ୍ନ କରିଥାଏ ।" ସେହି ଅସୀମ, ଅରୂପ, ଅତୀନ୍ଦ୍ରିୟ ପ୍ରୀତି-ସତ୍ତାକୁ ଉପଲବ୍ଧି କରିବାପାଇଁ ରୂପପ୍ରୀତି ବା ଇନ୍ଦ୍ରିୟସତ୍ତା ଘୃଣା ବା ଅବହେଳାର ସାମଗ୍ରୀ ନୁହେଁ । ଇଂରାଜୀ କବି 'ଡନ' ସେଥିପାଇଁ ପ୍ରେମର ରୂପଧର୍ମକୁ ସ୍ୱୀକାର କରି ଲେଖିଛନ୍ତି—

Love's Mysteries in souls do grow
But yet the body is his book

( The Ecstasy )

କବି ମାନସିଂହଙ୍କ କାବ୍ୟକବିତାରେ ମଧ୍ୟ ଇନ୍ଦ୍ରିୟଲୋକରୁ ଅତୀନ୍ଦ୍ରିୟ ଜଗତକୁ ମାନବାତ୍ମାର ନିତ୍ୟଯାତ୍ରାର ପଦଧ୍ୱନି ତାଙ୍କର ବହୁସୃଷ୍ଟିରେ ଶ୍ରୁତିଗୋଚର

ଏବଂ ଇଟାଲୀୟ କବି ଦାନ୍ତେଙ୍କର ସୃଷ୍ଟି ସହିତ ରହସ୍ୟବାଦର ମୂଳ କାହିଁକା ବିଟ୍ରେଚିଙ୍କ ସହିତ କବିଙ୍କର ପ୍ରଣୟ ସମ୍ପର୍କ ସଦୃଶ କବି ମାନସିଂହ ତାଙ୍କର ପ୍ରଣୟିନୀ ସହିତ ସମ୍ପର୍କ ହିଁ ତାଙ୍କ ଶିଳ୍ପନିହିତ ଅତୀନ୍ଦ୍ରିୟତାର ରହସ୍ୟ ଦ୍ୱାର ଉଦ୍‌ଘାଟନ କରିବାକୁ ଏକମାତ୍ର ମୂଳ କାହିଁ । ଦାନ୍ତେଙ୍କର ପ୍ରଣୟିନୀ ତାଙ୍କ ନିକଟରେ 'ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଦର୍ପଣ' ବୋଲି ବିବେଚିତ ହେଲା ଭଳି କବି ମାନସିଂହଙ୍କର ପ୍ରଣୟିନୀ ମଧ୍ୟ ତାଙ୍କ ନିକଟରେ ସମସ୍ତ ପାର୍ଥିବ ଓ ଅପାର୍ଥିବ ସୌନ୍ଦର୍ଯ୍ୟର ମୂଳାଧାର । "Within its depths I saw gathered up the scattered leaves of all the universe, bound by love into one volume." କବି ଦାନ୍ତେ ତାଙ୍କ ପ୍ରଣୟିନୀଙ୍କୁ ଲକ୍ଷ୍ୟ କରି କହିବା ଭଳି କବି ମାନସିଂହ ମଧ୍ୟ ପ୍ରକାରାନ୍ତରେ ତାଙ୍କ ପ୍ରଣୟିନୀଙ୍କର ରୂପସାଗରର ଅତଳାନ୍ତିକ ଗମ୍ଭୀରତା ମଧ୍ୟରେ ବିଶ୍ୱର ସମସ୍ତ ବେଦନା ଓ ବିଶୃଙ୍ଖଳା ପ୍ରୀତିବନ୍ଧନରେ ସମନ୍ୱିତ ଓ ଶୃଙ୍ଖଳିତ ହୋଇ ନିହିତ ଥିବାର ଲକ୍ଷ୍ୟ କରିଛନ୍ତି—

"କ୍ଷୁଦ୍ର ଜୀବନ ମହାଜୀବନରେ ଧୀରେ ଧୀରେ ଧୀରେ ମିଶେ
ଭାସିଯାଏ ଆମ ମିଳନ-ମାଧୁରୀ ସୃଷ୍ଟିର ଦିଶ ବିଦିଶେ,
ସ୍ଥୂଳ ଧରଣୀର ଜଡ଼ ଅନୁଭବ ଦେହମନୁ ଧୀରେ ତୁଟେ
ହୃଦୟ-ଦଳରୁ ସୌରଭ ସମ ମହିମ୍ନ-ସ୍ତବ ଫୁଟେ ।"
( ମିଳନ ମାଧୁରୀ )

ବା

"ରୂପ କିବା ଘୃଣ୍ୟ କଥା, ନର ସୌନ୍ଦର୍ଯ୍ୟରେ
ଭକ୍ତ ସମ ଅଛି ଗୃହି, ବିମୁଗ୍ଧ ଧୈର୍ଯ୍ୟରେ
କେତେବାର ସଖୀ ମୁହିଁ, ବିଦଗ୍ଧ ସ୍ରଷ୍ଟାର
ସୃଷ୍ଟିର ମହିମା ସ୍ମରି, କିନ୍ତୁ ଗୋ ଆତ୍ମାର
ସୌନ୍ଦର୍ଯ୍ୟ ତହିଁରୁ ବଳି, ଯାର ସମ୍ମୁଖରେ
ମନୁଷ୍ୟ ନୁଆଁଏ ମଥା ତବ ରୂପତଳେ
ସେ ରୂପର ସନ୍ଧାନ ମୁଁ ପାଇଛି ସୁନ୍ଦରୀ
ମୋ ପ୍ରେମସରସ ଦେହ ଅନ୍ତରସଞ୍ଚରୀ ।"

ଦେହର ଜଡ଼ ଅନୁଭୂତିରୁ ଆତ୍ମାର ଚେତନ ଲୋକକୁ, ରୂପର ପୁଷ୍ପିତ-ପ୍ରାଙ୍ଗଣରୁ ଅରୂପର ଅଳକାପୁରୀକୁ ଏବଂ ସୀମାର ସଙ୍କୀର୍ଣ୍ଣ ନଗରରୁ ଭୂମାର ବୃହତ୍ତର ବନ୍ଧନକୁ ଅନ୍ତରର କବିମନୁଷ୍ୟଟି କ୍ରମଶଃ ଉପରି ଗତିଶୀଳ ହୋଇଛି ଏବଂ ପ୍ରଣୟିନୀର ରୂପାଲୋକରେ କବି ଅରୂପ-ଜଗତର ସନ୍ଧାନ ଉପରି ଲାଭ କରିଛି,

ଉପରୋକ୍ତ ପଂକ୍ତିଗୁଡ଼ିକରୁ ତାହା ସ୍ପଷ୍ଟ ହୃଦୟଙ୍ଗମ କରିହୁଏ । କବିପ୍ରାଣର ପ୍ରଣୟାଭିସାର ଦେହ-କାରାଗାରର ଇନ୍ଦ୍ରିୟବନ୍ଧନୀ ମଧ୍ୟରେ ଆରମ୍ଭ ହୋଇଥିଲେ ହେଁ ପରିଣତିରେ ଏପରି ଏକ ଝିଙ୍ଗି ଧାମରେ ସେ ଆସି ପହଞ୍ଚିଛି, ଯେଉଁ ଧାମ କି ମୁକ୍ତି, ସୌନ୍ଦର୍ଯ୍ୟ ଓ ନିତ୍ୟ ଆନନ୍ଦର ଗୋଲକ ।

"ଆଜି ମୁଁ ଚାହେଁ ତେଣୁ ମୋତେ ହେ ଦେବତା
ମିଳାଅ ପଞ୍ଚ ଏ ଭୂତରେ,
ସୀମାକୁ ତେଜି ମୋର ଅସୀମ ମମତା
ବ୍ୟକ୍ତ ହେବ ବହୁ ରୂପରେ ।
ଜ୍ୟୋତ୍ସ୍ନା, ମଳୟରେ ମିଶି ମୁଁ ପ୍ରିୟାରେ
ଦେବି ମୋ ଆଶ୍ଳେଷ ଅଗଣ,
ମିଶିଲେ ନୀଳାକାଶେ ତାରିରେ ତାରିରେ
ତୃପ୍ତ ହେବ ଅବଲୋକନ ।"

( ଅତୃପ୍ତ ଭୋଗ )

ପ୍ରେମର ଘନୀଭୂତ ଏହି ସାର୍ବଜନୀନ ଭାବ-ରାଜ୍ୟରେ ଉପନୀତ ହେବାକୁ ଏବଂ ରୂପ-ନୈବେଦ୍ୟ ଦ୍ୱାରା ଅରୂପ ଦେବତାର ଆରାଧନା-ସୌଭାଗ୍ୟ ଲଭ କରିବାକୁ କବି ବିରହର ଶାଶ୍ୱତ ଯନ୍ତ୍ରଣା ସ୍ୱୀକାର କରିଛନ୍ତି ଓ ନିଜର ଅଶ୍ରୁପାଥେୟକୁ ଏକମାତ୍ର ସମ୍ବଳ କରି ପ୍ରୀତିର ଅଗ୍ନି-ପଥରେ ଅଗ୍ରସର ହୋଇ ଚାଲିଛନ୍ତି । ଏହି ଅଶ୍ରୁସମ୍ବଳୀ ହୃଦୟ ଏବଂ ଶରବିଦ୍ଧ ହୃଦୟର ଅବ୍ୟକ୍ତ ଯନ୍ତ୍ରଣା ହିଁ ତ ପ୍ରକୃତ ପ୍ରେମ ।

"ସବୁ ଭିଆଣରୁ ପୀରତି ଭିଆଣ ଜଟିଳ,
ବଳାପି ବସିଲେ ବୋଧିବାର ଲୋକ ନଥାଏ;
କଠିନ ଆହୁରି ବାନ୍ଧିବା ଲୁହ ଆଖିର,
ଯେତେ ପୋଛ ପୁଣି ସେତିକି ଗୋ ବୁକୁ ବଥାଏ ।"

( ପ୍ରଣୟୀ )

କବି ହୃଦୟର ରୁଧିର ବେଦନାଶ୍ରୁର ପ୍ରବାହ ଭଳି ଚକ୍ଷୁରୁ ନିତ୍ୟ ନିର୍ଗତ ହୋଇଛି ସତ, କିନ୍ତୁ ସେ ପ୍ରବାହରେ ନିଜର ଅନ୍ତରାତ୍ମାକୁ ଅଧିକତର ନିର୍ମଳ ଓ ପବିତ୍ର କରି ପ୍ରଣୟିନୀର ବିରହଜନିତ ବକ୍ଷଭରା ବେଦନା ମଧ୍ୟରେ କ୍ରମେ ବିଶ୍ୱମାନବର ଶାଶ୍ୱତ ବ୍ୟଥାରାଜିକୁ ଉପଲବ୍ଧି କରି ଅଶ୍ରୁପୂଜା ଭିତରେ ହିଁ ଦେବତାର ମହିମାସ୍ତବ କବି ଗାନ କରିଛନ୍ତି—

"ଜୀବନ ମମ ଘୋର ଯେ ନାଥ, ଚନ୍ଦନ ପେଷଣରେ,
ସିକ୍ତ କର ଅଙ୍ଗ ମୋର ଲାଞ୍ଛନାବାରିରେ;

ନୟନ ମମ ଓଦାଅ ନିତ୍ୟ ଲୋତକ ଅଞ୍ଜନେ,
ନେବ କି ଧରି କେବେ ହେ ତବ ଦେଉଳ ଅଙ୍ଗନେ ?"

( ଅଶ୍ରୁ ପୂଜା )

କବି ଓ୍ୱାର୍ଡସଓ୍ୱାର୍ଥଙ୍କର ବେଦନାନୁଭୂତିର ଦର୍ଶନ, "Suffering is permanent, cbscure and dark and has the nature of infinity" ବା ଭାରତୀୟ ରହସ୍ୟବାଦୀ ପ୍ରେମିକ-କବି କବୀର ଓ ଦାଦୂ ପ୍ରଭୃତିଙ୍କର ଯଥାକ୍ରମେ "ଯୋ ଘଟ ବିରହ ନ ସଞ୍ଚରେ, ସୋ ଘଟ ଜାନୁ ମଶାନ" ବା "ପ୍ରୀତି ନ ଉପଜୈ ବିରହ ବିନ୍ ପ୍ରେମ୍ ଭଗତି କେଁୟା ହୋଇ" ପ୍ରଭୃତି ପଂକ୍ତିଗୁଡ଼ିକର ବିରହ-ଦର୍ଶନ ଓ ବେଦନା-ସ୍ୱୀକୃତି କିମ୍ବା ବିଦ୍ୟାପତି, ଚଣ୍ଡୀଦାସ, ଗୋପାଳକୃଷ୍ଣ ଓ କବିସୂର୍ଯ୍ୟ ପ୍ରଭୃତିଙ୍କର ବିରହାନୁଭୂତି ଓ ଅଶ୍ରୁ-ତପସ୍ୟା ନୂତନ ଭଙ୍ଗୀରେ କବି ମାନସିଂହ ଶିଳ୍ପ-ସୃଷ୍ଟିରେ ସ୍ୱୀକୃତି ଲଭି କରିଛି । ପ୍ରୀତିପଥର ଅସୀମ ବିସ୍ତୃତି, ଅନନ୍ତ ବିସ୍ମୟ ଓ ରହସ୍ୟ ଏବଂ ପ୍ରୀତିପଥ ପଥିକର ବିଚିତ୍ର ଅନୁଭୂତି ଓ ଅସୀମ ଆନନ୍ଦ ବେଦନାକୁ ଲକ୍ଷ୍ୟ କରି କବି ତେଣୁ କହୁଛନ୍ତି—

"ପ୍ରୀତିର ଆଦି ଅଛି ଶେଷ ତ ନାହିଁ,
ନିତି ସେ ନୂଆ ଉଷା ପରି ରେ;

ବନ୍ଧନେ ତହିଁ ଏକ ମୁକତି ପାଇ
ସ୍ୱରଗ-ଅନୁଭୂତି ଶରୀରେ ।"

( ନିତ୍ୟ ସ୍ୱୟମ୍ବର )

ମର୍ତ୍ତ୍ୟ ଓ ସ୍ୱର୍ଗ, ରୂପ ଓ ଅରୂପ, ସଂଶୟ ଓ ସମାଧାନର ବିପରୀତମୁଖୀ ବିଚିତ୍ର ଭାବଦ୍ୱନ୍ଦର ଏପରି ଅପୂର୍ବ ଓ ଏକତ୍ର ସମାବେଶ ପ୍ରୀତି-ସଂସାର ବ୍ୟତୀତ ଅନ୍ୟତ୍ର କାହିଁ ? ବା ମିଳନରେ ଯେତିକି ତୃପ୍ତି ଆନନ୍ଦ, ବିରହରେ ପ୍ରାଣର ଅଶ୍ରୁ-ତର୍ପଣ ଭିତରେ ତା'ଠୁଁ ଅଧିକ ଆହ୍ଲାଦ ଅନୁଭୂତି ପ୍ରୀତି-ସଂସାର ବ୍ୟତୀତ ଅନ୍ୟତ୍ର କେଉଁଠି ସୁଲଭ ? ବିରହର ପ୍ରଦୀପ୍ତ ଯଜ୍ଞାନଳ ମଧ୍ୟରେ ପ୍ରଣୟୀ ପ୍ରଣୟିନୀଙ୍କର ଆତ୍ମାହୁତି ପ୍ରଦାନରେ ହିଁ ପ୍ରେମର ଶୁଚିତା, ସାର୍ଥକତା ଓ ପ୍ରତିଷ୍ଠା । ତେଣୁ କବି ପ୍ରେମକୁ କେବଳ ଶରୀରର ପାଶବ କ୍ରୀଡ଼ା ବୋଲି ଜ୍ଞାନ ନ କରି ପ୍ରଣୟର ଜନ୍ମପୀଠ ମାନବହୃଦୟକୁ ତୀର୍ଥସଦୃଶ ପବିତ୍ର ମନେ କରି ଗାଉଛନ୍ତି—

"ତୀର୍ଥ କରିଛ କି ହେ ?
ତୀର୍ଥଟି ତହିଁ ମାନବର ହୃଦୟ।
ଯହିଁ ହେଏ ଆଉ ହୁଏ ।"
( ଗ୍ରସ୍ଥଳୀ )

ପୁଣି ବିରହ ମଧ୍ୟରେ ଆତ୍ମପ୍ରତିଷ୍ଠା ଉପଲବ୍ଧି କରି କହିଛନ୍ତି—

"ପ୍ରେମ କି କେବଳ ଭୋଗେ, ଅଙ୍ଗେ ଅଙ୍ଗ ମେଳେ,
ଅଧରୁ ଅଧର ପାନେ, ଶରୀର ଆଘ୍ରାଣେ,
ଏ ଦେହର ରସଭୋଜ୍ୟେ ? ପ୍ରିୟଜନ ଲାଗି
ଜାଳିବା ଜାଗର ବସି ନିଶୀଥେ ନିଶୀଥେ
ତେଜି ଧୀରେ ପ୍ରେମଦୀପ ନିଃସଙ୍ଗ କୁଟୀରେ,
ଶୁଖାଇବା ନେତ୍ର ନୀର, ଶୁକ୍ଳାଇବା କେଶ,
ସେ କି ନୁହେଁ ପ୍ରେମ ସତେ ?....."
( ପରିପାକ—ହେମପୁଷ୍ପ )

ଏହି ଅଶ୍ରୁ ଜାଗର, ମନର 'ଅହଂ' ବିନାଶ ଓ ଯନ୍ତ୍ରଣା ସହି ପ୍ରାଣର ସଖ୍ୟ ସ୍ଥାପନକୁ କବି ପ୍ରକୃତ ପ୍ରେମ-ସାଧନା ବୋଲି ସ୍ୱୀକାର କରିଛନ୍ତି ଏବଂ ପ୍ରଣୟୀ-ପ୍ରଣୟିନୀଙ୍କର ପ୍ରାଣର ନିତ୍ୟ ଧର୍ମକୁ ନିଜ ଜୀବନରେ ଉପଲବ୍ଧି କରି ଗାଇଛନ୍ତି—

"ସତୀ, ସତୀ ସମ ଲାଞ୍ଛନା ଯଦି ସହି,
ଶିବ ସମ ମୁହିଁ ପ୍ରଣୟ ସାଧନା ଜାଣେ;
ଅପମାନ ଭରେ ପଥେ ଯଦି ଥକି ରହି,
ମସ୍ତକେ ବହି, ମରି ମୁଁ ଭରିବ ଗାନେ ।"
( ପ୍ରଣୟ ସାଧନା )

ପ୍ରେମର ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ ସ୍ୱରୂପର ଉପଲବ୍ଧି ଏବଂ ତାର ଶିଳ୍ପଗତ ଅଭିବ୍ୟକ୍ତିରେ ହସ୍ତନିପୁଣତା ଅର୍ଜନ କରିବାରେ, ମୋର ମନେ ହୁଏ, ବୈଷ୍ଣବଯୁଗର କବି ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କୁ ବାଦ ଦେଲେ କବି ମାନସିଂହ ହିଁ ଅଦ୍ୱିତୀୟ ଶିଳ୍ପୀ, ଯେ କି ରୂପ ଅରୂପର ମିଳନରେ ମନ୍ତ୍ରଜ୍ଞ ପୁରୋହିତ ଭଳି ଉଭୟ ହସ୍ତରେ ମଙ୍ଗଳସୂତ୍ର ଯଥାଯଥ ଭାବରେ ବାନ୍ଧି ନିଜ ସିଦ୍ଧହସ୍ତତାର ପରିଚୟ ପ୍ରଦାନ କରିଛନ୍ତି । ଇନ୍ଦ୍ରିୟାତୀତକୁ ରୂପ ଦେବାରେ ତାଙ୍କର କାରିଗରି ଯେପରି ଅକ୍ଷୁଣ୍ଣ, ଇନ୍ଦ୍ରିୟଗ୍ରାହ୍ୟ ରୂପପ୍ରୀତିକୁ ଅଭିବ୍ୟକ୍ତି ଦେବାରେ ତାଙ୍କର ଶିଳ୍ପକଳା ସେହିପରି ରୁଚିପୂର୍ଣ୍ଣ ଓ ରମଣୀୟ । ବିରହ ଛବି ଦେବାରେ ତାଙ୍କ ତୂଳୀ ଯେପରି ନିପୁଣ, ମିଳନାଲେଖ୍ୟ ଅଙ୍କନ କରିବାରେ ସେ ତୂଳୀ ସେହିପରି ଶକ୍ତିଶାଳୀ ।

"କେଉଁ ଧନେ ସେ ଗୋ ବଣିକଯୁବା କରେ ବେପାର
ନାରୀ-ତୁଳୁ ଘେନ କି ତା ବେଉସା,
ଭୁଆସୁଣୀ ଲୁହେ ତା କାରବାର ?"
( ସାଧବଝିଅ )

କବିଙ୍କର ସାଧବଝିଅର ପ୍ରଣୟୃପସରୀ ଓ ହୃଦୟସଙ୍ଗୀନ ଯୁବକ ସାଧବପୁଅ ନାରୀହୃଦୟ ଓ ନାରୀଲୁହ ଘେନ ବାଣିଜ୍ୟ କରିବା ଭଲ କବି ମଧ୍ୟ ଭାବରାଜ୍ୟରେ ନାରୀହୃଦୟ ଘେନ ବହୁ ସମୟ ବାଣିଜ୍ୟ କରିଛନ୍ତି ସତ, କିନ୍ତୁ ଏହି ପ୍ରୀତି-ବେପାରରେ କବିହୃଦୟର ଅସାଧୁତା ବା ବିଶ୍ୱାସଘାତକତା କେଉଁଠି ପ୍ରକାଶ ପାଇନାହିଁ; ବରଂ ପ୍ରକାଶ ପାଇଛି ଶିଳ୍ପୀପ୍ରାଣର ନିଷ୍ଠା, ବିଶ୍ୱାସ ଓ ଆନ୍ତରିକତା । ଏହି ଆନ୍ତରିକତା ଓ ନିଷ୍ଠା ନେଇ କବି ଆଙ୍କିଛନ୍ତି ହୃଦୟର ମିଳନାନୁଭୂତିର ଜୀବନ୍ତ ଓ ବିଶ୍ୱସ୍ତ ଚିତ୍ର । ପ୍ରାଣର ରୂପତୃଷ୍ଣା ନେଇ ସେ ଖୋଜିଛନ୍ତି ପ୍ରଣୟିନୀ ହୃଦୟର ସରସ ପ୍ରୀତି-ଫଲ୍‌ଗୁ ଏବଂ ସ୍ୱାଭାବିକ ଦୃଷ୍ଟିଭଙ୍ଗୀ ନେଇ ସେ ସନ୍ଧାନ କରିଛନ୍ତି ସୌନ୍ଦର୍ଯ୍ୟର ଆବରଣ ତଳେ ସତ୍ୟର ଆତ୍ମା ।

"ତଥାପି ରୂପସୀ କିଶୋରୀ ତୁମର ଉଚ୍ଛଳ ଯୌବନେ
ଏକ ଗଣ୍ଡୁଷେ ପାନ କରିବାର ବାସନା ଜାଗଇ ମନେ ।"
( ଦୂରେ ରହି )

ବା

କିଶୋରୀ ଗୋ ତବ ବକ୍ଷ-କମଳ ମୋ ହୃଦକମଳ ପରେ
ରଖିଲ ଯା, ଟିକେ ରହି ଥିର ହୋଇ ଅନୁଭବ ତାହା କରେଁ;
ପୁଲକିତ ଦେହ, ପୁଲକିତ ମନ, ଆଲୋକିତ ଅନ୍ତର,
କ୍ଷୁବ୍‌ଧ-ଶୋଣିତ, ଅଙ୍ଗେ ଅଙ୍ଗେ ଆନନ୍ଦ ଥରଥର ।"
( ମିଳନ ମାଧୁରୀ )

ବା

"ଭୁଜେ ଭୁଜ ଭିଡ଼ାଭିଡ଼ି, ହୃଦେ ହୃଦ ଧରି
ଚରଣେ ଚରଣ ଥାପି ନିବିଡ଼ ସୋହାଗେ
ଚୁମ୍ବନ୍ତି ସେ ପରସ୍ପରେ ଜଗତ ବିସ୍ମରି,
ଛାଡ଼ି ପୁଣି ଚୁମ୍ବି ଦିଅନ୍ତି ଗାଢ଼ ଅନୁରାଗେ,
ଇନ୍ଦ୍ରିୟେ ଇନ୍ଦ୍ରିୟେ ହୁଏ ପ୍ରାଣ-ବିନିମୟ,
ମୁଖେ ନ ଆସଇ ଭାଷା ଭରି ଯେ ହୃଦୟ ।"
( ସାଧବ ଝିଅ—୫୪ ପୃ )

ପ୍ରଣୟୀ ପ୍ରଣୟିନୀଙ୍କର ସର୍ବେନ୍ଦ୍ରିୟାକର୍ଷୀ ପ୍ରୀତି-ଲେଭ ଓ ଆତ୍ମବହ୍ୱଳ ମିଳନାନୁଭୂତି ଉଲ୍ଲିଖିତ ପଂକ୍ତିଗୁଡ଼ିକରେ ଯେପରି କଳାତ୍ମକ ଭାବରେ ଆତ୍ମ-ପ୍ରକାଶ କରିଛି ଓ ପ୍ରଣୟୀ-ପ୍ରଣୟିନୀଙ୍କର ରୂପତୃଷ୍ଣା ଯେପରି ନିବିଡ଼ ଭାବରେ ପରିସ୍ଫୁଟ ହୋଇଛି, ତାହା କବି ମାନସିଂହଙ୍କ ପୂର୍ବରୁ ଶିଳ୍ପଧର୍ମ ବଜାୟ ରଖି ବିଦ୍ୟାପତି, ଚଣ୍ଡୀଦାସ ବା ଅଭିମନ୍ୟୁ, କବିସୂର୍ଯ୍ୟଙ୍କ ପରି ପ୍ରଥମ ଶ୍ରେଣୀର ପ୍ରତିଭାମାନେ ହିଁ କେବଳ କରିପାରିଛନ୍ତି ।

"ରୂପ ଲାଗି ଆଖି କାନ୍ଦେ ଗୁଣେ ମନ ଭୋର
ପ୍ରତି ଅଙ୍ଗ ଲାଗି କାନ୍ଦେ ପ୍ରତି ଅଙ୍ଗ ମୋର ।"
(ଚଣ୍ଡୀଦାସ)

ବା

ନିଜ ନିଜ ସୁଖ ମନେ ମନାସି
ସର୍ବେନ୍ଦ୍ରିୟ ରହେ ପ୍ରୀତିକି ରସି,
ନ ପାଇ ଧନ ବିକ ହୋଏ ପ୍ରାଣ,
ସଂସାର ସୁଖଯାକ ଗଣା ତୃଣ,
ପ୍ରୀତିସ୍ୱା ପରିତ ।
ସର୍ବଭୂତମୟ ପ୍ରାୟ ଦିଶନ୍ତି ।"
(ଅଭିମନ୍ୟୁ)

ପ୍ରଲୁତ ପଂକ୍ତିଗୁଡ଼ିକରେ ମିଳନର ତୀବ୍ର ପିପାସା ଯେପରି ପ୍ରକଟିତ, ପ୍ରଣୟର ସନାତନ ଆକାଂକ୍ଷା ଯେପରି ଅଭିବ୍ୟକ୍ତ ଏବଂ ସାର୍ବଜନୀନ ପ୍ରେମାନୁଭୂତି ଯେପରି ପ୍ରକାଶିତ, ସେଗୁଡ଼ିକ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାପାଇଁ ମାନସିଂହଙ୍କ ତୂଳୀହିଁ କେବଳ ସ୍ପର୍ଦ୍ଧା ପୋଷଣ କରିପାରେ । 'ଉପଭୋଗ ପ୍ରଣୟର, ତାହାଠାରୁ ବଳି ନାହିଁ ପ୍ରିୟତମ ପବିତ୍ର-ମନୋହର'—ଉପଭୋଗର ଚିତ୍ର ମଧ୍ୟରେ ପ୍ରଣୟ ଶୁଚିତା ପ୍ରଦର୍ଶନ କରିବାର ଗୌରବ ଓ ଶିଳ୍ପ-ଶୁଚିତା ଅକ୍ଷୁର୍ଣ୍ଣ ରଖିବାର ମହତ୍ତ୍ୱ ମାନସିଂହ ପ୍ରତିଭାହିଁ ଅର୍ଜନ କରିପାରିଛି ।

"ଅସ୍ଫୁଟ କଳିକା ସିନା ମୌନ ଅନାହତ ବୀଣା
ଫୁଟିବ, ବାଜିବ ଯେବେ ଚିତ୍ତ କପରି
ହରିବ, ରସିକ ତା'କ ବୁଝିବାରେ ରହେ ବାକ
ଦେଖିବା ଭବିଷ୍ୟ ବର୍ତ୍ତମାନକୁ ଧରି,
ଧରି ଯୁବା ପଦ୍ମାର କର
କଳପନା କରୁଥାନ୍ତି ଜେମା ରୂପର ।"
(ଜେମା)

ଅସ୍ଫୁଟ କଳିକାର ଶୁଚିତା ଓ ଲାବଣ୍ୟଭରା 'ଜେମା'ର କୈଶୋର ସୌନ୍ଦର୍ଯ୍ୟର ବର୍ଣ୍ଣନା ଯେପରି ଭାବ-ବ୍ୟଞ୍ଜନା ଓ ଚିତ୍ରକଳ୍ପର ଭିତରଦେଇ କବି କରିଛନ୍ତି, ସେ ଚିତ୍ର ଏ ଯୁଗର ଗଣି ଗଣି ପ୍ରେମ କବିତା ଭିତରେ କାହିଁ ? କିମ୍ବା ଷୋଡ଼ଶୀ 'ଜେମା'ର ଯୌବନର ସ୍ୱାଭଦୀପ୍ତ ପ୍ରାଣର ମୁକ୍ତା ସ୍ୱପ୍ନ ଓ ନବଜ୍ୱାଳାର ଆଲୋଡ଼ନ ହିସାବ—

"କିଶୋରୀ ପରଣ ଥାଏ ବନ୍ଧ ରାଜପୁର,
ସୁପ୍ତ ତହିଁ ରାଜକନ୍ୟା ନୀରବ ନୂପୁର,
ପ୍ରେମ-କାଉଁରି ପରଶେ
ଚେଉଁକି ନିଦ୍ରା, ବିଚ୍ଛୁରିତ ମୁକ୍ତା ଗୁନ୍ଥି ବସେ ।
ଗୁନ୍ଥି ମାଳା ହୃଦଜ୍ୱାଳା ଅନୁଭବି ଗାଢ଼େ,
ନୂପୁର ବାଜଇ ଗୃହିଁ ରହେ ହୃଦଦ୍ୱାରେ
କିଏ ଅଛି କି ଦୋସର,
ଦେଇ ମାଳା ପୁହାଇବ ମିଳନ ବାସର ।"

କବି ମାନସିଂହ ଯେପରି ଲିପିବଦ୍ଧ କରିଛନ୍ତି ସେ ହିସାବ ଅନ୍ୟମାନଙ୍କ କବିତା ଖାତାରେ କାହିଁ ? "ଅର୍ଦ୍ଧେକ ମାନବୀ ତୁମି ଅର୍ଦ୍ଧେକ କଳ୍ପନା"—ନାରୀମନର ବାସ୍ତବତା ଓ ସ୍ୱପ୍ନର ଦିଗକୁ ଲକ୍ଷ୍ୟକରି କବିଗୁରୁ ରବୀନ୍ଦ୍ର ମନ୍ତବ୍ୟ ଦେଲା ପରି କବି ମାନସିଂହ ମଧ୍ୟ ସ୍ଥଳବିଶେଷରେ ନାରୀକୁ 'ଅର୍ଦ୍ଧେକ ମାନବୀ' ଓ 'ଅର୍ଦ୍ଧେକ ମାୟାବିନୀ' ବୋଲି ପରୋକ୍ଷ ମନ୍ତବ୍ୟ ଯଦାଚ ଦେଇଛନ୍ତି—

"ତାହା ନ କରି ସାହୁ କୁମରି, ରମଣୀ କୁହୁକିନୀ
ପୀରତି ଦେଲେ ଏକା ସେ ହେବ ସହସ୍ର ମାୟାବିନୀ ।
ନାରୀ ତ ବୀଣା, ଗୃହେଁ ବାଜଣା ବାୟୁକି ପୁଂସ କରେ
ପାଇଲେ ବାଇ ଗୀତ ଫୁଟାଇ ତା ଦେହ ନିରନ୍ତରେ ।"

( ସାଧବଝିଅ )

ତଥାପି କବିପ୍ରାଣର ନିବିଡ଼ ରସାନୁଭୂତି—

"ଏ ଧରାର ସାର ଯେ କିଶୋରୀ, ସେ କିଶୋରୀ ସାର ଯେ ହୃଦୟ,
ସେ ହୃଦୟ ସାର ପ୍ରୀତିଝର ହାତେ ମୋର ଦେଖ ସୁଧାମୟ,
ପିଇଛି ମୁଁ ମନତୋଷ ତହିଁ,
ଆନମତେ ଦିଶୁଛି ଏ ମହୀ ।"

( ସାଧବଝିଅ )

କବି ମାନସିଂହଙ୍କ ବ୍ୟତୀତ ଅନ୍ୟ କାହାର ପ୍ରେମକବିତାରେ ଏତେ ମଞ୍ଜୁଳ ଓ ସ୍ପଷ୍ଟ ଭାବରେ ଆତ୍ମପ୍ରକାଶ କରିଛି ? ଦବାଗ୍ନିର ମିଳନ ପରି ପ୍ରଣୟର ବିଭିନ୍ନ ଦିଗର ସମଗ୍ରତା ମାନସିଂହଙ୍କ ଶିଳ୍ପକର୍ମ ମଧ୍ୟରେ ଲକ୍ଷଣୀୟ । କିନ୍ତୁ ଏହି ସମଗ୍ରତା ତାଙ୍କ ସୃଷ୍ଟିର ପରବର୍ତ୍ତୀ ସ୍ତରରେ ଅଖଣ୍ଡ ଓ ଅବିଚ୍ଛିନ୍ନ ଭାବରେ ରହି ପାରିନାହିଁ । 'ଧୂପ' ଓ 'ହେମଶସ୍ୟ' କୁ ତୁଳନା କଲେ ଏହାର ସତ୍ୟତା ଉପଲବ୍ଧି ହେବ । 'ଧୂପ'ର ପ୍ରେମସ୍ରୋତ ଯେପରି ଏକ ବର୍ଷାକାଳୀନ ନଦୀ-ପ୍ରବାହ; ତାହା ଉଚ୍ଛ୍ୱାସମୟୀ ଓ ଅପ୍ରତିରୋଧ୍ୟ ଗତିରେ ନିରନ୍ତର ଆବେଗମୟୀ । ସେଥିରେ ଅଛି ଉଦ୍ଦାମତା, କ୍ଷିପ୍ରତା ଓ କ୍ଷୁବ୍‌ଧତାର ବୈପ୍ଳବିକ କଣ୍ଠସ୍ୱର । କିନ୍ତୁ ହେମଶସ୍ୟର ବହୁ କବିତାରେ ନାହିଁ ଏହି ଉଦ୍ଦାମ ଆବେଗ, କ୍ଷିପ୍ରତା ଓ ଦୀପ୍ତ ତେଜସ୍ୱିତା । ତାର ଅନ୍ତର୍ନିହିତ ପ୍ରେମସ୍ରୋତ ଯେପରି ଏକ ଶରତ୍‌କାଳୀନ ନଦୀପ୍ରବାହ; ତାହା ଧୀର, ନିର୍ମଳା, ମୃଦୁଭାଷିଣୀ ଓ ନିଷ୍ପ୍ରିୟା । ଭାବ, ଭାଷା ଓ ଛନ୍ଦ ଦୃଷ୍ଟିରୁ 'ହେମଶସ୍ୟ' ସଂଯମ-ଗୌରବ ଅର୍ଜନ କରିଥିଲେହେଁ ଧୂପର ସରସ ଶିଳ୍ପଗୌରବ ବହୁପରିମାଣରେ ହରାଇ ବସିଛି । ପ୍ରଣୟର ସରସ ପୀୟୁଷରନ୍ଧ୍ର ଏଇ ଯେ କବି ହରାଇବସିଲେ ତାର କ୍ଷତିପୂରଣ ପରବର୍ତ୍ତୀ ସୃଷ୍ଟିରେ କବି ବହୁଦିଗରୁ ଲାଭ କରିଥିଲେହେଁ ପ୍ରେମାମୃତର ସ୍ୱାଦୁ ଲାଭ କରିବାକୁ ରୂପ ଓ ପ୍ରେମସମ୍ବଳୀ କବି ଆଉ ସମର୍ଥ ହୋଇପାରିନାହାନ୍ତି । ଏହାର ଏକ ମୁଖ୍ୟ କାରଣ, ରୂପଜ ପ୍ରେମ ପ୍ରତି କବିଙ୍କର ଶିଳ୍ପଚେତନାର ସଚେତନ ବିଦ୍ରୋହ । 'ନିନ୍ଦିତ ଭଗବାନ' କବିତାରେ ଏହି ବିଦ୍ରୋହର ପ୍ରଥମ ପ୍ରକାଶ ଆମେ ଲକ୍ଷ୍ୟ କରୁଁ, ଯାହାର କି ଅନ୍ତିମ ଅଭିବ୍ୟକ୍ତି ହେଉଛି କବିଙ୍କର ହିସାବ-ନିକାଶ କବିତା । କିନ୍ତୁ ଏହି ଇନ୍ଦ୍ରିୟ-ପର ପ୍ରେମ ବିରହର ଅଗ୍ନିପରେ ସିକ୍ତ ଓ ସ୍ନିଗ୍ଧ ହୋଇ ଦିନେ ରୂପୋତ୍ତର ଓ ଇନ୍ଦ୍ରିୟାତୀତ ହୋଇଉଠିଛି, ଏବଂ କବିଙ୍କ ନିଜ ଭାଷାରେ—

"ପାଇଲି ମୁଁ ସ୍ନେହରନ୍ଧ୍ର ଦେହେ ଅବଗାହି
ମୁକ୍ତା ପାଇ ଫେରିଛି ମୁଁ ଶୁକ୍ତା ଖୋଜି ଯାଇ;
ପ୍ରିୟାର ସରସ ସ୍ନେହ ଦେହ-ଅବସାନ
କରିଅଛି ଶେଷେ ମୋର । × × ×
× × × × ପ୍ରଣୟ ଆମର
ରୂପ-ପର ଥିଲା ଦିନେ ଆଜି ରୂପୋତ୍ତର ।"

( ଦେହ ଓ ସ୍ନେହ )

ଏହି ରୂପଜ ପ୍ରେମ ରୂପୋତ୍ତର ହେବା ସଙ୍ଗେ ଦିନେ ତାହା ଏପରି ଏକ ସ୍ତରରେ ଆସି ଉପନୀତ ହୋଇଛି, ଯେତେବେଳେ ନିଜର ମାଧୁରୀରେ ସମଗ୍ର ବିଶ୍ୱକୁ ସେ ମଧୁମୟ କରିବା ସଙ୍ଗେ ଶିଳ୍ପୀପ୍ରାଣର ଶୁଦ୍ଧ ଚେତନା ସତ୍ତାକୁ ଅଖଣ୍ଡ

ବିଶ୍ୱ-ଜୀବରେ ମହାନ୍ ଚେତନ ସତ୍ତା ସନ୍ଥତ୍ ସମ୍ମିଳିତ କରାଇ ଜୀବନଦେବତାଙ୍କର ରହସ୍ୟ ଉପଲବ୍ଧି ପାଇଁ ଅନ୍ତର୍ଭୂକ୍ତ-କକ୍ଷର ଊର୍ଦ୍ଧ୍ୱବାତାୟନ କବିପ୍ରାଣରେ ଉନ୍ମୋଚନ କରିଦେଇଛୁ । "ଏହି କେତେ ମୁହୂର୍ତ୍ତିର ଗଭୀର ପ୍ରଣୟ, ନିଖିଳ-ଜୀବନେ ବ୍ୟାପି କରୁ ମଧୁମୟ"—କବିଙ୍କର ଏଇ ପ୍ରଣୟାଦର୍ଶ ଯେତେବେଳେ ବାସ୍ତବ ହେବା ସଙ୍ଗେ ଜୀବନଦେବତାଙ୍କର ଚେତନମୟ ବିଶ୍ୱରୂପ ଉପଲବ୍ଧିରେ ଶିଳ୍ପୀପ୍ରାଣ ତନ୍ମୟ ହୋଇପଡ଼ନ୍ତି ଏବଂ ଶିଳ୍ପୀପ୍ରାଣର ପ୍ରଣୟ ସାଧନା ଊର୍ଦ୍ଧ୍ୱାୟିତ ହୋଇ ଯେତେବେଳେ ଅଧ୍ୟାତ୍ମସାଧନାରେ ରୂପାନ୍ତର ଲାଭ କରିଛି; କିମ୍ବା କବିଙ୍କର ଶିଳ୍ପମାନସ ଏ ସ୍ତରରେ ନାରୀକୁ କେବଳ ପୁରୁଷର ପ୍ରେୟସୀ ବୋଲି କଳ୍ପନା ନ କରି ନାରୀକୁ ସମଗ୍ର ମାନବଜାତିର ଜନୟିତ୍ରୀ, ପୁରୁଷର ନିତ୍ୟସଙ୍ଗିନୀ ଓ କଲ୍ୟାଣମୟୀ ସର୍ବଂସହା ଧରିତ୍ରୀରୂପିଣୀ ବୋଲି କଳ୍ପନା କରି ତାର ପାଦଦେଶରେ ପ୍ରଣତ ବାଣୀ ଗାଇଛୁ :—

"ଜନୟିତ୍ରୀ ମାନବଜାତିର
ହେ ନାରୀ, କରଇ ନମସ୍କାର" ।

( ନବ ଜନମ )

ପୁଣି ସମଗ୍ର ବିଶ୍ୱରେ ଏକ ମହାଜୀବନର ସତ୍ତା ଓ ନିଖିଳ ଜୀବରେ ଏକ ମହାନ୍ ଶିଳ୍ପଗୁରୁଙ୍କ ଉପଲବ୍ଧି କରି କବି ଯେତେବେଳେ ଗାଇଛନ୍ତି :

" × × × ରେଣୁଁ ରଚିଯାଏ
ଊର୍ଦ୍ଧ୍ୱେ, ଆଗେ, ଚତୁର୍ଦ୍ଦିଗେ, ଯହିଁ ମୁଁ ପକାଏ
ଦୃଷ୍ଟି ମୋର, ତହିଁ ପାଏ ବିରାଟ ସ୍ରଷ୍ଟାର
ସତ୍ୟ-ସ୍ପର୍ଶ ମୋ ଇନ୍ଦ୍ରିୟେ, ମୋ ପାଦ ସଞ୍ଚାର
ଯେ ଧୂଳି ରେଣୁରେ ହୁଏ, ତହିଁ ଭଗବାନ
ଓତପ୍ରୋତେ ଛନ୍ତି ରହି, ନଭେ ଲକ୍ଷମାନ
ତାରାଗଣେ ପୁଣି ସେହି, ତାଙ୍କୁ ଖୋଜିବାରେ
ପର୍ବତେ ପଶିବି କିମ୍ପା ? ମୋର ଗୃହଧାରେ
ଏ ଧରଣୀ ରଂଧ୍ରେ ରଂଧ୍ରେ, ଅଣୁ ଅଣୁ ଭେଦି
ଅଛନ୍ତି ସେ, ଖିଳବିଶ୍ୱ ତାଙ୍କ ପୂଜାବେଦୀ ।"

( ବିଶ୍ୱରୂପୀ )

କିମ୍ବା

"ଚରଣ ତଳୁ ଅନ୍ତରୀକ୍ଷ ଭେଦି ମହାବ୍ୟୋମ ସ୍ପର୍ଶେ ଯେ ଦେଉଳ
ଏଇ ଯେ ଧରା ସେ ପୂଜାର ବେଦୀ ତାର ନକ୍ଷତ୍ରେ ଆଲୋକିତ ଚାନ୍ଦୁଆ ।

ଅତୃପ ତହିଁ ଦେବତା ଅଛୁ ବସି ଅମୃତ ତାର ନେଇ ସଦା ମେଲି,
ଏକଥା କେବେ ନୋହିଛୁ ଶ୍ରୁତଗତ, ହତାଶେ ତହୁଁ ଆସିଛୁ କେଉଁ ଫେରି ।"
( ବିଶ୍ୱବିଦ୍ୟାଳୟ )

କବିଗୁରୁ ରବୀନ୍ଦ୍ରନାଥଙ୍କର "ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ, ଅସଂଖ୍ୟ ବନ୍ଧନ ମାଝେ ମହାନନ୍ଦମୟ, ଲଭିବ ମୁକ୍ତିର ସ୍ୱାଦ—( ମୁକ୍ତି )—" ଅନୁଭୂତି ପରି କବି ମାନସିଂହ ମଧ୍ୟ ପର୍ବତ କନ୍ଦରରେ ପଶି ମୁକ୍ତି ସନ୍ଧାନ କରିବାକୁ ଶ୍ରେୟସ୍କର ମଣିନାହାନ୍ତି । ବରଂ କବିଙ୍କର ଚତୁଃପାର୍ଶ୍ୱରେ ଯେଉଁ ବିଶ୍ୱଦେବାଳୟ ରହିଛି, ତାଆରି ମଧ୍ୟରେ ହିଁ ସେ ଦେବସ୍ପର୍ଶ ଅନୁଭବ କରିବା ସଙ୍ଗେ ବିଶ୍ୱର ପ୍ରତ୍ୟେକ ପଦାର୍ଥ ମଧ୍ୟରେ ସତ୍ୟ ଓ ମୁକ୍ତିମର୍ମ ସନ୍ଧାନ କରିପାରିଛନ୍ତି । "I belive a leaf of grass is as less than the journey work of the stars."—କବି ହୁଇଟମ୍ୟାନ୍‌ଙ୍କର ବିଶ୍ୱାସ ଭଳି ରେଣୁରୁ ରବି ପର୍ଯ୍ୟନ୍ତ ମୃତ୍ତିକାର ଦୂର୍ବାଦଳରୁ ନୀଳାକାଶର ତାରକା ପର୍ଯ୍ୟନ୍ତ ସର୍ବତ୍ର ମହାଜୀବନର ସତ୍ୟ ଓତପ୍ରୋତ ଭାବେ ରହିଥିବାର ବିଶ୍ୱାସରେ ଶିଳ୍ପୀପ୍ରାଣ ବଳୀୟାନ ହୋଇଉଠିଛି । ସମଗ୍ର ବିଶ୍ୱ-ଦେବାଳୟର ଅନ୍ତର୍ଲୀନ ଦେବତା ସେହି ବିଶ୍ୱସ୍ରଷ୍ଟା ଶ୍ରେଷ୍ଠ ରୂପ-ଶିଳ୍ପୀଙ୍କ ନିକଟରେ କବି ନିଜର ସମଗ୍ର ଜୀବନକୁ ନୈବେଦ୍ୟ ରୂପରେ ଅର୍ପଣ କରି, ତାଙ୍କରି ପ୍ରୟୋଜନ ସିଦ୍ଧି ନିମିତ୍ତ ସହାସ୍ୟମୁଖରେ ସମସ୍ତ ଯନ୍ତ୍ରଣା ବରଣ କରି ତେଣୁ ଗାଇଛନ୍ତି—

ନିବିଡ଼ ଦୁଃଖାନଳେ ଜଳି ମୁଁ ମରେଁ ପଛେ
ତମରି ଲୀଳା ପରକାଶୁ ହେ,
ନିବିଡ଼ ନିରାଶାର ଅନ୍ତ ଭେଦି ପ୍ରଭୋ
ଗଭୀର ବିଶ୍ୱାସ ଆସୁ ହେ !

× × ×

ଆଜି ମୋ ପ୍ରାଣେ ଚାଲୁ ସେହି ତ ଆୟୋଜନ,
ବକ୍ଷେ ତବ ଲାଗି ଟାଣିର ଇନ୍ଧନ,
ମୋର ଏ ହୋମାନଳ ଦଗଧ-ଛତା-ଧୂଳି
ଲୋଡ଼ାରେ ତବ ହେଲେ ଆସୁ ହେ !
( ତୁମର ପ୍ରୟୋଜନ )

ଅତୀନ୍ଦ୍ରିୟ ଜଗତର ନିବିଡ଼ ରହସ୍ୟାନୁଭୂତି କବି ସମୟରେ ସ୍ୱୀୟ ପ୍ରାଣରେ ଅନୁଭବ କରିଥିଲେ ହେଁ ଜୀବନ ଜଗତ ପ୍ରତି ଶିଳ୍ପୀପ୍ରାଣର ମୌଳିକ ସହାନୁଭୂତି ଓ ମଣିଷର ଦୁଃଖ ବିପାକ ପ୍ରତି ଅନ୍ତରର ସମବେଦନା ନିଜ ଶିଳ୍ପସୃଷ୍ଟିରେ ସର୍ବତ୍ର ସେ ଅକ୍ଷୁଣ୍ଣ ରଖିଛନ୍ତି । ପ୍ରେମରାଜ୍ୟରେ କବି ମାନସିଂହ ଯେପରି ନୂତନ ବିପବ

ଆନୟନ କରିଛନ୍ତି, କେବଳ ପ୍ରେମ ପାଇଁ ଜୀବନର ବୃହତ୍ତର ବିପ୍ଳବକୁ ଅବହେଳା ନ କରି ତାର ସ୍ୱାଗତ ଗୀତି ମଧ୍ୟ ସେହିପରି ସେ ରଚନା କରିଛନ୍ତି । ଜୀବନ ଓ ଜଗତର ସହସ୍ର ଘାତପ୍ରତିଘାତର ଦାବୀ ତାଙ୍କର ଅନ୍ତର ମଧ୍ୟରେ ନିଃସ୍ୱନିତ ହୋଇ-ଉଠିଛି । ବାସ୍ତବ ଜଗତ ସହିତ ଶିଳ୍ପୀର ପ୍ରାଣତନ୍ତ୍ରୀର ସଂଯୋଗ ଓ ଜୀବନ ପ୍ରତି କବିହୃଦୟର ସହଜାତ ସହାନୁଭୂତି ହିଁ ଶିଳ୍ପସୃଷ୍ଟିର ମୂଳଧର୍ମ । ଏହି ମୌଳିକ ଶିଳ୍ପଧର୍ମ ମାନସିଂହ କାବ୍ୟ କବିତାରେ ପରିଲକ୍ଷିତ ଏବଂ ତାହା କୌଣସି ପ୍ରଚ୍ଛଳିତ କଣ୍ଠର ସାମୟିକ ଉତ୍ତାପ ଉତ୍ତେଜନାକୁ ଆଶ୍ରୟ କରି ପ୍ରକାଶିତ ହେବା ପରିବର୍ତ୍ତେ ଶିଳ୍ପୀକଣ୍ଠର ସ୍ୱରଲାଳିତ୍ୟ ଓ କମନୀୟତାର ଭିତରଦେଇ ଆତ୍ମପ୍ରକାଶ କରିଛି । ବିଶ୍ୱର ଦଳିତ, ଲାଞ୍ଛିତ ମାନବିକତା ପ୍ରତି କବି ତେଣୁ ସହାନୁଭୂତି-ସିକ୍ତ କୋମଳ କଣ୍ଠରେ ସଂଗ୍ରାମୀ ସ୍ୱରରେ ଗାଇଛନ୍ତି—

ପ୍ରାଚୀନରେ ଚୂର୍ଣ୍ଣ କରି ଗଢ଼ ତବ ନୂତନ ସଂସାର
ନିଜର ଶକ୍ତିରେ ଚାହିଁ, ଶେଷ ହେଉ ଆଶିଷ ଭିକ୍ଷାର;
ଅଭିଜାତ ଚୂର୍ଣ୍ଣ ହେଉ, ଧନ ହେଉ ସମାନ ବଣ୍ଟିତ,
ଜୀବନର ସର୍ବସୁଖୁଁ ଦୀନଦୁଃଖୀ ନୁହନ୍ତୁ ବଞ୍ଚିତ ।

ବିଜ୍ଞାନ ସମୃଦ୍ଧ କରୁ ନାନାସୁଖେ ମାନବଜୀବନେ
ଉପେକ୍ଷିତ ଭଗବାନ ଗୃହିଁଆନ୍ତୁ ନଭ-ବାତାୟନେ ।
ଲାଞ୍ଛନା-ଗଞ୍ଜଣା-ରୋଗ-ଦୈନ୍ୟେ କରି ଜୀବନ ଜର୍ଜ୍ଜର
କି ଲଭି ଅଜ୍ଞାତ ଭୟେ ମୁଖେ ଡାକ 'ଈଶ୍ୱର' 'ଈଶ୍ୱର' !

ଉଠ ସର୍ବେ, ନାଶ ମନୁ ଏକାବେଳେ ଏ ଅନ୍ଧବିଶ୍ୱାସ,
ନୂତନ ସୃଷ୍ଟିରେ କର ଅନ୍ୟାୟର ନିଃଶେଷ ବିନାଶ;
ବ୍ୟର୍ଥ ଯଦି ହୁଏ ତାହା, ଖୋଜିନେବା ମୁକ୍ତି ବିନାଶରେ
ନରଦର୍ପେ ଥରୁ ଜ୍ୱଳା ଈଶ୍ୱରର ସିଂହାସନ ଥରେ ।''

( ବିଶୃଙ୍ଖଳ ସୃଷ୍ଟି )

ଏ ଯୁଗର ସୃଷ୍ଟି-ବିଶୃଙ୍ଖଳାରେ ଶିଳ୍ପୀପ୍ରାଣ ବିଚଳିତ କେବଳ ହୋଇନାହିଁ, ସମାଜର ସମସ୍ତ ଅନ୍ୟାୟ ବୈଷମ୍ୟକୁ ନିଃଶେଷ କରିବାପାଇଁ ମନୁଷ୍ୟକୁ ଆତ୍ମଶକ୍ତି-ସଚେତନ ଓ ବିପ୍ଳବୀ ହେବାକୁ ଏବଂ ନିଜର ପୌରୁଷଦର୍ପର ପରିଚୟ ସ୍ରଷ୍ଟାଙ୍କ ନିକଟରେ ଦେବାକୁ ଆହ୍ୱାନ ମଧ୍ୟ ସେ କରିଛି । କବି ନିଜେ ମଧ୍ୟ ଏହି ଆତ୍ମ-ଶକ୍ତିପର ମହୀୟାନ ହେବାକୁ ସ୍ରଷ୍ଟାଙ୍କ ନିକଟରେ ନିବେଦନ ଜଣାଇ କହିଛନ୍ତି—

''ଦିଅ ମତେ, ଶକ୍ତି ଦିଅ, ଦୀନଦୁଃଖୀ ଜନେ
ସୁଖୀ ମୁଁ କରିଏଁ ହରି, ରକ୍ତ ଅନଶନେ

ଅମୃତ ମୁଁ ଦେଏ ଆଣି, ବାସ-ବସ୍ତ୍ରସ୍ଥାନେ
ପିନ୍ଧାଏ ମୁଁ ଶନାଂଶୁକ; ଦେଅ, ଏକ ଦିନେ
ଜଗତରୁ ଦୁଃଖ ମୁହିଁ ପୋଛିଦେବି କରେ,
ଦେଖିବି ଆନନ୍ଦରେଖା ନିଖିଳ ମୁଖରେ ।"

ଅମାବାସ୍ୟା ଓ ପୂର୍ଣ୍ଣିମାର ମିଳନପୀଠ ଏଇ ମର୍ତ୍ତ୍ୟଧାମକୁ ଛାଡ଼ି ସ୍ୱର୍ଗଲୋକରେ ନିଜର ମୁକ୍ତି-ସନ୍ଧାନ କବି କରିନାହାନ୍ତି, ଏହି ମର୍ତ୍ତ୍ୟଧାମର ଅଗଣନ ନରନାରୀଙ୍କର ହାସ୍ୟ-ଅଶ୍ରୁର ରେଖାରଞ୍ଜିତ ବିଚିତ୍ର ଚିତ୍ରଶାଳା ମଧ୍ୟରେ ହିଁ ମାନବାତ୍ମାର ଅଶ୍ରୁଭାଷାକୁ ଲିପିବଦ୍ଧ କରିବାରେ ଓ ଜନ୍ମଜନ୍ମାନ୍ତର ଧରି ପୀଡ଼ିତ ନେତ୍ରର ନୀର ପୋଛିବାରେ ତାଙ୍କର ପ୍ରକୃତ ସାଧନାପଥ ଓ ସିଦ୍ଧି ନିହିତ ବୋଲି ସେ ଅନୁଭବ କରିଛନ୍ତି—

"ଜୀବନେ ଜୀବନେ ଜନ୍ମି ରକ୍ତ ମୋର ଦେଇ
ମେଣ୍ଟିବି ମାନବଦୁଃଖ, ଦୁଃଖ ଅଙ୍ଗେ ନେଇ ।"

( ମୁକ୍ତି ନାହିଁ ମାଗେ )

ଜୀବନ ପ୍ରତି ନିବିଡ଼ ଐକ୍ୟ ଓ ସହାନୁଭୂତି ଥିବା ଯୋଗୁ ହିଁ ତ ସମାଜ-ପରିତ୍ୟକ୍ତା ଓ ଯୌବନ-ଅନ୍ତଃଶରା ଅନୂଢ଼ା 'କାଞ୍ଚନ ଅପା'ର ମର୍ମବିଦାରକ ଅନ୍ତର ବାଣୀ କବିଙ୍କ ଶିଳ୍ପ-ତୂଳୀରେ ରୂପ-ପରିଗ୍ରହ କରି ଜୀବନ୍ତ ହୋଇଉଠିଛି (ଅନୂଢ଼ା) । କେଉଁ ଅଜ୍ଞାତ ପଲ୍ଲୀକୋଣରେ ନିର୍ବାହା ନାରୀ 'ମଣି'ର ବନ୍ଧ୍ୟା ନାରୀତ୍ୱର ମାତୃତ୍ୱ କାମନାର ସକରୁଣ ହାହାକାର, କବି-ଲେଖନୀରେ ରୂପାୟିତ ହେବା ସଙ୍ଗେ ସମାଜର ଧର୍ମଗ୍ଲାନି, ପତାରଣା ଓ ବ୍ୟଭିଚାର ପ୍ରତି ବିଦ୍ରୋହୀ ହୋଇ ସମାଜ ବିରୁଦ୍ଧରେ ଏକ ନିର୍ଭୀକ ସାକ୍ଷୀ ରୂପରେ ଦଣ୍ଡାୟମାନ ହୋଇଛି ( ତୀର୍ଥଯାତ୍ରୀ ) । ପୁଣି ଯାଦବନ୍ଦିନୀର ଅଶ୍ରୁବାଷ୍ପ ଆକାଶ କକ୍ଷ ପରିହାର କରି ଶିଳ୍ପୀହୃଦୟର ସହାନୁଭୂତି ସ୍ପର୍ଶରେ କବି-ଲେଖନୀରେ ଦାନାବାନ୍ଧି ହୋଇ ଆତ୍ମପ୍ରକାଶ କରିବା ସଙ୍ଗେ ଏ ଦେଶର ଅଗଣନ ରସପିପାସୁ ପାଠକବୃନ୍ଦଙ୍କୁ ନିଜ ଦେଶର ଭାବୈଶ୍ୱର୍ଯ୍ୟ ପ୍ରତି ଆକୃଷ୍ଟ କରାଇ ରସସିକ୍ତ ଓ ଅଶ୍ରୁମୁର୍ଚ୍ଛିତ କରି ରଖିଛି । ଏହି ସହଜାତ ଶିଳ୍ପ-ସହାନୁଭୂତି ଓ ବେଦନାବିଦ୍ଧ କବିହୃଦୟର ଆତ୍ମପ୍ରକାଶ ପୁଣି ଆମେ ବନ୍ୟାଧାରାରେ ଲକ୍ଷ୍ୟ କରୁଁ, ନିରକ୍ଷରା ପଲ୍ଲୀ-ବାଳିକା ଜେମାର ମର୍ମ-କାହାଣୀସମ୍ବଳିତ କବିଙ୍କର ଅନ୍ୟତମ ପ୍ରସିଦ୍ଧ ଗ୍ରନ୍ଥ 'ଜେମା' କାବ୍ୟରେ । ପୁଣି ସମସାମୟିକ ଯୁଗ ଓ ମାନବଜୀବନର ବିଶ୍ୱସ୍ତ ଲିପିକାର ଭାବରେ ମାନସିଂହ-ପ୍ରତିଭାର ଉଜ୍ଜ୍ୱଳ ନିଦର୍ଶନ ହେଉଛି ତାଙ୍କର 'କମଳାୟନ' କାବ୍ୟ । ସମସାମୟିକ ଭାରତର ଓ ଆନ୍ତର୍ଜାତିକ ଭାବଧାରାର ପ୍ରକୃଷ୍ଟ ପ୍ରତିବିମ୍ବନ ଏହି କାବ୍ୟଟିରେ ଆମେ ପାଇଥାଉଁ । ବିଶେଷତଃ ନୂତନ ଭାରତର ସକଳ ସଂଗ୍ରାମ, ସାଧନା, ସ୍ୱପ୍ନ, ବିଫଳତା ଓ ଭବିଷ୍ୟତ ଏଥିରେ ଚର୍ଚ୍ଚିତ କରାଯାଇଛି ଏବଂ

ପ୍ରାଚୀନ ଭାରତର ସନାତନ ବାଣୀ ମଧ୍ୟଦେଇ ନୂତନ ଭାରତର ଆଶା ଆକାଙ୍କ୍ଷା ଓ ସ୍ୱପ୍ନସିଦ୍ଧିର ସମ୍ଭାବନା ଏଥିରେ ଫୁଟିଉଠିଛି । କମଲ ଓ କରୁଣାର ଜୀବନା-ଲେଖ୍ୟ ତେଣୁ କେବଳ ଭାରତୀୟ ଜାତୀୟ ଜୀବନ ବା ଆମର ସ୍ୱାଧୀନତା ସଂଗ୍ରାମର ଐତିହାସିକ ପ୍ରମାଣପତ୍ର ମାତ୍ର ନୁହେଁ, ଏହା ଏ ଯୁଗର ବିପର୍ଯ୍ୟସ୍ତ ସମାଜ-ବାସ୍ତବତା ଓ ସମ୍ଭାବନାପୂର୍ଣ୍ଣ ଯୁଗୀୟ ଜୀବନାଦର୍ଶ ପ୍ରତି ଶିଳ୍ପୀପ୍ରାଣର ଅନନ୍ୟସାଧାରଣ ସହାନୁଭୂତି ଓ ସମ୍ବେଦନଶୀଳତାର ପରିଚାୟକ ମଧ୍ୟ ।

ଜୀବନପ୍ରତି ଏହି ଅନନ୍ୟସାଧାରଣ ସହାନୁଭୂତି ଓ ମୈତ୍ରୀସଂଯୋଗ ସ୍ଥାପନ ମଧ୍ୟରେ ହିଁ କବିଙ୍କର ଶିଳ୍ପଧର୍ମ ଓ ଶିଳ୍ପଦୃଷ୍ଟି ନିହିତ । କବି ରୂପଜଗତକୁ ଛାଡ଼ି ଅରୂପଜଗତର ଅଧିବାସୀ ସମୟରେ ହୋଇଥିଲେ ହେଁ ଏବଂ ଆତ୍ମାର ଇନ୍ଦ୍ରିୟାଭିସାର ସମୟରେ ଅତୀନ୍ଦ୍ରିୟ ଜଗତର ନିତ୍ୟ ସୁଯସ୍ଥଳୀକୁ ଲକ୍ଷ୍ୟ ରଖି ଗତି କରିଥିଲେ ହେଁ ମର୍ତ୍ତ୍ୟମାନବର ଜୀବନ ସହିତ ଶିଳ୍ପୀ ଜୀବନର ଅନ୍ତଃନାଡ଼ୀର ସଂଯୋଗ ବରାବର ଅଖଣ୍ଡ ଓ ଅକ୍ଷୁଣ୍ଣ ରହିଛି । ମହତ୍ ଶିଳ୍ପୀ ଅସୀମ ଓ ଚିରନ୍ତନ କଳ୍ପଲୋକର ଅଧିବାସୀ ଓ ଅଂଶୀଦାର ହେଲେହେଁ ତାଙ୍କ ଶିଳ୍ପସୃଷ୍ଟିରେ ଅଙ୍କିତ ସମୟ ଓ ଜୀବନର ଖଣ୍ଡିତ ଚୈତନ୍ୟର ମୁଦ୍ରା ସ୍ପଷ୍ଟ ଲକ୍ଷଣୀୟ ହେବା ସ୍ୱାଭାବିକ । କାରଣ ସୃଷ୍ଟି ସମୟରେ ଶିଳ୍ପୀ ଜଣେ ସାଧାରଣ ମନୁଷ୍ୟମାତ୍ର । ସମୟ ଓ ପାରିପାର୍ଶ୍ୱିକ ଜୀବନର ଅଲଙ୍ଘନୀୟ ପ୍ରଭାବକୁ ଏଡ଼ିଦେଇ ଏକ ଅଖଣ୍ଡ ଅନାବିଲ ଆନନ୍ଦଧାମକୁ ଶିଳ୍ପୀ-ଆତ୍ମା ଯେତେବେଳେ ଅଗ୍ରସର ହେଉଥିଲେ ମଧ୍ୟ ପରିପାର୍ଶ୍ୱର ପ୍ରଭାବକୁ ଅଲକ୍ଷ୍ୟରେ ଆତ୍ମସାତ୍ କରି ଶିଳ୍ପୀ ନିଜର ଏକାନ୍ତ ଆପଣାର କରିନେଇଥାଏ । ତେଣୁ ସମୟ ଓ ଜୀବନର ଖଣ୍ଡିତ ଚୈତନ୍ୟର ପ୍ରଭାବ ଏବଂ ମର୍ତ୍ତ୍ୟମାନବର ସଫଳ ଓ ବିଫଳ ଚିତ୍ର କବି ମାନସିଂହଙ୍କ ସୃଷ୍ଟିରେ ମଧ୍ୟ ଲକ୍ଷଣୀୟ । ମର୍ତ୍ତ୍ୟମାନବର ବିପନ୍ନ ଦୁର୍ଦ୍ଦଶାରେ କବି-ଚକ୍ଷୁ କେତେବେଳେ ଅଶ୍ରୁସଜଳ ହୋଇଉଠିଛି ତ କେତେବେଳେ ତାର ସାଧନ ଓ ସିଦ୍ଧି ସମ୍ଭାବନାରେ ଶିଳ୍ପୀପ୍ରାଣ ସ୍ୱପ୍ନ ଓ ବିଶ୍ୱାସରେ ମୁଗ୍‌ଧ ଓ ଆତ୍ମହରା ହୋଇ-ଉଠିଛି । ରସାତଳଗାମୀ ମାନବପ୍ରାଣର କୁତ୍ସିତ ସ୍ୱରୂପ ଅବଲୋକନରେ କବିହୃଦୟ କେତେବେଳେ ନୈରାଶ୍ୟକାତର ହୋଇଉଠିଛି ତ ଊର୍ଦ୍ଧ୍ୱପଥିକ ମାନବାତ୍ମାର ବିଜୟଯାତ୍ରା ଲକ୍ଷ୍ୟ କରି କବିପ୍ରାଣ କେତେବେଳେ ଆନନ୍ଦ ଓ ବିସ୍ମୟମଗ୍ନ ହୋଇ-ପଡ଼ିଛି । କିନ୍ତୁ ଶିଳ୍ପୀପ୍ରାଣର ସକଳ ଦୁଃଖାଶ୍ରୁ ଓ ଆନନ୍ଦ କୋଳାହଳ ମଧ୍ୟରେ ମାନବ ପ୍ରତି ଓ ମାନବର ଚିରଊର୍ଦ୍ଧ୍ୱଗ ନିର୍ମଳ ସ୍ୱରୂପ ପ୍ରତି ନିଜର ବଳିଷ୍ଠ ଆସ୍ଥା କବି କେତେବେଳେ ହରାଇନାହାନ୍ତି । ତେଣୁ ସକଳ ଅକଲ୍ୟାଣ ପରାଜୟ ସତ୍ତ୍ୱେ ଏହି ବାସ୍ତବ ଧରଣୀକୁ ନିଜର ସାଧନାସ୍ଥଳୀ ଓ ଧରଣୀର ତୁଚ୍ଛ ମୃତ୍ତିକାକୁ ନିଜ ବିଜୟର ଚନ୍ଦନ ତିଳକ ବୋଲି ଜ୍ଞାନ କରି କବି ଗାଇଛନ୍ତି—

"ସର୍ବ ଅକଲ୍ୟାଣ ମେଲେ, ହେ ଧରଣୀ, ତେଣୁ ତୋ ଆଶ୍ରୟ<br>ପ୍ରିୟ ଏଡ଼େ, ସର୍ବବ୍ୟାପୀ ପରାଜୟେ ଜୟ-ସୁଖମୟ ।"

( ଧରଣୀ ବାସ )

ପୁଣି ଅମୃତ ସନ୍ତାନର ଅଧଃପତିତ ଚିତ୍ର—

"ବିରାଟ ସେ ଆଜି ଧାଉଁଛି କ୍ଷୁଦ୍ର ଆଶେ,
ସନାତନ ପ୍ରାଣ ବିକୁଛି କ୍ଷଣିକ ପାଶେ,
ସୁନ୍ଦର ସେ ଗୋ ଭୁଲୁଛି ଇତର ରୂପେ,
ଚିର ଉତ୍ତୁଙ୍ଗ ଖସୁଛି ଅତଳ କୂପେ ।"

( ନିଦ୍ରିତ ଭଗବାନ )

କବି ନିଜ ତୂଳୀରେ ଅଙ୍କନ କରିଥିଲେହେଁ ପରମୁହୂର୍ତ୍ତରେ ନର-ନାରାୟଣରେ ଅମୃତ ସ୍ୱରୂପ ପ୍ରତି ଆସ୍ଥାବାନ୍ ହୋଇ ଗାଇଛନ୍ତି—

ଏବେ କାଠ ପଥର ନ ପୂଜି ଆସ ପୂଜି ଜୀବନ୍ତ ଦେବତା,
ଯା ଆଖିରୁ ଲୁହ ଯିବ ବହି କହିଦେଲେ ପଦେ ମଧୁକଥା ।
ବନ୍ଦ କର ମନ୍ତ୍ର ପାଠ ତବ, ବନ୍ଦ କର କର୍ପୂର ଆରତି,
ଦେଉଳର ବାହାରେ ଦେବତା ହାତପାତି ଉଭା ରହିଛନ୍ତି ।
ଦେବ-ଭୋଗ ନିରନ୍ନରେ ଦିଅ, ଦେବ-ସେବା ହେଉ ମାନବରେ,
ଦେବତାର ଦରଶନ ଲଭ ମାନବର ପ୍ରତି ଘରେ ଘରେ ।
ସେ ପୂଜାରେ ମୂକ ଭଗବାନ ବାକ୍‌ମୟ ଭୂରତ ହୋଇବେ,
ଦିଅଁ ହୋଇ ପ୍ରତିବେଶୀ ନାରାୟଣୀ ବାଣୀ ଶୁଣାଇବେ ।"

( ଦେବପୂଜା )

ଧର୍ମଧ୍ୱଜୀ ଅନ୍ଧ ପୌରୋହିତ୍ୟ ପ୍ରତି କବିପ୍ରାଣର ଆକ୍ଷେପ ଓ ସଂସ୍କାରଲିପ୍ସା ଏ ପଂକ୍ତିଗୁଡ଼ିକରେ ଯେପରି ପ୍ରକଟିତ, ତ୍ୟାଗ ସେବାର ମାହାତ୍ମ୍ୟ ଓ ମନୁଷ୍ୟ ପ୍ରତି ଶିଳ୍ପୀର ଅସୀମ ଶ୍ରଦ୍ଧା ଓ ବିଶ୍ୱାସ ସେହିପରି ପ୍ରକାଶିତ । ଜୀବନର ଅଜସ୍ର ତିକ୍ତ ଅଭିଜ୍ଞତା ଓ ଅହେତୁକ ଅଭିଶାପକୁ ଶିଳ୍ପ-ତୂଳୀର ସ୍ପର୍ଶରେ କମନୀୟ କରି ନିଜ ବ୍ୟକ୍ତିତ୍ୱ ଓ ଦେବତ୍ୱର ବିକାଶ ଲାଗି କବି-ଅନ୍ତରରେ ଶିଳ୍ପୀମାନବ ଯେପରି ସଂଗ୍ରାମରତ, ବିଶ୍ୱର ପ୍ରତ୍ୟେକ ମାନବର ଅନ୍ତରରେ ଏହି ମହନୀୟ ଦେବତ୍ୱର ବିକାଶ ପାଇଁ ଦ୍ୱନ୍ଦ୍ୱ ଲାଞ୍ଛନାକୁ ବରଣ କରି ଅହରହ ସଂଗ୍ରାମରତ ହେବାକୁ ବରେଣ୍ୟ ଜୀବନ-ମାର୍ଗର ସନ୍ଧାନ ମଧ୍ୟ ତାଙ୍କ ସୃଷ୍ଟିରେ ସେହିପରି ପ୍ରଦର୍ଶିତ ।

"ଅରଣ୍ୟର ବୃକ୍ଷ ପରି ମୁଁ କି ମଥା ନ ତୋଳିବି ନଭେ
ପ୍ରଭଞ୍ଜନ, ବଜ୍ରବୃଷ୍ଟି ସଙ୍ଗେ ଲଢ଼ି ଉନ୍ନତ ଗରବେ ?
ବିଧାତା ନିର୍ଦ୍ଦେଶ ବୋଲି ନିଜେ ମେଲି ଘଟଣ ସରିତେ
ହେଉଥିବି ଚାଳିତ କି ବାରମ୍ବାର ହରାଇ ବ୍ୟକ୍ତିତ୍ୱେ ?

ବିଦ୍ରୋହ ଆସିଛୁ ଆଜ, ଯେ ବିଦ୍ରୋହ ଲଙ୍ଘନାରୁ ଆସେ,
ବାଧାପ୍ରାପ୍ତ ସ୍ରୋତ ସମ ଧାଏଁ ଯାହା ବ୍ୟଗ୍ର ମୁକ୍ତି ଆଶେ ।
ଆଜ ମୁଁ ବିଶ୍ବରେ ମନେ ପୋଛିଦେଇ ସକଳ ଅତୀତ
ରଚିବି ମୋ ଜୀବନରୁ ନବ ଏକ ମହାନ ସଙ୍ଗୀତ ।
ପାପ ଯାହା କୁଣ୍ଠିତ ଯା' ଲଙ୍ଘନ ଯା'ଛିଣ୍ଡି ତା' ବନ୍ଧନ
ସତ୍ୟ, ଶିବେ ଶବଳିତ କରିବି ଏ ବିକଳ ଜୀବନ ।
ଖିଆଲୀ ବିଧାତା ଲଗି ଅନୁଯୋଗ ଅବା ଅଭିଯୋଗ
ନରଚି କଷଣେ, ଲୁହେ ନରଲାଗି ରଚିଯିବି ଯାଗ ।''
( ଶେଷ କଥା )

ନିଜର ଆତ୍ମଶକ୍ତିରେ ଆସ୍ଥାବାନ୍ ହୋଇ, ବ୍ୟକ୍ତିତ୍ୱର ବିକାଶ ସକାଶେ ଜୀବନର ଝଡ଼ଝଞ୍ଜାକୁ ଅସ୍ୱୀକାର କରି ବଳିଷ୍ଠ ପଦକ୍ଷେପରେ ଗଢ଼ି କରିବାକୁ ମନୁଷ୍ୟକୁ ଆହ୍ୱାନ କରିବା ସଙ୍ଗେ ଅଖଣ୍ଡ ମାନବଜୀବନକୁ ସତ୍ୟ ଶିବର ଲୀଳାଭୂମି କରିବାପାଇଁ ଅନ୍ୟ ପାଇଁ ଅଶ୍ରୁ ତପସ୍ୟାରେ ନିମଗ୍ନ ରହିବାକୁ ନିର୍ଦ୍ଦେଶମାତ୍ର ନୁହେଁ, ନିଜ କର୍ମ ଓ ଚିନ୍ତାରେ ମଧ୍ୟ ଏହି ମହାଦୀକ୍ଷାକୁ ଗ୍ରହଣ କରି କବି କହିଛନ୍ତି—

'ତମେ ଜାଣ ନିଃସ୍ୱ ମୁହିଁ, କିଛି ମୋର ନାହିଁ,
ଖାଲି ଏକ ଅଶ୍ରୁବିନ୍ଦୁ ଧରି ଦୁଃଖ ପାଇଁ ।'
( ସାମାନ୍ୟ ସଞ୍ଚୟ )

କବି-ଚକ୍ଷୁର ଏହି ଅଶ୍ରୁବିନ୍ଦୁ ବିଶ୍ୱର ପୀଡ଼ିତ ମାନବର ବ୍ୟଥା ପ୍ରତି ସହାନୁଭୂତି-ଜାତ କେବଳ ମାତ୍ର କବିପ୍ରାଣର ଅଶ୍ରୁବିନ୍ଦୁ ନୁହେଁ, ଯୁଗଯୁଗ ଧରି ଆକାଶ ବତାସକୁ କରୁଣ ସଜଳ କରୁଥିବା ମାନବାତ୍ମାର କାକୁତି-ପ୍ରାର୍ଥନା ଓ ଭକ୍ତି-ନୈବେଦ୍ୟର ଏହା ମୂର୍ତ୍ତିମନ୍ତ ପ୍ରକାଶ ଓ ପ୍ରତୀକ । ମାନବାତ୍ମାର ମହତ୍ତ୍ୱ ଓ ନିର୍ମଳତାର ମଧ୍ୟ ଏହା ହିଁ ପବିତ୍ର ସାକ୍ଷୀ ।

''ସେ ଉଷ୍ଣ ଲୋତକେ ନିଜ ମରମ ବେଦନା
ମିଶିଥାଏ ନାଥ, ମୁଁ ଯେ ନିଜେ ଅଭିଶପ୍ତ,
ତବ ପଦତଳେ ମୋର ସେହି ଉପାସନା
ତରଳ, ସ୍ୱଚ୍ଛନ୍ଦ ଅଶ୍ରୁ, ଅନାବିଳ, ତପ୍ତ ।''
( ଅଶ୍ରୁର ହିସାବ )

ନିଜର ଅଶ୍ରୁଦ୍ୱାରା ଅନ୍ୟର କ୍ଷତ ଧୌତ କରି ତ୍ୟାଗର ପ୍ରଲେପ ଦ୍ୱାରା ତାକୁ ରୋଗମୁକ୍ତ କରିବାକୁ ନିର୍ଦ୍ଦେଶ ଦେଇ ନିଜ ଶିଳ୍ପ-ସୃଷ୍ଟିରେ କବି ସର୍ବଦା ଦେଇଛନ୍ତି ।

ମନୁଷ୍ୟ ପ୍ରତି କବିପ୍ରାଣର ନିର୍ମଳ ଶ୍ରଦ୍ଧା ଓ ସହାନୁଭୂତି, ରୂପ ଓ ଅରୂପ ଜଗତର ପାରସ୍ପରିକ ଭାବ ବିନିମୟର ରହସ୍ୟ ଏବଂ ଦେହାତ୍ମା ଓ ମାନବାତ୍ମାର ନିଗୂଢ଼ ରହସ୍ୟାକର୍ଷଣ କବି ମାନସିଂହଙ୍କ ଅସଂଖ୍ୟ ସନେଟ୍‌ଗୁଡ଼ିକରେ ଯେପରି ନିବିଡ଼ ଭାବରେ ଆତ୍ମପ୍ରକାଶ କରିଛି ଓଡ଼ିଆ କାବ୍ୟକ୍ଷେତ୍ରରେ ତାର ପଟାନ୍ତର ଦୁର୍ଲଭ । ବସ୍ତୁତଃ ପ୍ରେମାନୁଭୂତିସମ୍ବଳିତ କବିଙ୍କର ପ୍ରସିଦ୍ଧ ଖଣ୍ଡକବିତାଗୁଡ଼ିକୁ ବାଦ୍ ଦେଲେ ଏହି ସନେଟ୍‌ଗୁଡ଼ିକରେ ହିଁ ମାନସିଂହ-ପ୍ରତିଭାର ସିଦ୍ଧି-ସ୍ୱାକ୍ଷର ସମୁଜ୍ଜ୍ୱଳ ଭାବରେ ଉତ୍କୀର୍ଣ୍ଣ । ନିକଟରେ ପ୍ରକାଶିତ କବିଙ୍କର ସନେଟ୍ ଗ୍ରନ୍ଥ 'ନିର୍ମ୍ମାଲ୍ୟ'ରେ ଏହି ଉକ୍ତିର ସାର୍ଥକ ପ୍ରାମାଣିକତା ବିଦ୍ୟମାନ । ଉଜ୍ଜ୍ୱଳ ଆଶାବାଦରେ ଅଧିକାଂଶ ସନେଟ୍-ଗୁଡ଼ିକରେ ଅନ୍ତରଙ୍ଗ ରୂପ ଯେପରି ଉଦ୍‌ଭାସିତ, ଅନେକାନ୍ତ ଶୁଭ୍ର ମାନବିକତାର ସ୍ପର୍ଶରେ ସେଗୁଡ଼ିକର କଳେବର ସେହିପରି ରସସିକ୍ତ ଓ ସମୁଜ୍ଜ୍ୱଳ । ଏହି ସମସ୍ତ ସନେଟ୍‌ରେ କେଉଁଠି କବିଙ୍କର ତୀବ୍ର ଜାତୀୟତା ଆତ୍ମପ୍ରକାଶ କରିଛି ତ କେଉଁଠି ସଂଗ୍ରାମଧର୍ମୀ କବିର ମାନବିକ କଣ୍ଠସ୍ୱର କବିତାର ପଂକ୍ତିଗୁଡ଼ିକୁ ଆଗ୍ନେୟ ଉତ୍ତାପରେ ଦୀପ୍ତ କରିଛି । ଓଡ଼ିଆ ସାହିତ୍ୟରେ କବି ମଧୁସୂଦନ ରାଓଙ୍କଠାରୁ ଆରମ୍ଭ କରି ଏଯାଏ ଅସଂଖ୍ୟ ସନେଟ୍ ଅବଶ୍ୟ ଲେଖାହୋଇଛି, କିନ୍ତୁ ସେଗୁଡ଼ିକର ସୃଷ୍ଟି ପ୍ରାଚୁର୍ଯ୍ୟ ତୁଳନାରେ ସିଦ୍ଧି-ଐଶ୍ୱର୍ଯ୍ୟ ବିରଳ । କିନ୍ତୁ କବି ମାନସିଂହଙ୍କ ସନେଟ୍‌ଗୁଡ଼ିକରେ ସହିକାବ୍ୟସିଦ୍ଧିର ସାନୁପାତ ସମ୍ମେଳନ ସବିଶେଷ ସଙ୍ଘଟିତ ହୋଇଛି କହିଲେ ଅତ୍ୟୁକ୍ତି ହେବାର ଆଶଙ୍କା ନାହିଁ ।

ମନୁଷ୍ୟ ପ୍ରତି ସହାନୁଭୂତି ବା ସମବେଦନା କେବଳ ନୁହେଁ, ମାନବାତ୍ମାର ମୁକ୍ତି ଓ ପ୍ରଗତି ପାଇଁ, ମନୁଷ୍ୟତାର ବିକାଶ ପାଇଁ ଓ ମନୁଷ୍ୟର ଅମୃତ ରୂପ ଅବଲୋକନ ପାଇଁ ଶିଳ୍ପୀପ୍ରାଣ ଅନ୍ତରରେ ଯେପରି ଧ୍ୟାନରତ ସମସ୍ତ ଦୁଃଖ-ଦୁର୍ବିପାକ ଓ ସଂଶୟ-ସ୍ଖଳନ ମଧ୍ୟରେ ମନୁଷ୍ୟ ନିଜର କଲ୍ୟାଣମୟ ରୂପ ପୃଥିବୀରେ ପ୍ରକଟ ନ କରୁ, ତାହା ଦେଖିବାକୁ କବି ନିଜ ଶିଳ୍ପସୃଷ୍ଟିରେ ମଧ୍ୟ ସେହିପରି ବିଶ୍ୱାସୀ ଓ ଆଶାବାଦୀ । କଲ୍ୟାଣ ଓ ଅମୃତର ଜନ୍ମ ପାଇଁ ମୃତ୍ୟୁ ଓ ହଳାହଳରୂପୀ ପ୍ରମାଦ-ବିପତ୍ତି ଯେ ଅପରିହାର୍ଯ୍ୟ, ତାହା ମଧ୍ୟ କବି ପ୍ରାଣରେ ଅନୁଭବ କରି ତେଣୁ ଗାଇଛନ୍ତି—

"ଆଜ କିନ୍ତୁ ଜାଣିଛି ମୁଁ ହେ କଲ୍ୟାଣମୟ,
ରଖିଯାଅ ଶୁଭ ବୀଜ ଘୋର ବିପତ୍ତିରେ,
ଜୀବନ ପାଇଁ ସୃଜିଅଛ ପ୍ରମାଦ, ସନ୍ଦେହ,
ମିଳନ ଆସ୍ୱାଦ ଥାଏ ବିରହର ନୀରେ ।"

( ଅଦାନ )

ଗୋଲାପର ସୌନ୍ଦର୍ଯ୍ୟ ସହିତ କଣ୍ଟକ ଯେପରି ସଂଲଗ୍ନ, ସୁଖାନୁଭୂତି ସହିତ ଦୁଃଖାନୁଭୂତି ସେହିପରି ଓତପ୍ରୋତ ଭାବେ ଜଡ଼ିତ ଏବଂ ସୁଖ-ଦୁଃଖ ବା ବିରହ-ମିଳନ

ପରସ୍ପର ଯେ ଆପେକ୍ଷିକ, ଏ ଶିଳ୍ପ ବିଶ୍ୱାସ ମାନସିଂହଙ୍କ ସୃଷ୍ଟି ମଧ୍ୟରେ ନିହିତ । ତେଣୁ ସଂଗ୍ରାମ ଓ ସଂଘର୍ଷ ଭିତରଦେଇ ସୁସ୍ଥ ମାନବିକତା ପୃଥିବୀରେ ଜନ୍ମ ନେଉ ଏବଂ ପୃଥିବୀ ଏକ ଶାନ୍ତ ଓ ଶ୍ରୀ ନିକେତନରେ ପରିଣତ ହେଉ । ଉପନିଷଦୀୟ ଋଷି-କଣ୍ଠରେ ଏହି ମଧୁମୟ ପ୍ରାର୍ଥନା କବିଙ୍କ ଶିଳ୍ପ-ଛନ୍ଦରେ ସର୍ବଦା ପ୍ରତିଧ୍ୱନିତ ହୋଇଥିବାର ଆମେ ଲକ୍ଷ୍ୟ କରୁଁ ।

"ସ୍ୱଶ୍ରମ-ଲବ୍ଧ ଅନ୍ନ, ସର୍ମୀ ସେହିବନ୍ତ,
ସଙ୍ଗୀତ-ସାହିତ୍ୟସେବା, ନୀରୋଗ ଶରୀର,
ଅଋଣୀ, ଅପରାଧୀନ, ସତ୍ୟନିଷ୍ଠ ମତ,
ଏ ତହୁଁ କି ବଡ଼ ଭୋଗ ଅଛି ପୃଥିବୀର ?
ଗାଡ଼ ଗାଡ଼ ଶାସ୍ତ୍ର ପଢ଼ି ଶିଖିଛି ମୁଁ ଶେଷେ
ଦୁଇ ସାର କଥା—ଜ୍ଞାନ, ପର ଉପକାର;
ଅଜ୍ଞତା ହିଁ ଦୁଃଖ ହୋଇ ଆସେ ନାନା ବେଶେ
ସ୍ୱାର୍ଥ ହିଁ ପ୍ରଥମ ବୀଜ ସର୍ବ ଯନ୍ତ୍ରଣାର ।"

( ପାନ୍ଥ ଗାଥା )

ଅଜ୍ଞତା, ସ୍ୱାର୍ଥ ପ୍ରଭୃତି ଅନ୍ତରର ଦାନବୀୟ ଶକ୍ତି ସହିତ ସଂଗ୍ରାମ କରି ମାନବିକତାର ବିଜୟସ୍ତମ୍ଭ ପୃଥିବୀରେ ନିର୍ମାଣ କରିବାକୁ, ସାମ୍ୟ ମୈତ୍ରୀର କରୁଣା ଦୃଷ୍ଟିରେ ପୃଥିବୀକୁ ମଧୁମୟ କରିବାକୁ ଏବଂ ବିଶ୍ୱକୁ ଏକ ପରିବାରରୂପେ କଳ୍ପନା କରି ହିଂସା-ଦ୍ୱେଷର ବୀଜ ଧରଣୀର ବକ୍ଷରୁ ଲୋପ କରିବାକୁ ନିଜର ମହିମାମୟ ନିର୍ଦ୍ଦେଶ କାବ୍ୟ ମଧ୍ୟରେ କବି ଆମକୁ ସର୍ବଦା ଦେଇଛନ୍ତି । ଏଥିପାଇଁ ମନୁଷ୍ୟ ବ୍ୟକ୍ତିତ୍ୱକୁ ନିର୍ମଳ ଓ ମହତ୍ତର କରିବା ପାଇଁ ସାଧକ ମହାପୁରୁଷମାନଙ୍କର ନିର୍ଦ୍ଦେଶିତ ସରଣୀରେ ମନୁଷ୍ୟକୁ ଗତି କରିବାକୁ ଓ ଚରମ ସଙ୍କଟାବସ୍ଥାରେ ସେଇ ମହାଜନ-ମାନଙ୍କର ବାଣୀ ଓ ନୀତିକୁ ଆଶ୍ରୟ ସ୍ୱରୂପ ଗ୍ରହଣ କରିବାକୁ ନିର୍ଦ୍ଦେଶ ମଧ୍ୟ ତାଙ୍କ କବିତାଗୁଡ଼ିକ ମଧ୍ୟରେ ରହିଛି । ଏ ଦୃଷ୍ଟିରୁ ଗାନ୍ଧୀ-ଗୋପବନ୍ଧୁଙ୍କ ପରି ମହାନ୍ ବ୍ୟକ୍ତିତ୍ୱକୁ ସେ ଆଦର୍ଶସ୍ଥାନୀୟ ବୋଲି ଧରିଛନ୍ତି ।

"କ୍ଷୁଦ୍ର ଲୋଭେ ଚିତ୍ତ ଯେବେ ହୁଏ ଅନ୍ଧୀଭୂତ
କ୍ଷମତା ଆଶେ ଧର୍ମପଥୁଁ ଚରଣ ହୁଏ ଚ୍ୟୁତ,
ଶ୍ରେଷ୍ଠ ଯେବେ ଦଳିତ ହୁଏ ସାମାନ୍ୟର ପାଇଁ
ତାହାରେ ସ୍ମର ତାହାରେ ସ୍ମର ତାହାରେ ସ୍ମର, ଭାଇ !"

( ତାହାରେ ସ୍ମର ଭାଇ )

କେବଳ ଉଲ୍ଲିଖିତ ପଂକ୍ତିଗୁଡ଼ିକ ନୁହେଁ, ଏହିପରି ଅସଂଖ୍ୟ କବିତାପଂକ୍ତିରେ ମହାପୁରୁଷମାନଙ୍କର ଆଦର୍ଶକୁ ଜୀବନରେ ଗ୍ରହଣ କରିବାକୁ କବି ପରାମର୍ଶ ଦେଇ-ଥିବାର ଆମେ ଲକ୍ଷ୍ୟ କରୁଁ । ଏହି ଆଦର୍ଶ ଜୀବନୀମୂଳକ କବିତାଗୁଡ଼ିକ ମଧ୍ୟରେ 'ଗୋପ-ପ୍ରୟାଣ', 'ତାହାରେ ସ୍ମରି ଯାଇ', 'ପ୍ରାଣର ବାପୁଜୀ', 'ଭାରତପୁତ୍ର', 'ବାପୁଜୀ', 'ଗାନ୍ଧିଜୀ' ପ୍ରଭୃତି କବିତାଗୁଡ଼ିକ ପ୍ରତ୍ୟେକେ ଏକ ଏକ ସାର୍ଥକ ସୃଷ୍ଟି । ସରସ ଶିଳ୍ପଭଙ୍ଗୀର ଭିତର ଦେଇ ଗାନ୍ଧୀ, ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱଚିତ୍ର ଏତେ କମନୀୟ ଓ ଉଦାତ୍ତ ହୋଇଉଠିଛି, ଏ କବିତାଗୁଡ଼ିକ ପାଠ ନ କଲେ ତାର ସୌନ୍ଦର୍ଯ୍ୟ ଲେଖାପଢ଼ିରେ ଅନୁଭବ କରିବା କଷ୍ଟକର । 'ଶେଲି ମୃତ୍ୟୁ' କବିତାରେ ମଧ୍ୟ କବିଙ୍କ ଶେଲୀଙ୍କର ମନୋହର ବ୍ୟକ୍ତିତ୍ୱର ଚିତ୍ର ଯେପରି ନିପୁଣ ତୂଳୀରେ ଅଙ୍କିତ, ଶେଲୀଙ୍କର ସମଗ୍ର ଶିଳ୍ପକୃତିର ଆତ୍ମିକ ସୌନ୍ଦର୍ଯ୍ୟର ସୂକ୍ଷ୍ମ ସୂଚନାତ୍ମକ ପ୍ରକଟନ ଏହି କବିତାଟିରେ ସେହିପରି ମନୋରମ ଓ ଉପଭୋଗ୍ୟ । ଆଦର୍ଶ ବ୍ୟକ୍ତିତ୍ୱକୁ ଯେପରି ଜୀବନ-ପଥର ତମସା ମଧ୍ୟରେ ପଥପ୍ରଦର୍ଶକ ମଶାଲ ଆଲୋକ ବୋଲି କବି ଧରିଛନ୍ତି, ଅନ୍ୟ ଦିଗରେ ଆତ୍ମାର ଐଶୀଚେତନା, ପ୍ରାଣର ନିବିଡ଼ ବିଶ୍ୱାସ ଓ ସରଳତା ମାନବିକ ମୁକ୍ତି ଓ ସୌନ୍ଦର୍ଯ୍ୟବୋଧର ଯେ ଆଧାର ଏବଂ ତାହାରି ଦ୍ୱାରା ହିଁ ଯେ ମର୍ତ୍ତ୍ୟରେ ସ୍ୱର୍ଗ ସୃଷ୍ଟି ସମ୍ଭବ, ଏ ବିଶ୍ୱାସ ତାଙ୍କ ଶିଳ୍ପସୃଷ୍ଟି ମଧ୍ୟରେ ପ୍ରକଟିତ ହୋଇଉଠିଛି । ସେହି ସହଜ ଶାନ୍ତ ଓ ସରଳତା ଏବଂ ଅପାପବିଦ୍ଧ ପ୍ରାଣର ଐଶୀଚେତନା ଅନ୍ତରରେ ଚିର ନିର୍ମଳ ଓ ଜାଗ୍ରତ ରଖିବାକୁ କବି ଯେପରି ବ୍ୟାକୁଳ ହୋଇଛନ୍ତି, ସେହି ବିଶ୍ୱାସରେ ଉଦ୍‌ବୁଦ୍ଧ ହେବାକୁ ପାଠକକୁ ମଧ୍ୟ ପରୋକ୍ଷ ନିର୍ଦ୍ଦେଶ ସେହିପରି ଦେଇଛନ୍ତି ।

"ନାହିଁ ଚାହୁଁ ତର୍କ, ଦ୍ୱନ୍ଦ୍ୱ, ନାହିଁ ଜ୍ଞାନ ଗବେଷଣା
ଭ୍ରାନ୍ତ ପରି ଏଣେ ତେଣେ ଘୂରି ସୁଖ-ଅନ୍ୱେଷଣା,

ଦିଅ ପୁଣି ସେଦିନର ନିବିଡ଼ ବିଶ୍ୱାସ ପ୍ରାଣେ
ଦେବତା ଖେଳିବେ ସାଥେ, ଭୋଗିବି ତୁମରେ ଘ୍ରାଣେ ।"

( ସ୍ୱର୍ଗଚ୍ୟୁତ )

ବା

"ପ୍ରାଣର ଦେବତା ନିଃଶେଷେ ସବୁ ନିଅ ହେ ନିଅ,
ଲୋକଲୋଚନକୁ ଯା କିଛି ଶ୍ରେଷ୍ଠ ଶଂସନୀୟ,
ଦିଅ ପୁଣି ଖାଲି ସେଇ କୈଶୋର
ନବକିଶୋରର ସ୍ୱପ୍ନ ବିଭୋର

ରସଉଚ୍ଛଳ
ଲୁହ-ପିଚ୍ଛିଳ
ଅପାପବିଦ୍ଧ
ସ୍ୱଚ୍ଛହୃଦୟ ।"

( ଫେରାଇଦିଅ )

ଉଲ୍ଲିଖିତ କାବ୍ୟ ପଂକ୍ତି ପରି ଅଜସ୍ର ପଂକ୍ତିରେ କବିପ୍ରାଣର ଏହି ସରଳ ବିଶ୍ୱାସ, ନିଷ୍ଠା, ଐଶୀ ଚେତନା ଓ ସ୍ୱର୍ଗ ନିମନ୍ତ୍ରଣ ଆତ୍ମପ୍ରକାଶ କରିଛି ଏବଂ ଏହି ସମସ୍ତ ଗୁଣଗୁଡ଼ିକର ଅଭାବରେ ସ୍ୱର୍ଗବଦଳରେ ମର୍ତ୍ତ୍ୟ ଯେ ଆଜି ନରକଧାମରେ ପରିଣତ ହୋଇଛି ଓ ଦେବଶିଶୁ ସ୍ୱର୍ଗାଭିସାର ପରିବର୍ତ୍ତେ ନରକଗାମୀ ହେଉଛି, ଏ ଅନୁଭୂତି କବିପ୍ରାଣକୁ ବିଷାଦମଣ୍ଡିତ ମଧ୍ୟ କରିଛି । "After such knowledge what forgiveness ?" ଅତ୍ୟଧିକ ଜ୍ଞାନଜନିତ ଆଧୁନିକ ଜୀବନର ବିଦ୍ଧ ଅକ୍ଷମଣୀୟ ଅପରାଧକୁ ଲକ୍ଷ୍ୟ ରଖି ଉପରୋକ୍ତ ମନ୍ତବ୍ୟଟି କବି ଟି. ଏସ. ଏଲିୟଟ୍ କରିଥିଲେ ଜ୍ଞାନବିସ୍ତୀର୍ଣ୍ଣ ଆଧୁନିକ ଜଗତର ବିଦ୍ଧ ପାପ-ସ୍ଖଳନରେ କବି ମାନସିଂହ ମଧ୍ୟ ମର୍ମାହତ ହୋଇଛନ୍ତି ଏବଂ ଐଶୀଚେତନାଶୂନ୍ୟ ଓ ଅନ୍ତଃସାରହୀନ ଏ ଯୁଗର ଅସୀମ ତର୍କସଂଶୟଭରା ଜ୍ଞାନ ଉପରକୁ ଆକ୍ଷେପ କରି କହିଛନ୍ତି—

"ନାନା ଧର୍ମ, ନାନା ଶାସ୍ତ୍ର, ନାନା ଦରଶନ
ପଢ଼ି ମାଥ ଭାରାକ୍ରାନ୍ତ କଲି ମୋର ଶିରେ,
କସ୍ତୁରୀକା ମୃଗସମ ଭ୍ରାନ୍ତ ଅନ୍ୱେଷଣ
କରି ମୁଁ ଫେରିଛି ଶେଷେ ତୁମ୍ଭ ସନ୍ନିଧିରେ ।"

( ଏକ ଓ ବହୁ )

ମନୁଷ୍ୟର ସକଳ କର୍ମ ଐଶୀବିଶ୍ୱାସସମ୍ବଳିତ ନ ହେବାଯାଏ ତାର ଜ୍ଞାନଚିନ୍ତା ଯେ ଅସାର ଓ ସମୟରେ ମାରାତ୍ମକ ମଧ୍ୟ, ଏ ଶିଳ୍ପବିଶ୍ୱାସ କବିଙ୍କର ରହିଛି ଏବଂ "Tis all in pieces, all coherence gone." ଇଂରାଜୀ କବି ଡନଙ୍କର ଅନୁଭୂତି ଭଳି ଏ ଯୁଗର ସୃଷ୍ଟି-ଶୃଙ୍ଖଳା ଫେରାଇ ଆଣିବାକୁ ଯୁଗୀୟ ଜ୍ଞାନ-କୋଷରେ ଐଶୀବିଶ୍ୱାସରୂପ ରତ୍ନସଞ୍ଚୟ ସକାଶେ ନିର୍ଭୀକ ପ୍ରେରଣା କବି ସର୍ବଦା ଆମକୁ ଦେଇଛନ୍ତି । ତେଣୁ ପାର୍ଥିବ ଐଶ୍ୱର୍ଯ୍ୟର ଅସାର ସମ୍ମାନ ଉପରେ କବି ଆସ୍ଥା ପୋଷଣ କରିନାହାନ୍ତି । କବି ବିଶ୍ୱାସ ପୋଷଣ କରିଛନ୍ତି, ଆତ୍ମାର ଚିରନ୍ତନ ଅମୃତ-ଐଶ୍ୱର୍ଯ୍ୟ ସ୍ରଷ୍ଟାଙ୍କର ସୃଷ୍ଟି-କାବ୍ୟ ମଧ୍ୟରେ ହିଁ ସଞ୍ଚିତ ଏବଂ ତାହାର ଅଧ୍ୟୟନ ହିଁ ମନୁଷ୍ୟର ତୃତୀୟ ନେତ୍ରର ଉନ୍ମେଷକାରୀ । ଏ ବିଶ୍ୱାସରେ କବି ସୃଷ୍ଟି-ଅଧ୍ୟୟନ କରିବାକୁ ନିର୍ଦ୍ଦେଶ ଦେଇ ତେଣୁ ଗାଇଛନ୍ତି—

"ମୁଗ୍‌ଧ ହୋଇ ସୃଷ୍ଟି କାବ୍ୟ କରୁଁ ଅଧ୍ୟୟନ
ଫିଙ୍ଗି ଲଣି ବନ୍ଧୁଦଳୁଁ ତନ୍ତ୍ର ବ୍ୟାକରଣ ।"
( ଏକ ଓ ବହୁ )

ଏ ଶିଳ୍ପବିଶ୍ୱାସ ମୁସଲମାନ କବି ରହିମଙ୍କର ଗୋଟିଏ ଉକ୍ତି ମଧ୍ୟରେ ଅତି ସୁନ୍ଦରଭାବେ ପ୍ରକଟିତ । ସେ କହୁଛନ୍ତି, "ବିଶ୍ୱ ହିଁ ଯଥାର୍ଥ ଧର୍ମଶାସ୍ତ୍ର । ପଣ୍ଡିତ ଓ କାଜୀଦଳ କାଗଜଲେଖା ଧର୍ମଶାସ୍ତ୍ର ପଢ଼ି, ତାକୁଇ ଘାଣ୍ଟି ଖାଲି ମରନ୍ତି । ବିଧାତାଙ୍କର ନିତ୍ୟ ନବୀନ ଜୀବନ୍ତ ଏହି ଧର୍ମଶାସ୍ତ୍ର ସେମାନେ ଦେଖନ୍ତିନି । ମାନବ ଇତିହାସରେ ତାଙ୍କର ଅଖଣ୍ଡ ବେଦ ଉଚ୍ଚାରିତ । ବାହାରର ମିଥ୍ୟା-ଆଲୋକ ନିଭାଇଦେଇ ସେହି ପ୍ରକୃତ ବେଦ କୋରାନ୍ ପଢ଼ । ହିନ୍ଦୁ-ମୁସଲମାନ ସେହି ପ୍ରାଣ-ପୁସ୍ତକକୁ ପଢ଼ି-ଦେଖ । ସବୁଠି ତେବେ ଦେଖିବ ଏକଇ ବିଦ୍ୟା । ତାକୁଇ ଯେ ପଢ଼ିଛି, ସେ ହିଁ ପ୍ରକୃତ ପଣ୍ଡିତ ।" ମୁସଲମାନ କବିଙ୍କର ଏହି ଉଦାର ବାଣୀ ନୂତନ ଶିଳ୍ପରୂପର ମଧ୍ୟଦେଇ ଏ ଯୁଗର କବିକଣ୍ଠରେ ପୁଣି ଥରେ ଏଁ ଯୁଗ-ମାନବର ମୈତ୍ରୀ ସାଧନା ପାଇଁ ଯେପରି ଉଚ୍ଚାରିତ ହୋଇଉଠିଛି ।

କେବଳ ନିଜ ଅନ୍ତରର ବାଣୀ ନୁହେଁ, ସହସ୍ର ନିର୍ବାକ୍ ପ୍ରାଣର ମୌନଭାଷା ଓ ବିଶ୍ୱ-ପୁସ୍ତକର ମର୍ମବାଣୀ ଅଧ୍ୟୟନ କରି ସୁନ୍ଦର ଶିଳ୍ପ ମାଧ୍ୟମରେ ପ୍ରକାଶ କରି-ପାରୁଥିବାରୁ ହିଁ ତ ମନୁଷ୍ୟ ଦିବ୍ୟଦ୍ରଷ୍ଟା କାନ୍ତଦର୍ଶୀ କବିପଦବାଚ୍ୟ । ସେ ଦିବ୍ୟଦୃଷ୍ଟି ଲାଭର ସୌଭାଗ୍ୟ ସାକ୍ଷୀ ହେଉଛି କବି ମାନସିଂହଙ୍କର ଅଜସ୍ର କାବ୍ୟ-କବିତା । ଶିଳ୍ପର ଭାବସତ୍ୟ ମନୁଷ୍ୟର ସନାତନ ଚିନ୍ତାଜଗତରୁ କବି ଗ୍ରହଣ କରିଥିଲେହେଁ ତାକୁ ନୂତନ କରି ଦେଖିବାରେ ଓ ଦେଖାଇବାରେ କବିର ମୌଳିକ ପ୍ରତିଭାର ଶକ୍ତିମତ୍ତା ଓ ଜୀବନଭଙ୍ଗୀ ନିହିତ । ଏହି ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ ଓ ପ୍ରକାଶଭଙ୍ଗୀ, ବିଶ୍ୱର ଅମାପ ବେଦନାକୁ ବରମାଳ୍ୟ ଦେଇ ଆପଣାର କରିବାର ଉଚ୍ଚକୋଟୀର ଶିଳ୍ପଧର୍ମ କବି ମାନସିଂହଙ୍କ ଶିଳ୍ପସୃଷ୍ଟି ମଧ୍ୟରେ ସବୁଠି ପ୍ରକାଶିତ । ଭାଷାର ସାବଲୀଳତା ସହିତ ଭାବସତ୍ୟର ସମନ୍ୱୟ ରକ୍ଷା କରି ଗଭୀର ଅନୁଭୂତିର ସୌନ୍ଦର୍ଯ୍ୟ ପ୍ରକଟନ କରିବାରେ, ମନୁଷ୍ୟ ମନର ନିବିଡ଼ ଅନୁଭୂତିକୁ ଶିଳ୍ପସଙ୍ଗତ ରୂପ ଦେବାରେ ଏବଂ ମାନବାତ୍ମାର ବେଦନାବୋଧକୁ ନିଜ ଅନୁଭୂତିରେ ଆଣି ଅନ୍ୟପ୍ରାଣରେ ତାକୁ ସଞ୍ଚାରିତ କରି-ପାରିବାରେ ଯାଦୁକରୀ ପ୍ରତିଭାର ନିପୁଣ କାରିଗରି କବି ମାନସିଂହଙ୍କ ସୃଷ୍ଟିରେ ଯେ ପ୍ରକାଶିତ, ତାହା ଯେ କେହି ସହୃଦୟ କାବ୍ୟ-ପାଠକ ସହଜରେ ଅନୁଭବ କରି-ପାରିବ । କବିତା ମୌନ-ମାନବାତ୍ମାର ହିଁ ପ୍ରକାଶ ସଙ୍ଗୀତ । ଶିଳ୍ପୀଆତ୍ମାର ନିର୍ଦ୍ଦୋଷ ପ୍ରତିଫଳନ କବି ମାନସିଂହଙ୍କ ଅଜସ୍ର ଗୀତି-କବିତାଗୁଡ଼ିକ ମଧ୍ୟରେ ଯେ ଘଟିଛି, ଏଥିରେ ମତଦ୍ୱୈଧ ହେବାର ଅବକାଶ ନାହିଁ । 'ସାଧବ ଝିଅ'ର ମାଳୁଣୀ ଚରିତ୍ର କବିଙ୍କର ଏକ ଅନବଦ୍ୟ ସୃଷ୍ଟି ।

"କୁସୁମ ହାରେ ଗୁନ୍ଥି ଯୁବା ତରୁଣୀ
ବଳା ବଜାଇ ଚଳେ ଧୀରେ ମାଲୁଣୀ,

କରକେ ଧରିଅଛୁ ଫୁଲ ଗୁଙ୍ଗୁଡ଼ା,
ସେ ଫୁଲେ ଅଛୁ କେତେ ହୃଦ-ମାଗୁଣି ।

× × ×

ତଥାପି ପ୍ରିୟ ନାହିଁ ସବୁରି ଘରେ,
ବିଶ୍ୱାସ ସବୁ କଣେ।ସ୍ତାର ତା' ପରେ,

ତା ବକ୍ଷେ କେତେ ବକ୍ଷ ଗୋପନ କଥା,
ତା ମୁଖୁଁ କେତେ କାନେ ପୀୟୂଷ ଝରେ ।"

ମାଲୁଣୀର ଫୁଲଗୁଙ୍ଗୁଡ଼ା ଭିତରେ କେତେ ରସିକ ଯୁବା ହୃଦୟର କାଙ୍ଗାଳ ଭିକ୍ଷା କିପରି ମିଶି ରହିଛି, ତାର ବକ୍ଷ ଭିତରେ କେତେ ରସିକ ରସିକା ବକ୍ଷର ଗୋପନ କଥା କିପରି ଲୁଚି ରହିଛି ବା ପୀୟୂଷଭରା ତାର କଥା କେତେ ପଣ୍ୟାର୍ଥୀ ପ୍ରଣୟିନୀଙ୍କ କର୍ଣ୍ଣରେ କିପରି ପୀୟୂଷ ଢାଳେ, ସେ ହୃଦୟାନୁଭୂତିର ବିଶ୍ଳେଷଣ ଫୁଲଗୁଙ୍ଗୁଡ଼ାକୁ ନିରୀକ୍ଷଣ କରି ତାହାରେ ଭାବ ଆବେଗକୁ ବୁଝିବାର କବି-କ୍ଷମତା ମାଲୁଣୀ ଚରିତ୍ରଚିତ୍ରଣରେ ଯେପରି ନିପୁଣଭାବେ ପ୍ରକାଶ ପାଇଛି, କମଳାୟନ କାବ୍ୟର କରୁଣା ଚରିତ୍ରଚିତ୍ରଣ, 'ଜେମା' କାବ୍ୟର ଜେମାଚରିତ୍ର ସଂଳାପ ମଧ୍ୟରେ ସେହି ବିଚିତ୍ର ନିର୍ମାଣକୌଶଳ କବିପ୍ରତିଭାର ପରିଚୟ ସେହିପରି ପ୍ରକଟିତ ହୋଇଛି । କବି ମାନସିଂହଙ୍କ ସମଗ୍ର ସୃଷ୍ଟିରେ ଭାବ ସୌନ୍ଦର୍ଯ୍ୟ ଦେଖି ଦେଖାଇବାର ଅବସର ଗୋଟିଏ ପ୍ରବନ୍ଧର ପରିସର ମଧ୍ୟରେ ସୀମିତ । ତଥାପି ଏ ପ୍ରସଙ୍ଗ ର ଏତିକି କହିଲେ ଯଥେଷ୍ଟ ହେବ ଯେ ମାନବ ହୃଦୟର ଶାଶ୍ୱତ ଅନୁଭୂତି-ଗୁଡ଼ିକର ପ୍ରକାଶ ଶିଳ୍ପୋଚିତ ତାଙ୍କ କାବ୍ୟ କବିତାର ଅସଂଖ୍ୟ ମାଧ୍ୟାବିଗ୍ରହ ମଧ୍ୟରେ ଏପରି ସୁଷ୍ଠୁ ଭାବରେ ଘଟିଛି ଯେ ଜୀବନ ପ୍ରତି ଶିଳ୍ପୀପ୍ରାଣର ଐକାନ୍ତିକ ଅନୁରକ୍ତିର ପରିଚୟ ସେଗୁଡ଼ିକ ଦେବା ସଙ୍ଗେ ଶିଳ୍ପସୃଷ୍ଟିର ରସଧର୍ମକୁ ଅକ୍ଷୁଣ୍ଣ ରଖି ପାଠକ ପ୍ରାଣରେ ଜୀବନ ପ୍ରତି ଶ୍ରଦ୍ଧା ଓ ସହାନୁଭୂତି ସଞ୍ଚାର କରିଥାନ୍ତି ଏବଂ ସେଇ ସକଳ କ୍ଷେତ୍ରରେ ହିଁ କବି ହୃଦୟର ଅନୁଭୂତି ସହ ପାଠକ ଏକାତ୍ମ ହୋଇ କବି-ପ୍ରତିଭାର ସିଦ୍ଧି-ସାର୍ଥକତା ଅନୁଭବ କରିଥାଏ । କି ରୂପାନୁଭୂତି କି ଅରୂପାନୁଭୂତି, କି ବେଦନାବୋଧ, କି ଆନନ୍ଦବୋଧ, ସକଳ ବୋଧ ଓ ଅନୁଭୂତିକୁ ରୂପ ଦେବାରେ ମାନସିଂହଙ୍କର ହସ୍ତନିପୁଣତା ବିଦ୍ୟମାନ; ଏବଂ ଏହି ନିପୁଣତା ଦେଶକାଳାତୀତ ଧର୍ମୀ ପ୍ରଥମ ଶ୍ରେଣୀର କବିପ୍ରତିଭାହିଁ କେବଳ ଅର୍ଜନ କରିପାରିଥାଏ । ମାନସିଂହ ସୃଷ୍ଟିର ଅନୁଭୂତି-ସାମ୍ରାଜ୍ୟର ବିସ୍ତାର ଏବଂ ହୃଦୟାନୁଭୂତିର ଚିତ୍ର ଦେବାରେ

ଗମ୍ଭୀରତାର ତୁଳୀସ୍ପର୍ଶ ତାଙ୍କର ସମସାମୟିକ ସବୁଜ ଯୁଗର ଶିଳ୍ପୀମାନଙ୍କ ସୃଷ୍ଟିରେ ଦୁର୍ଲ୍ଲଭ ।

"କେବେ କି ଗୋ ସ୍ନାନଘାଟୁ ଫେରିଆସି ମୁକୁରେ ନିରେଖି
ମୁଗଧ ହୋଇ ଚାହିଁ ନାହିଁ କ୍ଷଣେ ହେଲେ ନିଜର ଯୌବନେ,
ଗ୍ରାମ ବଧୂ-କୁଳ ମାଥେ ସୀମନ୍ତର ସୂକ୍ଷ୍ମ ଶୋଭା ଦେଖି
ନିଜର ସୀମନ୍ତଟିକି ଗଢ଼ି ନାହିଁ ବିରଲେ ଯତନେ ?"

( ଅନୂଢ଼ା )

ବା

"ସେଦିନେ ଏ ଶିଳାପରେ ଅବଗାହେ ଆସି
ସୁକୁମାରୀ ରାଜବାଳା ଅଙ୍କିଥିବ ତାର
ଲକ୍ଷାରକ୍ତ ପଦଚ୍ଛବି, କରି ମନ୍ତ୍ରକାରୀ
କଠିନ ପାଷାଣ ଦେହେ ଆନନ୍ଦ ସଞ୍ଚାର ।"

( ମଃ ଜ୍ୟୋସ୍ନା ବିହାର )

ବା

"ସେହି ପଥେ ଦୟାମୟି କର ମୋତେ ଦାସ,
ଦେହ ପାତ ଘୂଞ୍ଚାଇବ ରାଧା-ପଦ ପ୍ରାସ ।"

( ବଂଶୀଡାକ )

ବା

"ଦେଢ଼ କୋଟି ଲୋକ ନୟନେ ମରଣ ଭକ୍ତ ବିଳାପ ଚାହିଁ
ଅନୁତାପ କରୁ ନିର୍ଦ୍ଦୟତାର ଚପଳ ବୁଦ୍ଧି ପାଇଁ ।"

( ଗୋପ ପ୍ରୟାଣ )

ପ୍ରଭୃତି ଅସଂଖ୍ୟ ପଂକ୍ତିଗୁଡ଼ିକ କବି କଳ୍ପନାର ଚମତ୍କାରିତା, ସୂକ୍ଷ୍ମ ପ୍ରକାଶ-ଭଙ୍ଗୀ ଓ ଜୀବନ ପ୍ରତି ନିବିଡ଼ ଅନ୍ତରଙ୍ଗତାର ନିଦର୍ଶନ । 'ଅନୂଢ଼ା' କବିତାର ଉଲ୍ଲିଖିତ ପଂକ୍ତିଗୁଡ଼ିକରେ କାଞ୍ଚନ ଅପାର ନିର୍ଜନ ମୁହୂର୍ତ୍ତର ଭାବଚିତ୍ର ଓ ତତ୍ପ୍ରତି ଶିଳ୍ପୀର ଅଶ୍ରୁଳ ସହାନୁଭୂତି ଯେପରି ଆତ୍ମପ୍ରକାଶ କରିଛି ତାହା ସାଧାରଣ ପାଠକର ପ୍ରାଣକୁ ମଧ୍ୟ ମୁହୂର୍ତ୍ତିକ ପାଇଁ ହେଲେ ବେଦନାସିକ୍ତ କରିଦେଇଥାଏ । 'ମହାନଦୀରେ ଜ୍ୟୋସ୍ନା ବିହାର' କବିତାରୁ ମଧ୍ୟ ଗୌରବମୟ ଉତ୍କଳର ଐଶ୍ୱର୍ଯ୍ୟ ଚିତ୍ର ପାଇବା ସଙ୍ଗେ ପ୍ରକୃତି ସହିତ କବିପ୍ରାଣର ଏକାତ୍ମୀୟତାର ଚିତ୍ର ପାଠକ ଯେପରି ପାଇଥାଏ ଏବଂ ଉଦ୍ଧୃତ ପଂକ୍ତିଗୁଡ଼ିକରେ ସୁକୁମାରୀ ରାଜବାଳାର ଲକ୍ଷାରଂଜିତ ପଦସ୍ପର୍ଶରେ

କଠିନ ପାଷାଣ ପ୍ରାଣ ଉଲ୍ଲସିତ ହୋଇଉଠୁଥିବାର ସରସ କବିକଳ୍ପନା ସହିତ ପାଠକର ରସାନ୍ୱେଷୀ ପ୍ରାଣ ଯେପରି ରସାପ୍ଲୁତ ହୋଇଉଠିଥାଏ, ସେ କଳ୍ପନାଶକ୍ତି ଓ ଅଭିବ୍ୟକ୍ତି ନିପୁଣତା କେବଳ ମାନସିଂହ ପ୍ରତିଭାରହିଁ ଯାଦୁକରୀ ବିଶେଷତ୍ୱ । ପୁଣି 'ବଂଶୀ ଡାକ' କବିତାରେ ପ୍ରଣୟୀ ହୃଦୟର ଚରମ ଆକାଂକ୍ଷାର ଅଭିବ୍ୟକ୍ତି ଉଲ୍ଲିଖିତ ପଂକ୍ତିଗୁଡ଼ିକରେ ଯେପରି ଘଟିଛି ବା 'ଗୋପ ପ୍ରୟାଣ' କବିତାର ଉଦ୍ଧୃତ ପଂକ୍ତି ଦୁଇଟିରେ ଗୋପବନ୍ଧୁଙ୍କ କମନୀୟ ବ୍ୟକ୍ତିତ୍ୱର ଚିତ୍ର କବିଙ୍କ ପ୍ରକାଶଭଙ୍ଗୀରେ ଯେପରି ମନୋହର ହୋଇଉଠିଛି, ତାହା କବି-ପ୍ରତିଭାର ଅପୂର୍ବ ଶକ୍ତିମତ୍ତାରହିଁ ପରିଚାୟକ । ମାନସିଂହଙ୍କ ସୃଷ୍ଟିରେ ଏହି ସରସ ପ୍ରକାଶଭଙ୍ଗୀହିଁ ସର୍ବଜନ ଉପଭୋଗ୍ୟ ଏବଂ କବି-ଚକ୍ଷୁର ସରସ ଦୃଷ୍ଟି ତାଙ୍କର ସମଗ୍ର ଶିଳ୍ପସୃଷ୍ଟିକୁ ରସାନ୍ୱିତ କରିବାରେ ସାହାଯ୍ୟ କରିଛି ।

"ଆନ କହେ କେତେକାଳ ଦୀପ ଖାଲି ଧରିବି ରହି ଏକ ଥାନରେ
ନରକରେ ପଡ଼ି ସଢ଼ୁ ଶିଳ୍ପୀ, ଯେ ନ ଦେଲା ରସ ଟିକେ ପ୍ରାଣରେ ।"
( କୋଣାର୍କ )

ଶିଳ୍ପୀ ପ୍ରତି କୋଣାର୍କର ପାଷାଣ ମୂର୍ତ୍ତିର ଏହି ଅଭିଯୋଗରୁ ମାନସିଂହଙ୍କ ସ୍ୱୀୟ ଶିଳ୍ପତୂଳୀ ଯେ ମୁକ୍ତ ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ତ ମାନସିଂହଙ୍କ ଶିଳ୍ପୀପ୍ରାଣର ସ୍ୱପ୍ନ ଏତେ ପ୍ରାଣସ୍ପର୍ଶୀ ଓ ତାଙ୍କର ଶିଳ୍ପ-ଶୈଳୀ ଏତେ ସରଳ, ରସାଣିତ ଓ ମନୋମୁଗ୍‌ଧକର ।

ଏହି ସରସ ପ୍ରକାଶଭଙ୍ଗୀର ଭିତର ଦେଇ ପ୍ରକୃତି ସହିତ କବିପ୍ରାଣର ଏକାତ୍ମୀୟତା କେତେବେଳେ ତାଙ୍କ ଶିଳ୍ପସୃଷ୍ଟିରେ ପ୍ରକାଶ ପାଇଛି ତ କେତେ-ବେଳେ ପ୍ରକୃତି ମଧ୍ୟରେ କବିପ୍ରାଣର ଭୂମା-ପୁରୁଷର ସ୍ତବ୍‌ଧ ଅନୁଭୂତି ଆତ୍ମପ୍ରକାଶ କରିଛି । କେତେବେଳେ ଦୈହିକ ସୌନ୍ଦର୍ଯ୍ୟର ଅଭିବ୍ୟକ୍ତି କବିଙ୍କର ଇନ୍ଦ୍ରିୟଗ୍ରାହ୍ୟ ରୂପପିପାସାର ପରିଚୟ ଦେଉଛି ତ କେତେବେଳେ ଦେହହୀନ ସୌନ୍ଦର୍ଯ୍ୟର କ୍ରୀଡ଼ା ନିଜ ଶିଳ୍ପ ମଧ୍ୟରେ କବି ରୂପାୟିତ କରି ବସିଛନ୍ତି । କେତେବେଳେ ବନ୍ଧନର ସ୍ୱାଦୁ-ଅନୁଭୂତି ତାଙ୍କ ସୃଷ୍ଟିରେ ଅଭିବ୍ୟକ୍ତି ଲାଭ କରିଛି ତ କେତେବେଳେ କବିପ୍ରାଣର ମୁକ୍ତି ବାସନା ଓ ସମାଜ ଜୀବନର ବନ୍ଧନ ବିରୁଦ୍ଧରେ ବିଦ୍ୟୁତ୍‌-ଚପଳ ବୈପ୍ଳବିକ ବାଣୀ ତାଙ୍କ ଶିଳ୍ପ ଭିତରେ ଗର୍ଜିତ ହୋଇ ରହିଛି । "ଭବିଲି ବା ହୋଇ ଏହି ଜ୍ୟୋତ୍ସ୍ନାରେ ପ୍ରଲୀନ, ଭୋଗନ୍ତି ଯେ ସୁଧା ଝରେ ଆଜି ଏତେ ଧାରେ"—ଏକଥା ପ୍ରାଣରେ କେତେବେଳେ କବି ଅନୁଭବ କରିଛନ୍ତି ତ ସେହି ଜ୍ୟୋତ୍ସ୍ନା ଭିତରେ ବିଶ୍ୱସ୍ରଷ୍ଟାଙ୍କ ଶିଳ୍ପ-ସୌନ୍ଦର୍ଯ୍ୟ ଅନୁଭବ କରି ପୁଣି କେତେବେଳେ ସେ ଗାଇ ଉଠିଛନ୍ତି, "ଅନୁଭବେଁ ଆହା କା'ର ସ୍ପର୍ଶ ଏ ଅନ୍ତରେ, ବଚନୁ ଅତୀତ ମୁହିଁ ଭ୍ରମିଣମେ

ତାହାରେ'' । ନିଜକୁ ସମୟରେ ଯେପରି ସେ ଭାବିଛନ୍ତି, 'ମୁଁ ଏକ ମଳୟ ଧାର, ଧ୍ୱନି କୋକିଳର' ନିଜର ପ୍ରଣୟିନୀକୁ ମଧ୍ୟ ସମୟରେ ପ୍ରକୃତିର ଏକ ଅଂଶବିଶେଷ ବୋଲି ଅନୁଭବ କରି ସେ କହିଛନ୍ତି 'ଜ୍ୱାଳିକ ସେ ଏକ ଅଂଶ ସ୍ୱର୍ଣ୍ଣ-ହେମନ୍ତର' । ପୁଣି ବସନ୍ତର ମଳୟ ମଧ୍ୟରେ ମୁକ୍ତି-ଆସ୍ୱାଦ ଅନୁଭବ କରି ଓ ଏକ ନୂତନ ସୃଷ୍ଟିର ସ୍ୱପ୍ନ ଦେଖି କେତେବେଳେ ମୁଗ୍ଧ ସ୍ୱରରେ କବି ଗାଇଛନ୍ତି—

''ଅଶରୀରୀ ହୋଇ ଅରେ ମିଶନ୍ତି କି ତବ ଦେହ ସାଥେ,
ନଥାନ୍ତା ବାସନା, ଭୋକ, ନଥାନ୍ତା ଏ ଶୋଣିତର ପୀଡ଼ା;
ଅଶରୀରୀ ହୋଇ ଏହି ସଂସାରରେ ଫିଙ୍ଗି ପଦାଘାତେ
ଭୋଗନ୍ତି ତୋ ସଙ୍ଗେ ମିଶି ଦେହହୀନ ସୌନ୍ଦର୍ଯ୍ୟର କ୍ରୀଡ଼ା ।
ଦାରୁଣ ଏ ଭାଗ୍ୟ ମୋର, ଇଚ୍ଛାମତେ ଚଳେନା ଜୀବନ,
ଆହୁ କେ ଅଦୃଷ୍ଟ ତୁଲି ବାଧା ମୋତେ ଦିଏ ପଦେ ପଦେ;
ଇଚ୍ଛା ମୋର, ଛିଣ୍ଡାଇବ ଏ ଶୃଙ୍ଖଳ, ଏ ଯେ ନିୟନ୍ତ୍ରଣ,
କରିବି ଜୀବନେ ମୋର ଉଚ୍ଛୁଳିତ ସ୍ୱାଧୀନ ଆନନ୍ଦେ ।''

( ଦକ୍ଷିଣା ପ୍ରତି )

ରୋମାଣ୍ଟିକ କବିର ସାମୟିକ ନୈରାଶ୍ୟର ବିଷଣ୍ଣ ସ୍ୱର ସ୍ଥଳବିଶେଷରେ କବି ମାନସିଂହଙ୍କ ସୃଷ୍ଟିରେ ଧ୍ୱନିତ ହୋଇଉଠିଛି । କିନ୍ତୁ ଏ ନୈରାଶ୍ୟ ସ୍ୱର ଅସ୍ଥାୟୀ ଏବଂ କବିପ୍ରାଣର ଶିଳ୍ପସମ୍ଭାରର ଏକ ନଗଣ୍ୟ ଓ କ୍ଷୁଦ୍ରାତିକ୍ଷୁଦ୍ର ଅଂଶ ମାତ୍ର । ପ୍ରକୃତ କଥା କହିଲେ ରାଧାନାଥ ଯୁଗଠୁଁ ଆରମ୍ଭ କରି ରୋମାଣ୍ଟିସିଜିମ୍‌ର ଯେଉଁ ପ୍ରବାହ ଓଡ଼ିଆ କାବ୍ୟ ସାହିତ୍ୟରେ ପ୍ରବାହିତ ହୋଇ ଚାଲିଥିଲା ଓ ସବୁଜ ଯୁଗ ପର୍ଯ୍ୟନ୍ତ ତାର ଶାଖା-ପ୍ରଶାଖା ଯେପରି ବିସ୍ତୃତ ହୋଇ ଉଠିଥିଲା ଓ ରୋମା-ଣ୍ଟିକତାର ବିଭିନ୍ନ ବିଭାଗ ବିଭିନ୍ନ କବିଙ୍କ କୃତିରେ ଯେପରି ଆତ୍ମପ୍ରକାଶ ଲଭିଥିଲା ସେ ସମସ୍ତ ଶାଖାପ୍ରଶାଖାଗୁଡ଼ିକର ସମ୍ମେଳନ, ବିଭିନ୍ନ ବିଭାଗଗୁଡ଼ିକର ସମନ୍ୱୟ କବି ମାନସିଂହଙ୍କ ଶିଳ୍ପ ସାଗର ମଧ୍ୟରେ ଘଟିଛି ଏବଂ ମାନସିଂହଙ୍କ ସୃଷ୍ଟି ସମ୍ଭାରହିଁ ଓଡ଼ିଆ ରୋମାଣ୍ଟିକ କାବ୍ୟ କବିତାର ସିଦ୍ଧି ସାଫଲ୍ୟର ଶେଷ ସ୍ୱର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବାର ସମ୍ଭାବନା ନାହିଁ । ଗୋଟିଏ ଦିଗରେ ଓଡ଼ିଆ କାବ୍ୟ ସାହିତ୍ୟର ପରଂପରାରେ ଲାଳିତ ହୋଇଆସୁଥିବା ଶିଳ୍ପୀପ୍ରାଣର ପ୍ରଣୟ-ସାଧନା କବି ମାନସିଂହଙ୍କ କୃତିରେ ଯେପରି ସିଦ୍ଧାବସ୍ଥା ପ୍ରାପ୍ତ ହୋଇଛି, ଅନ୍ୟ ଦିଗରେ ରୂପ ଅରୂପର ଶିଳ୍ପସଙ୍ଗତ ସାନୁପାତ ସମ୍ମେଳନ, ରୋମାଣ୍ଟିକ କବିର ସ୍ୱପ୍ନ-ସଙ୍ଗୀତ-ଗୁଡ଼ିକର ଆନ୍ତରିକ ଓ ସାବଲୀଳ ଅଭିବ୍ୟକ୍ତି, ପ୍ରାଣ ପ୍ରକୃତିର ନିବିଡ଼ ରହସ୍ୟାକର୍ଷଣର ସୃଷ୍ଟି, ରୂପସତ୍ୟର ପାରସ୍ପରିକ ସହଯୋଗିତା ଏବଂ ସର୍ବୋପରି ସାଧାରଣ ମାନବର

ସକଳାବସ୍ଥାର ଆଶା ଆକାଙ୍କ୍ଷାର ନିଖୁଣ ଅଭିବ୍ୟକ୍ତି, ସ୍ୱଦେଶାନୁରାଗ ଓ ସଂସ୍କାର-ଲିପ୍‌ସା ମାନସିଂହଙ୍କ ଶିଳ୍ପ-ଗନ୍ଥାଗାରେ ସେହିପରି କମନୀୟ କଳାଭଙ୍ଗୀର ଭିତର ଦେଇ ସଜ୍ଜିତ ହୋଇ ରହିଛି । ଏହି ଶିଳ୍ପ-ଗନ୍ଥାଗାରର ଅସଂଖ୍ୟ ମଣିମାଣିକ୍ୟର ଦୀପ୍ତି ଦେଖିବା ବା ଅନ୍ୟକୁ ଏକାଥରକେ ଦେଖାଇପାରିବା ଏକା-ବେଳକେ ଅସମ୍ଭବ । ଅସଂଖ୍ୟ ରତ୍ନନିର୍ଗତ ଦୀପ୍ତିରେ ତାଙ୍କର ଶିଳ୍ପକକ୍ଷ ଉଦ୍‌ଭାସିତ । ସେ ଆଲୋକ ଦୀପ୍ତିରେ ପ୍ରାଣ ଯେପରି ଉଦ୍ଭାଉ, ସରସ ଓ ବିଗଳିତ ହୋଇଉଠେ । ସବୁ ରତ୍ନର ମୂଲ୍ୟ ନିର୍ଣ୍ଣୟ କରିବା ଯେକୌଣସି ସାହିତ୍ୟକନିଷ୍ଠ ପକ୍ଷରେ କଷ୍ଟକର ବ୍ୟାପାର । ତେଣୁ କେତୋଟି ରତ୍ନକୁ ଦେଖି ଅନ୍ୟଗୁଡ଼ିକୁ ଅବହେଳା କରିଥିବା ଏ ପ୍ରବନ୍ଧରେ ଅସ୍ୱାଭାବିକ କିଛି ନୁହଁ । ତେବେ ଅସଂଖ୍ୟ ମଣିମୁକ୍ତାର ହିସାବକୁ ବାଦ୍ ଦେଇ ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ 'ଅତୃପ୍ତ ଭୋଗ', 'ଆତ୍ମାର ସୌନ୍ଦର୍ଯ୍ୟ', 'ବଂଶୀଡାକ', 'ନିଦ୍ରିତ ଭଗବାନ', 'ମହାନଦୀରେ ଜ୍ୟୋତ୍ସ୍ନାବିହାର,' 'ଗୋପପ୍ରୟାଣ', 'ବିରହୀ ଗାଥା', 'କୋଣାର୍କ', ବା 'ବାରବାଟୀ' ପ୍ରଭୃତି ସାମାନ୍ୟ କେତୋଟି ମହାର୍ଘ ରତ୍ନ ଓଡ଼ିଆ କାବ୍ୟ-ଭଣ୍ଡାରକୁ କବି ଦେଇଯାଇଥିଲେ ମଧ୍ୟ ଓଡ଼ିଆ କାବ୍ୟଲକ୍ଷ୍ମୀ ତାଙ୍କର ବରପୁତ୍ରଙ୍କୁ ନେଇ ଯୁଗ ଯୁଗ ଧରି ଗର୍ବ ପ୍ରକାଶ କରିପାରିଥାନ୍ତେ । କିନ୍ତୁ ତା' ବଦଳରେ ଓଡ଼ିଆ କାବ୍ୟଲକ୍ଷ୍ମୀ ଏହି ବରେଣ୍ୟ ପ୍ରତିଭାଠାରୁ ପାଇପାରିଛନ୍ତି ଅଜସ୍ର ରତ୍ନୈଶ୍ୱର୍ଯ୍ୟସଜ୍ଜିତ ଏକ ଅକ୍ଷୟ ଗନ୍ଥାଗାର ଏବଂ ତାର ସୁଯୋଗ୍ୟ ପୁତ୍ରଠାରୁ ଅଧିକ ପ୍ରାପ୍ତି ଆଶାରେ ମଧ୍ୟ ଆଜି ଅପେକ୍ଷମାଣା ।



# ମାନସିଂହଙ୍କ କବିତାରେ
# ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ

ବସନ୍ତକୁମାର ସାମଲ

—ଲ—

ଦାନ୍ତେ, କାଳିଦାସ, ସେକ୍ସପିଅର, ଅରବିନ୍ଦ, ରବୀନ୍ଦ୍ରନାଥଙ୍କ ପରି କବି ମାନସିଂହ ଦିନେ ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ ସ୍ୱପ୍ନରେ ପାଗଳ ହୋଇ ସ୍ୱକାବ୍ୟନାୟିକା ଉଦ୍ଦେଶ୍ୟରେ ଯେଉଁ ପ୍ରଣୟଗୀତି ରଚନା କରିଛନ୍ତି ତାହା ଆଜି ବି ପାଠକ ପ୍ରାଣରେ ତୃପ୍ତି ଓ ଆନନ୍ଦର ସ୍ୱାକ୍ଷର ଆଙ୍କିଦିଏ । ଏହି ସୁପରିଚିତ ସାରସ୍ୱତ ସାଧକ କବି ମାନସିଂହ ଏକଦା ବହୁସମାଲୋଚିତ କବି । ତାଙ୍କର ସୌନ୍ଦର୍ଯ୍ୟଚେତନା ଆଉ ଜୀବନଚେତନା ତାଙ୍କୁ ପ୍ରଣୟଉପାସକ କରି ଗଢ଼ିତୋଳିଛି ଏବଂ ତଦ୍ଦ୍ୱାରା ତାଙ୍କର ବ୍ୟକ୍ତିତ୍ୱର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କାବ୍ୟ-କବିତାର ଶିଳାବୁକୁରେ ନିଖୁଣ ଭାବରେ ଖୋଦିତ । ତାଙ୍କ କାବ୍ୟଚେତନାରେ ସୌନ୍ଦର୍ଯ୍ୟ ଏପରି ଏକ ବସ୍ତୁ ଯାହା ଚର୍ମଚକ୍ଷୁରେ ଦର୍ଶନୀୟ—ଯାହା ଇନ୍ଦ୍ରିୟଦ୍ୱାରା ଭୋଗ୍ୟ ମାତ୍ର । ମାତ୍ର ସେଇ ଅନ୍ୱେଷଣ ଅଦ୍ୟାବଧି ଲାଗିରହିଛି, ଯାହାର ସ୍ପର୍ଶ ପାଇଁ କବି ପାଗଳ—ତା'ର ଲେଖନୀ ମୁଖର । ସେ ଚାହେଁ ସୌନ୍ଦର୍ଯ୍ୟସାଧକ ଭାବରେ ଅଗସ୍ତି ଭଳି ଏକ ଆଞ୍ଜୁଳାରେ ସମସ୍ତ ରୂପ-ସମୁଦ୍ରକୁ ପାନ କରିବାକୁ । ଏହି ଇନ୍ଦ୍ରିୟଭୋଗ୍ୟ ସୌନ୍ଦର୍ଯ୍ୟ ଉପଲବ୍ଧି ତାଙ୍କର ପ୍ରାଣରେ ଅତୃପ୍ତ ଆଶା ଆଉ କାମନାର ବୀଜ ବୁଣିଦେଇଛି ।

ଇନ୍ଦ୍ରିୟର ଅନୁଭୂତି ଆଉ ଅତୀନ୍ଦ୍ରିୟର କଥା । ଏହି ଦୁଇଟିର ଅର୍ଥବୋଧ ଭିନ୍ନମୁଖୀ—ବିପରୀତଧର୍ମୀ । କାରଣ ରୂପରସଗନ୍ଧଛନ୍ଦାଦି ସ୍ପର୍ଶ, ଦର୍ଶନ, ଅନୁଭବଦ୍ୱାରା ଉପଲବ୍ଧି କରାଯାଇପାରେ । ମାତ୍ର ସେଇ ଅଦୃଶ୍ୟ ସତ୍ତା ଯାହାଦ୍ୱାରା ଆମେ ଭୟଙ୍କର ଭାବରେ ଉଦ୍ଦୀପିତ—ଭାବପ୍ରବଣ, ତା ଦ୍ୱାରା କେବେ ହେଲେ ପ୍ରଜ୍ଞାନୁପ୍ରେରିତ ହୋଇ ନ ପାରୁ । ବାସ୍ତବିକ ରୋମାଣ୍ଟିକ ଚେତନା ପାଖରେ ଭାବପ୍ରବଣତାର ମାନେ କିଛି ହୁଏନା ବୋଲି ଆଧୁନିକ କବି ଯୁକ୍ତି ବାଢ଼ିବସେ । ଯେତେବେଳେ

ଆମର ପରିବେଶ, ମାନସିକ ଅବସ୍ଥା ବିକାରଗ୍ରସ୍ତ ହୋଇପଡ଼େ, ପୁନଶ୍ଚ ଧର୍ମ, ବିଜ୍ଞାନ, ନଡ଼ ମୂଲ୍ୟନୀତି, ଆଦର୍ଶ ଆମକୁ ତାର ହିଂସ୍ର ଦନ୍ତ ଦେଖାଇ ଭୟଭୀତ କରାଏ, ସେଠାରେ ଜୀବନର ସବୁକିଛିମାର ଅର୍ଥ କଣ ? ଆମେ କଣ ? ଏଣୁ ବାସ୍ତବ ପୃଥିବୀରେ ଦେହ ଓ ଦେହାତୀତ ଜୀବନ ଓ ଅନୁଭୂତିସବୁର ତଫାତ୍ ସୃଷ୍ଟି ହୋଇଥାଏ । ଏଇ ପରସ୍ପରବିରୋଧୀ ଚିନ୍ତାଧାରା ସ୍ପଷ୍ଟ ଭାବରେ ମାନସିଂହ-ମାନସରେ ପ୍ରତିଫଳିତ ।

କବିମାନସର ସୃଜନଶକ୍ତିସ୍ପୃହାର ପରିପ୍ରକାଶ ପାଇଁ ଶୃଙ୍ଖଳିତ ଭାଷାର ମାଧ୍ୟମ ସୃଷ୍ଟି ହୋଇଛି । କବି ସେଠାରେ ଇନ୍ଦ୍ରିୟମାନଙ୍କୁ ବିଶୃଙ୍ଖଳିତ କରିବାକୁ ଚେଷ୍ଟା କରିନାହାନ୍ତି । ମାତ୍ର ମନ୍ମଥ ଚିନ୍ତାନୁପ୍ରେରିତ ଅପେକ୍ଷା ତନ୍ମୟତାନୁପ୍ରେରିତ ହୋଇ-ଉଠିଛନ୍ତି । ପ୍ରେମର ନିର୍ଯାତନାର ଅବା ଉତ୍କଣ୍ଠିତ ପାଗଳାମିର ବୋଲି ସ୍ୱୀକାର କରିନାହାନ୍ତି । ସେ ଆତ୍ମନିରୀକ୍ଷଣ ଆଉ ଅନୁଭବଶକ୍ତିକୁ ପବିତ୍ର କରିବାକୁ ଚେଷ୍ଟା କରିଛନ୍ତି—ଆତ୍ମଜ୍ଞାନ ମାଧ୍ୟମରେ । ବୋଧହୁଏ ମାନସିଂହ ଇନ୍ଦ୍ରିୟ ଅନୁଭୂତିକୁ ଏକାଗ୍ରତାବଳରେ ସଂଯମ ରକ୍ଷା କରିଛନ୍ତି । ସେ ଯେତେବେଳେ କବି ଭାବରେ ସ୍ୱଦାୟିତ୍ୱ ଭୁଲାଇବାକୁ ଚାହାନାହାନ୍ତି ଅଧିକ ଭାବରେ ସେଠାରେ ସେ ପ୍ରଜ୍ଞାଠାରୁ ଦୂରରେ । ଭାବପ୍ରବଣତା ଏକ କଳା । ମାତ୍ର ପ୍ରକୃତି ଓ ଜୀବନର ରହସ୍ୟ ଭେଦ କରିବାରେ ଅଧିକ ମାନସିକ ଶକ୍ତି ଖର୍ଚ୍ଚ କରିବାକୁ ଚାହାନାହାନ୍ତି । ଆମ ସମାଜରେ ପ୍ରକୃତିରେ ଇନ୍ଦ୍ରିୟଭୋଗୀ ଜଣା ଓ ଏହାର ବିମୁଖତା ବାସ୍ତବିକ ବହୁ ଆଗରୁ ପାରମ୍ପରିକ ରୀତିରେ ଆତ୍ମପ୍ରକାଶ କରିଆସିଛି ।

ମାନସିଂହଙ୍କ କବିତାରେ ରୂପ, ଗନ୍ଧ, .ରସ, ସ୍ପର୍ଶର ଆଲେଖ୍ୟ ରହିଛି । ପାଞ୍ଚୋଟିଯାକ ଇନ୍ଦ୍ରିୟର ଏଇ ଅନୁଭବର ଜଣା, ଶୃଙ୍ଖଳା ବା ଶୈଳୀ ଭିତରଦେଇ ଏପରି ସାର୍ଥକ ଭାବରେ ଆତ୍ମପ୍ରକାଶ କରିଛି ଯେ ତାହା ପାଠକଲେ ପାଠକର ଚିନ୍ତା ଓ କଳ୍ପନା ଉଭୟ ଏକ ସଙ୍ଗରେ କାର୍ଯ୍ୟକାରୀ ହୋଇଉଠନ୍ତି । ଅଭିଜ୍ଞତା ଓ ଅନୁଭୂତିର କେନ୍ଦ୍ରବିନ୍ଦୁରେ ଗତିଶୀଳ ଚିନ୍ତା ଓ କଳ୍ପନାକୁ ନେଇ ଯେଉଁ କବିତା ରୀତିଯୁଗରେ ଲେଖାଯାଉଥିଲା ତାହା ହୁଏତ ମନ୍ଦିରଗାମୀ ଅଥବା ରାଜଉଆସଗାମୀ, ଅର୍ଥାତ୍ ପାର୍ଥିବତା କିମ୍ବା ପରମାର୍ଥ ଆଡ଼େ ସ୍ପୃହାର ଗତି ଥିଲା । କାଳକ୍ରମେ ସେ ଗତି ବଦଳିଯାଇ ପ୍ରଥମେ ରାଜଉଆସ ଓ ମନ୍ଦିର ଛାଡ଼ି ଅନ୍ୟ ଏକ ପୃଷ୍ଠଭୂମି ଖୋଜିଲା, ପାଇଲା ବି ମାଟି ଆଉ ଆକାଶକୁ । ସେ ଆକାଶର ପକ୍ଷୀ ହୋଇ ଉଡ଼ିଲା ଅଥବା ମାଟିର ଗନ୍ଧ ଭିତରେ ହଜିବାକୁ ଚେଷ୍ଟା କଲା । ଓଡ଼ିଆ କାବ୍ୟ କବିତାର ସମୃଦ୍ଧ ପରମ୍ପରା ଆଉ ଇନ୍ଦ୍ରିୟବିଳାସର ପୃଷ୍ଠଭୂମି ଯଥେଷ୍ଟ ମନେ ନ ହେବାରୁ ମାନସିଂହ-କବିତାର ଆଭିମୁଖ୍ୟ ସୁଦୂରପ୍ରସାରିତ ହେବାର ଲକ୍ଷ୍ୟ କରାଗଲା ।

ଅଗାଧ୍ୟର ସୂକ୍ଷ୍ମତର ଅନୁଭୂତ କବିତାକୁ ସ୍ୱତଃସ୍ଫୂର୍ତ୍ତି କରିଥାଏ । ଯୁକ୍ତି ଅପେକ୍ଷା ଆବେଗକୁ, ରେଖା ଅପେକ୍ଷା ରଙ୍ଗକୁ ସେ ଅଧିକ ଭାବରେ ଗ୍ରହଣ କଲେ ଓ ନୂତନ ଆଙ୍ଗିକର ଧର୍ମରେ ଦୀକ୍ଷିତ କରିବାକୁ ଚେଷ୍ଟା କଲେ । Sensibility ( ଇନ୍ଦ୍ରିୟାନୁଭୂତ ) କଥା ଏଠାରେ ସ୍ପଷ୍ଟ ଉଲ୍ଲେଖ କି କରାଯାଇପାରେ । ଏହି କାରଣରୁ ମାନସିଂହଙ୍କ କାବ୍ୟଗ୍ରନ୍ଥରେ spontaneity ଦେଖା ଦେଇଛି । ତାଙ୍କର କାବ୍ୟ ସଜୀବ ଓ ଐଶ୍ୱର୍ଯ୍ୟଶାଳୀ ହେବାର ପ୍ରତିଭାକୁ ବହନ କରି ଅମର । ତାଙ୍କର ଶବ୍ଦ ଗନ୍ଥନ, ଭାଷା ଗାମ୍ଭୀର୍ଯ୍ୟ ( poetic diction ), ରସସନ୍ଧାନ ପ୍ରଣାଳୀ, ସୌନ୍ଦର୍ଯ୍ୟ ଚେତନାର ଶୁଦ୍ଧ ଉପଲବ୍ଧି ବାସ୍ତବିକ ମନୋଜ୍ଞ ଓ ଅନୁପମ । ମାନସିଂହଙ୍କର କାବ୍ୟଧାରାରେ ଦୁଇଟି ଦିଗ ଦେଖାଯାଇଛି : ପଲ୍ଲୀ ଓ ସହର, ଇନ୍ଦ୍ରିୟ ଓ ଅଗାଧ୍ୟ, ବ୍ୟକ୍ତି ବାଦ ଓ ଜାତୀୟବାଦ, ସମାଜ ଓ ବ୍ୟକ୍ତି, ବ୍ୟକ୍ତି ଓ ବସ୍ତୁ । କବି ମାନସିଂଙ୍କର ଏଇ ସୌନ୍ଦର୍ଯ୍ୟତତ୍ତ୍ୱର ସୂକ୍ଷ୍ମ ଆବେଗ ବାସ୍ତବିକ ନିଖୁଣ ଭାବରେ ଚିତ୍ର ଗ୍ରହଣ କରିଛି ପ୍ରୋଜ୍ଜ୍ୱଳ ପ୍ରତୀକ ସାହାଯ୍ୟରେ ।

ତେବେ ଏଠାରେ ଆଉ ଏକ କଥା ସ୍ମରଣ କରାଯାଇପାରେ—ବ୍ୟକ୍ତି ବସ୍ତୁକେନ୍ଦ୍ରିକ କବିତାର ଗମ୍ଭୀରତା ବା ଶାସ୍ତ୍ରୀୟ ନିୟମ କୌଣସି ସୀମାରେଖାକୁ ଅପେକ୍ଷା ନ ରଖି ସ୍ୱତଃସ୍ଫୂର୍ତ୍ତିତା ପ୍ରତି ଅଧିକ ଦୃଷ୍ଟି ଦେଇଛି—ଚରମ ସତ୍ୟ ପ୍ରତି ଆନ୍ତରିକତା, ଇନ୍ଦ୍ରିୟାନୁଭୂତ ପ୍ରତି ବିଶ୍ୱସ୍ତତା ଆଉ ମୁହୂର୍ତ୍ତର ଆତ୍ମିକ ଅବଧାରଣାକୁ ଗ୍ରହଣ କରିଛି । ତଥାପି ଚିନ୍ତାମଣି ବେହେରାଙ୍କ ଭାଷାରେ ଏହା କଣ 'ଭାବପ୍ରବଣ ପରିଭ୍ରମଣ' ନୁହେଁ କି ? ତେବେ କବି ମାନସିଂହଙ୍କର ସୌନ୍ଦର୍ଯ୍ୟପିପାସୁ ମନ ଜୀବନ ଓ ଜଗତକୁ ଉତ୍ତମରୂପେ ହୃଦୟଙ୍ଗମ କରିଅଛି । ଆପେକ୍ଷିକ କଳାବୋଧ—ଅର୍ଥାତ୍ ମାନସିଂହ ଦେଖିଛନ୍ତି—କୌଣସି ନାରୀର ଗଣ୍ଡ, ଚକ୍ଷୁ, ନାସିକା, ନେତ୍ର, ମୁଖ, ତନୁ ଗଠନର ଧାରେ ଧାରେ ଏକ ଶୈଳ୍ପିକ ସୌନ୍ଦର୍ଯ୍ୟ । ଦର୍ଶନେନ୍ଦ୍ରିୟ ସାହାଯ୍ୟରେ ବାହ୍ୟ ଓ ଅନ୍ତଃରୂପ ପରିକ୍ରମଣ ତଥା ଜଗତ ପ୍ରତି ମମତ୍ୱବୋଧ ଏଇ ରସୋପଲବ୍ଧିକୁ ବାସ୍ତବିକ ଅନନ୍ୟସାଧାରଣ କରିଛି ।

ସ୍ୱାନୁଭୂତ ପ୍ରକୃତି, ସାଧାରଣ ଅପେକ୍ଷା ନିର୍ଦ୍ଦିଷ୍ଟ ରୂପର ବର୍ଣ୍ଣନା, ଜାତୀୟ ଐତିହ୍ୟ, ସ୍ଥାନୀୟ ପରିବେଶ, ସଂସ୍କୃତି, ମଧ୍ୟଯୁଗର ଚିତ୍ର ଅତିଲୌକିକତାକୁ ଇନ୍ଦ୍ରିୟ ଓ ଅଗାଧ୍ୟବାଦୀ କବି ସ୍ୱୀକାର କରିଥାଏ । ଏଠାରେ ଅଲୌକିକ ରୂପାଲୋକର ଆକର୍ଷଣ, ରସ ସମୁଦ୍ରରେ ସ୍ନାନ, ଆକାଶର ରହସ୍ୟାଚ୍ଛନ୍ନ ନୀଳିମା ଭିତରେ ଅବଗାହନ, ସୁଷମାହ୍ରଦର ତରଙ୍ଗ ଗନ୍ଧ ଇତ୍ୟାଦି ମଧ୍ୟରେ ଇନ୍ଦ୍ରିୟବାଦୀ କବି ବିହ୍ୱଳ ଓ ନିଖୋଜ ହେଲବେଳେ ଅଗାଧ୍ୟବାଦୀ କବିର ମାନସପଟରେ ଏହାର ବିପରୀତ ଚେତନାର ପ୍ରଭାବ ପରିଲକ୍ଷିତ ହୋଇଥାଏ । ଇନ୍ଦ୍ରିୟବାଦୀ କବି ଏଠାରେ

ମୁକ୍ତିକାମୀ, ପୁଣି ବିଦ୍ରୋହୀ । ଏହାକୁ ଜାନକୀବଲ୍ଲଭ (ଭରଦ୍ୱାଜ) ସ୍ୱୀକାର କରି ପରେ ଲେଖିଥିଲେ —"ଇନ୍ଦ୍ରିୟର ଉପଲବ୍ଧି ରୂପ ରସ ନୁହେଁ, ସବୁ ଫାଙ୍କି ।"

କବି ମାନସିଂହ ବସ୍ତୁରୁ ବ୍ୟକ୍ତିକୁ, ଜଡ଼ରୁ ପୁଣି ଜୀବନକୁ ଜାଣିବାର ରହସ୍ୟରେ ବିହ୍ୱଳଚିତ୍ତ, ଯଦ୍ଦ୍ୱାରା ସେ ଖାଲି ସ୍ୱାଧୀନ ପ୍ରକୃତି ଚିତ୍ରଣ ମାଧ୍ୟମରେ, ନୀଳକଣ୍ଠଙ୍କ ତାତ୍ତ୍ୱିକ କବିତା ଭିତରେ, ଗୋଦାବରୀଶଙ୍କ ଐତିହ୍ୟ ମାଧ୍ୟମରେ ଆପଣାକୁ ପ୍ରକାଶ କରିନାହାନ୍ତି; କରିଛନ୍ତି ପ୍ରେମର ନୂତନ ଅର୍ଥ ଓ ତାର ଅଭିବ୍ୟଞ୍ଜନା ଭିତରେ ଓ ଇନ୍ଦ୍ରିୟଗ୍ରାହ୍ୟ ରସଚେତନା ଭିତରେ । ଏକ ଗଣ୍ଡୁଷରେ ସମସ୍ତ ସୌନ୍ଦର୍ଯ୍ୟର ସ୍ରୋତସମୁଦ୍ରକୁ ସେ ପାନ କରିବାକୁ ସାହସ କରିଛନ୍ତି ।

କଳ୍ପନା ଓ ଦୃଶ୍ୟମାନ ପ୍ରକୃତି, ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟତା ମଧ୍ୟରେ ଏକ ବର୍ଣ୍ଣାଢ଼୍ୟ ଇନ୍ଦ୍ରଧନୁର ତୋରଣ ସୃଷ୍ଟି କରିବାକୁ ସେ ସାଧନା କରିଛନ୍ତି । ତାଙ୍କର "ମହାନଦୀରେ ଜ୍ୟୋତ୍ସ୍ନାବିହାର" କବିତା ଅସମ୍ଭବ ରୂପତୃଷ୍ଣାର ଆକର୍ଷଣ ସୃଷ୍ଟି କରେ । ତାଙ୍କର ଅନ୍ତର୍ଦୃଷ୍ଟି **ସ୍ୱପ୍ନାଙ୍କିତ** ସୁଷମ'ବିଳାସୀ ମାନସର ରୋମାଣ୍ଟିକ ଆତ୍ମ ଉଚ୍ଚାରଣ ବାସ୍ତବିକ ଚମତ୍କାର ରୂପ ନେଇଛି । ନୀଳକଣ୍ଠଙ୍କର ପ୍ରଣୟଚେତନା ଇନ୍ଦ୍ରିୟପ୍ରବଣତା, ତ୍ୟାଗ ଓ ସଂଯମରେ ଅଧିକ ମର୍ମସ୍ପର୍ଶୀ । ଅବଶ୍ୟ ଅଣାୟତ୍ତ ନୁହେଁ । ତେବେ କାଳିଦାସ, ଉପେନ୍ଦ୍ରଭଞ୍ଜ ଆଦିଙ୍କର ଇନ୍ଦ୍ରିୟଗ୍ରାହ୍ୟ କଳ୍ପନାବିଳାସର ଆଧାର ଭୂମିକୁ ସେ ନିଜର ପୃଷ୍ଠଭୂମିରେ ରଖି ସସମ୍ମାନେ ଆପଣାର ସ୍ୱତନ୍ତ୍ର କାବ୍ୟ-ପ୍ରତିଭାକୁ ନିର୍ଦ୍ଦିଷ୍ଟ ଆଦର୍ଶ ଭିତରେ ପ୍ରତିଷ୍ଠିତ କରିଛନ୍ତି । ବ୍ୟର୍ଥତା ବିଷାଦ, ବିରହ ଯୋଗ, ଅଶ୍ରୁ ଓ ହସ ଭିତରେ ତାଙ୍କର ପ୍ରଣୟ କାବ୍ୟ ଚିର ଅମଳିନ । ତାଙ୍କର ଜୀବନ୍ତ-ପ୍ରଣୟ ଶୁଷ୍କ-ଚିନ୍ତାକୁ ସମ୍ବରଣ କରିନାହିଁ । ତାଙ୍କର subjective outlook (ବ୍ୟକ୍ତିନିଷ୍ଠ ଭୂୟୋଦୃଷ୍ଟି)ରେ କବିତା ରସୋତ୍ତୀର୍ଣ୍ଣ ତଥା କ୍ଲାସିକ ପଦବାଚ୍ୟ ।

—ଖ—

"କୋଣାର୍କ" ବିଗତଯୌବନା । ଅସହାୟ୍ୟ କୀର୍ତ୍ତିକୀଟ-କାଳଦ୍ୱାରା କୋଣାର୍କ ଆଜି ଭୂଲୁଣ୍ଠିତ । ବାରଶତ ଶିଳ୍ପୀର ଅର୍କତୀର୍ଥ ଆଜି ବି କୋଟିଦର୍ଶକର ବିସ୍ମୟ ହୋଇ ରହିଛି । ତାର କରୁଣ ଭଗ୍ନ-ଜାନୁ ଦେଖି ଆଜି ଓଡ଼ିଆ ପ୍ରାଣରେ ମର୍ମନ୍ତୁଦ ଯନ୍ତ୍ରଣାର ସ୍ୱାକ୍ଷର ଜଳଉଠେ । ଏଇ ସୂର୍ଯ୍ୟସ୍ନାତ ଚନ୍ଦ୍ରଭାଗାର ସ୍ୱର୍ଣ୍ଣ ବାଲୁଚରରେ କୋଣାର୍କକୁ ଦେଖି ଆଉ ତାର ବିପୁଳ ସ୍ଥାପତ୍ୟ କୌଶଳକୁ ଦେଖି କବି, ଶିଳ୍ପୀ, ଦର୍ଶକ, ଦାର୍ଶନିକ କରୁଣ ଭାବାବେଶରେ ମୁହ୍ୟି ରହେ । ଏଇ ସ୍ୱନାମଧନ୍ୟ ଚନ୍ଦ୍ରଭାଗାର ସୂର୍ଯ୍ୟ ମନ୍ଦିରର ଭଗ୍ନାବଶେଷକୁ ଦେଖି ଦିନେ ନୀଳକଣ୍ଠ, କୁଞ୍ଜବିହାରୀ, ଗଡ଼ନାୟକ, ସଚି ରାଉତରାୟ ଆଉ ରବି ସିଂହ ବ୍ୟଥିତ ବିକ୍ଷୁବ୍ଧ

କ୍ରୋଧାନ୍ୱିତ ଶୋକାର୍ତ୍ତି କ୍ରମଶଃ ହେଲାବେଳେ କବି ମାନସିଂହ ଏଇ କାଳଜୟୀ କୀର୍ତ୍ତିକୁ ପ୍ରେମିକର ଦୃଷ୍ଟିରେ ଦେଖିଛନ୍ତି । କୋଣାର୍କ କଣ ତାଙ୍କ ଦୃଷ୍ଟିରେ ଅପାଙ୍ଗ୍ ଶ୍ରେୟ ମୂର୍ତ୍ତିତଯୌବନା ? ସମ୍ଭବତଃ ତାଙ୍କର ଏଇ ପ୍ରିୟ କୋଣାର୍କକୁ ସେ ଅନ୍ତର ଦେଇ ଭଲ ପାଇଛନ୍ତି । ତାଙ୍କର ସ୍ୱଚ୍ଛ ପବିତ୍ର ଆଉ ଶୈଳ୍ପିକ ଦୃଷ୍ଟିରେ କୋଣାର୍କ ସୁନ୍ଦରୀ, ତାର ସୌନ୍ଦର୍ଯ୍ୟର ସୀମାହୀନ ବ୍ୟାପ୍ତି ତାଙ୍କୁ କଳ୍ପ ଲୋକକୁ ନେଇଯାଇଛୁ । ଅତୀତର ସେଇ ସ୍ୱର୍ଣ୍ଣଯୁଗର ପ୍ରଥମ ସକାଳକୁ ସ୍ମରଣ କରି କବି ତାଙ୍କର ଭୂୟୋ-ଦୃଷ୍ଟିରେ ବାରଶତ ଶିଳ୍ପୀଙ୍କର ନିଖୁଣ ଶିଳ୍ପାଙ୍କନକୁ ଭୂୟସୀ ପ୍ରଶଂସା ଖାଲି କରିଛନ୍ତି, ତାହା ନୁହେଁ, ସେମାନଙ୍କର ନିହାଣ ମୁନର ସେଇ ସୃଜନୀ ଶକ୍ତିକୁ ଅଭିନନ୍ଦନ ଜଣାଇଛନ୍ତି । ତାଙ୍କର ପ୍ରେମବିହ୍ୱଳ ଦୃଷ୍ଟିରେ କୋଣାର୍କ ଶିଳାକୁମାରୀର ପ୍ରେମ, ଅନୁରାଗ, ପୂର୍ବରାଗ, ଲଜ୍ଜା, କୁଣ୍ଠା ଆଦି ରସଚେତନାର ମୁଦ୍ରାଙ୍କ ବାସ୍ତବିକ ଅନନ୍ୟସାଧାରଣ । ଅନେକ ସକାଳ ଓ ଗୋଧୂଳିର କୋଳରେ ସ୍ୱବର୍ଣ୍ଣ ସୂର୍ଯ୍ୟଙ୍କର ସ୍ୱର୍ଣ୍ଣାଭ ନେତ୍ରରେ କୋଣାର୍କର ଅଭିସାରିକା ପ୍ରୋଷିତଭର୍ତ୍ତୃକା ନର୍ତ୍ତକୀ ରୂପସୀ ଶିଳାନାରୀମାନଙ୍କର ବିଭିନ୍ନ ଦଶା, ପ୍ରସାଧନ କ୍ରୀଡ଼ା, ହାସ୍ୟ ଇଙ୍ଗିତ ଆଦି ରୂପର ଇନ୍ଦ୍ରଧନୁ ସୃଷ୍ଟି କରିଛୁ । ପ୍ରାଣୋଚ୍ଛ୍ୱଳ ରସ ନୁଭୂତିରେ ରଚିତ ମାନସିଂହଙ୍କ କୋଣାର୍କ କାବ୍ୟ ଅନିନ୍ଦ୍ୟ ଓ ମନୋଜ୍ଞ । ତାଙ୍କର କବିପ୍ରାଣରେ ଜୀବନ୍ତ ରୂପ ନେଇ ଠିଆ ହୋଇଥିବା ଏଇ ଅଳସକନ୍ୟା ଆଉ ମୃଦଙ୍ଗବାଦିନୀମାନେ ସତେ ଯେପରି ଉଠିଆସିଛନ୍ତି ଜୀବନ୍ୟାସ ମାଗି ସ୍ୱର୍ଗରୁ—ମାନସିଂହଙ୍କର ଅମୃତମୟ ଲେଖନୀ ସ୍ପର୍ଶରେ ଅବା ଜୀବନ୍ତ, ସେଇ ବିରହୀମାନଙ୍କର କଥୋପକଥନ ମାଧ୍ୟମରେ କବି ତାଙ୍କର ଆବେଗମୟ ଚିନ୍ତାକୁ ରୂପ ଦେବାକୁ ଚେଷ୍ଟା କରିଛନ୍ତି । ପାଷାଣ ବି ସଜ ସଚେତ ଫୁଲ ପରି ବେଶ୍ ଫୁଟିପାରେ ରସିକର ମାନସଉପବନରେ । କାହାର କରସ୍ପର୍ଶରେ ପଷାଣରେ ଏ ପ୍ରାଣପ୍ରାଚୁର୍ଯ୍ୟ ? କବିଙ୍କର ଊର୍ଦ୍ଧ୍ୱିକ୍ ଅନୁଧ୍ୟାନ, ସୌନ୍ଦର୍ଯ୍ୟାନୁଭୂତି ସ୍ୱପ୍ନ ଆଉ କଳ୍ପନାବିଳାସର ଆନ୍ତରିକ ଆବେଗମୟତା ତାଙ୍କୁ ଇନ୍ଦ୍ରିୟଭୋଗ୍ୟ କବିର ଶୀର୍ଷକୁ ନେଇଯାଇଛୁ ।

କୋଣାର୍କକୁ ସେ ଦେଖିଛନ୍ତି ବିହ୍ୱଳ ଦୃଷ୍ଟିରେ—ସେ ହୋଇଉଠିଛନ୍ତି ଏକାତ୍ମ । ବକ୍ଷର ପଦ୍ମକୋରକ, ମୃଣାଳନିନ୍ଦୀ ବାହୁଯୁଗ, ଉଲଙ୍ଗ ନୀବୀ, ଉଚ୍ଚସ୍ଥିନୀ ଖୋପା ଦେଖି ଶୃଙ୍ଗାରୀ କବି ପ୍ରଗଲ୍‌ଭ ହୋଇଉଠିଛନ୍ତି । ଏଇ ନଟନଟୀମାନଙ୍କର ଅଙ୍ଗରେ ଲାସ୍ୟ—ଏଇ ଅଳସ ମୁଗ୍‌ଧ ଲାସ୍ୟ ଓ ଚପଳତା ଭଙ୍ଗୀରେ ଭରା ସେଇ ତନ୍ୱୀ ଗନ୍ଧର୍ବୀମାନଙ୍କୁ ଆଜି ମଧ୍ୟ ଦେଖିଲେ ହୃଦୟ ସ୍ତବ୍ଧ ଓ ବିଦ୍‌ଗ୍ଧ ହୋଇ-ଯାଏ । ଅତ୍ୟଧିକ ଆନନ୍ଦପ୍ରବଣତା ଭିତରେ ମିଳନମୁଖୀ ଓ ପ୍ରତୀକ୍ଷିତ ଆତ୍ମାର ସକରୁଣ ଯୌନ ବେଦନା ଓ ତାର ନିବେଦନ ଆବେଦନ ପ୍ରତ୍ୟେକ ତରୁଣ ତରୁଣୀ ପ୍ରାଣକୁ ଆନ୍ଦୋଳିତ କରିଥାଏ । ମାତ୍ର ରସିକତାର ଜଗତ୍‌ବ୍ୟାପୀ ଝଲକା ଭିତରେ ଜ୍ୱଳନର ଦରଜ ସୁକୁମାର ଚନ୍ଦ୍ର ପରି ଉଦୟ ହୋଇଛୁ । ଏଇ

ଅତୀନ୍ଦ୍ରିୟତାବୋଧ ଚେତନାସମୁଦ୍ରରେ ବୁଡ଼ ପକାଉଥିବେଳେ ଦର୍ଶକ ପବିତ୍ର ଆଖିରେ ଦେଖେ—

ଏକ ସୌନ୍ଦର୍ଯ୍ୟ ବିନ୍ଦୁ ( beauty spot ) କୋଣାର୍କର ସୂଚୀ-ଶିଳ୍ପ ଆଉ ସ୍ଥାପତ୍ୟର ଅଲୌକିକ ଆକର୍ଷଣ ଅନେକ କବିଙ୍କ ପ୍ରାଣକୁ ବିଭିନ୍ନ ଆବେଗରେ ଶ୍ରୀମଣ୍ଡିତ କରିଥିଲେ ମଧ୍ୟ କବି ମାନସିଂହଙ୍କର ଏଇ ସୌନ୍ଦର୍ଯ୍ୟଗ୍ରାହୀ ପ୍ରାଣବନ୍ତ କାବ୍ୟ ଚେତନା ଅଧିକ ଉଚ୍ଛ୍ୱସିତ । ଏହାର ରମ୍ୟବୋଧ ଲାଳିତ୍ୟ, ବେଦନା-କାତରତା, ଅନୁଭୂତିପ୍ରବଣତା, କମନୀୟତା ବିଳାସୀ ଦୃଷ୍ଟିଭଙ୍ଗୀ ତାଙ୍କର କୋଣାର୍କ କାବ୍ୟକୁ ଉଚ୍ଚକୋଟୀକୁ ନେଇଯାଇଛି । ସେ ଏକାଧାରରେ ରୋମାଣ୍ଟିକ କବି-ସ୍ରଷ୍ଟା-ପ୍ରେମିକ । ଏଠାରେ ଇନ୍ଦ୍ରିୟଭୋଗ୍ୟର ଦୃଶ୍ୟମାନ ଆକାଙ୍କ୍ଷା ନ ଥିବାରୁ ଇନ୍ଦ୍ରିୟାତୀତ ବା ଅତୀନ୍ଦ୍ରିୟତାକୁ ଗ୍ରହଣ କରିଛି । ଅତୀତମୁଖୀ ସ୍ୱପ୍ନ ଆଉ କଳ୍ପନା ଭିତରେ ତାଙ୍କର ଏଇ ଗଭୀର ଜୀବନାନୁଭୂତିର ଗୀତ ଚମତ୍କାରଭାବେ ଆତ୍ମପ୍ରକାଶ କରି ଜୀବନ୍ତ ହୋଇଛି । କବି ଏଠାରେ ସଂଜ୍ଞାଧିବମୁକ୍ତ ମାନସିକ ସ୍ତରରେ । ତାଙ୍କ ଦୃଷ୍ଟିରେ—

ପ୍ରଥମ ବିରହ—ପୂର୍ଣ୍ଣିମା ଜହ୍ନ ମା  
            ଛୁଇଁଦେଇ ନରମେ  
ସୁଇଁକନ୍ତ ଚମକିଲି,  
            ଜୁଡ଼ା ଖସେ ଚରମେ ।

ଦ୍ୱିତୀୟ ବିରହ—କିଏ ସେ ଲୋ ବଲ ବଲ  
            କରି ଆଜ ଗୁହାଁଲା,  
ଧୀରେ ମୋର ବକ୍ଷର  
            ବୃନ୍ତରେ ଛୁଇଁଲା;  
କେଶପାଶେ ଆଉଁସିଲା  
            ଲସାଇଲା ମରମ,  
ଗଣ୍ଡରେ ଚପି କରେ  
            ଜଣାଇ ଘରମ;  
ସେ ସରମେ ମନେ ମନେ  
            ମରିଗଲି ସଖୀ ରେ,  
ପାଖ ସଖୀ ଅଛି ଦେଖି  
            ସବୁ କଥା ଆଖିରେ ।

ପ୍ରଥମ ବଗନ୍ଧ—କୁସୁମାକୁ ଆସିବାକୁ
ଡାକ ଦେଲେ ଉତ୍ଥଳ,
ଜ୍ୟୋଛନାର ସଞ୍ଚାର
ପାଣି କରେ ପଥର;
ଡାକ ଆଣ ଆଖି ବାଣ
ଗୁଡ଼ିବେ ଏ ବେଳାରେ,
ଦନଯାକ ରନ୍ଧ୍ର ମୂକ
ସଢ଼ିବା କ ହେଳାରେ !

ତୃତୀୟ ବଗନ୍ଧ—ହେଲ ବେଲ ଚଞ୍ଚଳ
ଆରମ୍ଭ ବରଣ,
ଭଲ ପାଇ ଅସ୍ଥିର
ମୋର ଦୁଇ ଚରଣ;

ଚତୁର୍ଥ ବଗନ୍ଧ—ଆସ ଯେତେ ସଙ୍ଗିନୀ
ଆନନ୍ଦ ରଙ୍ଗା
ବାରଣତ ଶିଳ୍ପୀର
କଳ୍ପନା ଗଙ୍ଗା,
ନାଚ ନାଚ ଯୁଗ ଯୁଗ
କ୍ଲାନ୍ତ ତ ନାହିଁ ରେ
ଏ ଜୀବନ ନବେଦତ
ଦେବତାର ପାଇଁ ରେ !

—ଗ—

ମାନସିଂହଙ୍କ ଆତ୍ମଲୀନତା ବାସ୍ତବକ ଅନନ୍ୟସାଧାରଣ । ତାଙ୍କର ଇନ୍ଦ୍ରିୟାନୁଭୂତ ଅତୀବ ତୀକ୍ଷ୍ଣ । ତାଙ୍କର ତାରୁଣ୍ୟ ହୋଇଛି ଆକାଶଚୁମ୍ବୀ । ସ୍ୱପ୍ନଲୋକର ବଭୂତ ଯୋଗୁ କେତେବେଳେ ଭାବବହ୍ୱଳ ତାପସ, କେତେବେଳେ ମାଟିର ଗନ୍ଧରେ ସେ ପାଗଳ ।

ଭାବଥିଲ ଯିବ ଅସୀମ ପଥେ,
ସୁରଭି-ଶୀତଳ ମଳୟ ରଥେ,
କୁସୁମ ଫଗୁଲ ଫଗୁଣ ପୁରେ,
ବାନ୍ଧ ଗୋ ଦୂରେ ।

ବାସ୍ତବତାର ମାଟିକୁ ଛାଡ଼ି ସେ ଆକାଶଗ୍ରସ୍ତ ହେଲେ କେତେ ବ୍ୟସ୍ତ-ଚକିତ ।
କେତେ ତରୁଣସୁଲଭ ବିଫଳ ଅଭିମାନ—

ଗରବ କବରେ ଫସାର ପୀଡ଼େ,
କବିତାକୁ ବେଲ ନାହିଁ ଏ ଭିଡ଼େ,
ଫଗୁଣ ଚଳଇ ଚଇତ ଆସେ,
କି ଯାଏ ଆସେ !

ମାତ୍ର ସେତେବେଳେ ତାଙ୍କର ସଚେତନ ଭାବଯନ୍ତ୍ରାର ଆମକୁ ବି ପ୍ରଲୁବ୍ଧ କରେ ।
କାଳିଦାସ, ଓମର ଆଉ ଉପେନ୍ଦ୍ରଙ୍କ ଭଳି ସେ ଗାହିଛନ୍ତି—

"ପାଣରେ ଥାଆନ୍ତା ରସ କବିତା,
ଚିର ଯଉବନ ପ୍ରଣୟ ଗୀତା;
ପ୍ରେୟସୀ ଗାଆନ୍ତା, ଚୁମ୍ବନ୍ତ ମୁଖ,
ପୂରନ୍ତା ବୁକ ।"

ସମାଜ କିନ୍ତୁ ନିଷ୍ଠୁର । ଏଣୁ କବି ମୁକ୍ତି ପାଇଁ ଏକାକୀ ତୀକ୍ଷ୍ଣ ଖଡ଼୍ଗ ହାତରେ ଯୁଦ୍ଧ ମାଗିଛି—ବିଦ୍ରୋହ କରିଛି । ପ୍ରେମ ଅବୈଧ ନୁହେଁ—ନାରୀମାନେ କୁଳଟା ନୁହନ୍ତି—ପୁରୁଷ ବ୍ୟଭିଚାରୀ ନୁହେ । ସମାଜର ତୀକ୍ଷ୍ଣ ଶ୍ଳେଷ ବ୍ୟଙ୍ଗ ବିଦ୍ରୁପ ଶରାଘାତରେ ପ୍ରେମିକ କ୍ଷତାକ୍ତ । ପ୍ରେମ କେବେ ପାପ ନୁହେଁ । ଏଣୁ କବି ସମାଜକୁ ମୂର୍ଖ ବୋଲି ଆଖ୍ୟା ଦେଇଛନ୍ତି । କାରଣ ନିର୍ମମ ଅପରାଧ ଅପବାଦକୁ ନେଇ ପ୍ରଣୟୀ ପ୍ରଣୟିନୀ ବ୍ୟଥିତ ଚିତ୍ତରେ ସମାଜରେ ବାସ କରୁଛନ୍ତି । ଅସତୀର ହୃଦୟକୁ ସେ ପରଖି ଦେଖିଛନ୍ତି । ସମ୍ବେଦନଶୀଳ ଚିତ୍ତ ତାଙ୍କୁ ଉଚ୍ଚ ଆସନ ଦେଇଛୁ । ସିଏ ହୃଦୟ ଚକ୍ଷୁରେ ସେ ପରମ ପୂଜ୍ୟ ମହିଳା । ସେ କେବେ ଅସତୀ ଘୃଣ୍ୟା କୁଳଟା ହୋଇପାରେନା । ମନର ମଣିଷକୁ ସବୁ ଦେଇ ବ୍ୟାଥାବିଧୁର ପ୍ରାଣ ନେଇ ସେ ବଞ୍ଚିରହେ । ତାର ଅଶ୍ରୁଳ ନିବେଦନ କେବେହେଲେ ପାପ ନୁହେଁ । ଏଇ ବିଳାପମୁଖର ଅସହାୟା ଅସତୀ ନାରୀ ପାଇଁ ନୀତି ଧର୍ମ ପାପ ବାଧାବନ୍ଧନ—

ଆଦରେ ଆଦ୍ର ହେଉ ମୋର ପାପ ରଜନୀ,
ପାପ ଦେଇ ମତେ ପୀୟୂଷ ପିଆଅ, ସଜନୀ !

ସମାଜକ ପ୍ରତିଷ୍ଠା ଏଠାରେ ତୁଚ୍ଛ । ପ୍ରେମିକାର ପ୍ରେମଦାନ ସବୁଠାରୁ ମହାର୍ଘ୍ୟାନ । ଅସହିଷ୍ଣୁ ସମାଜ ଈର୍ଷାପର ହୋଇ ଏ ପ୍ରେମକୁ କଳଙ୍କ ଅପବାଦ ଅପରାଧ ବୋଲି ଆଖ୍ୟା ଦିଏ । କବି ମାନସିଂହଙ୍କ ଆବେଗମୟ କଣ୍ଠରେ କେତେ ଆଗ୍ରହ । ପ୍ରିୟା ଚଲାପଥର ଘାସ ହେବାକୁ, ଚଲାପଥର ସୁରଭିମାଖା ରେଣୁ ଗୋଟାଇବାକୁ ସେ ଆଗ୍ରହ ପ୍ରକାଶ କରିଛନ୍ତି । ନିର୍ଜନ ନିଶୀଥ ବିହାର ପାଇଁ ପ୍ରତୀକ୍ଷାର ଜ୍ୱାଳା କମ୍ ନୁହେଁ ।

ପ୍ରିୟାକୁ ଲଭିବାର ନାହିଁ ତ ଆଶ,
ପ୍ରିୟ ପାବନ ପଥେ ହୁଏ ମୁଁ ଘାସ,
ସେ ପଥରେଣୁ ତଳେ,
ପ୍ରିୟାର ସୁକୋମଳ ଚରଣ ଦାସ,
ସେ ଲଭେ ହେବ ମୁହିଁ ସେ ପଥେ ଘାସ ।

ତଥାପି ପ୍ରତ୍ୟୟ କାହିଁ ! ତାଙ୍କର ରୂପସୀ ରାଣୀ ପ୍ରିୟାର ସ୍ପର୍ଶରେ ସେ ନିଜକୁ ଅତି ଭାଗ୍ୟବାନ ମନେ କରିଛନ୍ତି । ସେ ସମ୍ରାଟ—ଗୁରୁ ଗୌରବର ଅଧିକାରୀ । ରୂପ-ବିଭବରେ ରାଣୀ ହୋଇ ପ୍ରେୟସୀ ଦରିଦ୍ର ପ୍ରେମିକ ପ୍ରତି ସଦୟ—

ଧୀନହୀନେ ଏଇ ମହାସମ୍ମାନ ଛାଲ
ଚଉଦିଗେ ଖାଲି ଉଠାଇଚ କରତାଳ ।

ମାତ୍ର ଜନତାର ଏଇ ତୀବ୍ର ନିନ୍ଦା ଇସ୍ତାହାରରୁ ମୋତେ ରକ୍ଷାକର । ପ୍ରଥମ ଶୁଭଚକ୍ଷୁ ମିଳନ ହିଁ ଏ ସାମାଜିକ ବିପଦ ପାଇଁ ଦାୟୀ । ଏଣୁ ସେ କହିଛନ୍ତି—

"ତୁମେ କାହିଁ ଥିଲ, ମୁହିଁ କାହିଁ ଥିଲି, ଥିଲି କି ଚହ୍ନା ?
ଦୁହିଁଙ୍କ ଜୀବନ ସୁଖେ ଚଳୁଥିଲା ଦୁହିଁଙ୍କ ବିନା ।"

ତା'ପରେ କୁଳମାନ ଖ୍ୟାତିକୁ ତ୍ୟାଗ କରି ସମସ୍ତ ଅପବାଦକୁ ଗଳାଧଃକରଣ କରି, ଅସହିଷ୍ଣୁଙ୍କ ଈର୍ଷା ଅଛା, ଗୁରୁଜନମାନଙ୍କର ଗାଳି ଲାଞ୍ଛନା ସହ୍ୟ କରି ଓ କୁସୁମ-କୋମଳ ତନୁରେ କଠିନ ବ୍ୟଥା ଓ ଯନ୍ତ୍ରଣା ବହନ କରି ଲଜ୍ଜାନତା ପରକୀୟା ତାଙ୍କ ପାଇଁ କେତେ ପ୍ରତୀକ୍ଷା ନ କରିଚ ! କବିଙ୍କ କାକୁସ୍ଥ କଣ୍ଠରେ—

"ହାୟ ରାଣୀ ଦୁଇ ଅଚହ୍ନା ସେଦିନ ମିଳିଲେ କାହୁଁ,
ଜୀବନଟାସାକ ସହିବ କି ହେଲା ମିଳନ ଦାଉ ।"

ଦୁଃଖ ଆଉ ବ୍ୟଥ , ଅଶ୍ରୁ ଆଉ ନୀରବତା ଭିତରେ ପ୍ରଣୟର ଆଗ୍ନେୟ ସ୍ପର୍ଶ ଅନୁଭବ କରିଛନ୍ତି । ପ୍ରଣୟ-ଯଜ୍ଞର ଅଗ୍ନି-ଆହୁତିକୁ ପ୍ରଜ୍ଜ୍ୱଳିତ କରି କହିଛନ୍ତି—ଏଇ ପ୍ରେମରେ ସେ ବିଫଳ ନୁହନ୍ତି, ସଫଳ । ତାପଦଗ୍ଧ ତନୁରେ ପ୍ରିୟା ନାମର ଉଚ୍ଚାରଣ ଉପଶମର ଚମତ୍କାର ମହୌଷଧି । ସେ ଧୂପ ଭଳି ଜଳି ଅନ୍ୟକୁ ଗନ୍ଧବିଭୋର କରିବାକୁ ଚାହିଁଛନ୍ତି ।

ମନେହୁଏ ଧୂପସମ ଦଗ୍ଧ ହୋଇ ବାଷ୍ପ ଯିବ ହୋ'ଇ,
ପ୍ରଣୟର ଅଗ୍ନି ଶେଷେ ପ୍ରଣୟର ଭସ୍ମ ଯିବ ଥୋଇ ।

ଦକ୍ଷର ଯଜ୍ଞବେଦୀରେ ପ୍ରିୟା ଦେବତା । ଆତ୍ମା ଯଜ୍ଞ-କାଠ ବେଳେ ପ୍ରିୟା ମମତାର ଘୃତାହୁତି । ତନୁରେ ଅପୂର୍ବ ସୀତ୍କାର, ଅନେକ ରୋମାଞ୍ଚ । ଅନେକ

ଭାବବତ୍ସଳ ଭାବ । ଅନେକ ଅଚେତନା ଭିତରେ ତାଙ୍କର ସ୍ମୃତି । କବି ଉଦାର-କଣ୍ଠରେ ନଃସ୍ୱ ଭ୍ରାନ୍ତ ହୀନ ଦୀନ ଅକିଞ୍ଚନ ବୋଲି ସ୍ୱୀକାର କରିଛନ୍ତି । କେତେବେଳେ ବିଚ୍ଛେଦ ଦୁର୍ବଳ ବ୍ୟଥିତ ବିକୃତ ବିଦ୍ରୋହୀ ଉନ୍ମନ ହୋଇଉଠନ୍ତି । ପ୍ରଣୟ-ସାଧକ କବି କହିଛନ୍ତି—ଦ୍ରୌପଦୀ ଓ ପ୍ରଣୟଭିକାରି ସୁଭଦ୍ରା ଆଉ ଅର୍ଜୁନ, ପାର୍ବତୀ ଆଉ ଶିବ—ଏଇ ପୁରାଣଶ୍ରେଣିକ ନାୟିକା ନାୟକଙ୍କର ଏକାଗ୍ରତା ତ୍ୟାଗ ତପସ୍ୟା ସେବା, ଆଉ ପ୍ରେମ ନଙ୍କର ପ୍ରାଣ ଟାଣି ଦେଇଦେବାର ସ୍ୱୀକୃତିକୁ ମାନିବାକୁ ହେବ । ଲୁହ ତଳେ ପାପପୁଣ୍ୟର କିଛି ବିଚାର ନାହିଁ । ପ୍ରେମ ପାଖରେ ଦୂର ଆଉ ନିକଟର ଅର୍ଥ କଣ ? ସମସ୍ତ ଆଦାନ ପ୍ରଦାନ ଭିତରେ—

'ଲୁହ ଦେଇ ପ୍ରିୟା ଲୁହ ବୁହାଇଛି ନୟନୁ ମୋର,
ପ୍ରେମ ଦେଇ ମୋତେ କରିପକାଇଛି ପ୍ରଣୟଚୋର ।'

ମାନସିଂହ ପ୍ରଣୟିନୀ କେବେ ବନ୍ଦିନୀ, ଯା'ର ପାଚେରୀ ତା'ର କଣ୍ଠସ୍ୱର ଶୁଣିବାରେ ଭାଗ୍ୟବାନ୍—ଯା'ର ଚଟାଣର ପାଷାଣ ପ୍ରିୟାର ଚରଣ ଗୁରୁଭାର ବହନ କରି ଗୌରବାନ୍ୱିତ । ଲୀଳାମୟୀର ଲୀଳାଚଞ୍ଚଳତା ଗୃହର ଶିଳାକୁ ଜୀବନ୍ତ କରିଛି । ଗୃହକର ପ୍ରଣୟୀ ଜୀବନର ଧ୍ରୁବତାରା । କାରାଗୃହରେ ପ୍ରିୟାର ଲୀଳାୟିତ କଙ୍କଣର ସୁମଧୁର ଧ୍ୱନି ଶୁଣିବା ସମ୍ଭବପର ନୁହେଁ, ତାର କଳା ଆଖିରୁ ଲୁହ ପୋଛିବାର ଉପାୟ ନାହିଁ । ତେବେ ସେ ମଳୟର ରୂପ ଗ୍ରହଣ କରିବାକୁ ଚାହିଁଛନ୍ତି । କାଳିଦାସୀ ମେଘ, ନୈଷଧୀୟ ହଂସ, ଉପେନ୍ଦ୍ରଙ୍କର ଭଙ୍ଗୁର ଦୂତ ପବନ ପରି ଦୂତ ଖୋଜିଛନ୍ତି ମଳୟକୁ । କେତେବେଳେ ଜୟଦେବଙ୍କ 'ଦେହି ପଦପଲ୍ଲବମୁଦାରମ୍'କୁ ବିଶ୍ୱାସ ରଖି ଅବା ରାଧାନାଥୀ ପଥାପଥର ପରି ଅତ୍ୟନ୍ତ ଦୟନୀୟ କୃତିମ ନ ହୋଇ ଶିଳାତଳ ହୋଇ ପ୍ରିୟାର ପାଦସ୍ପର୍ଶ ମାଗିଛନ୍ତି । ଶିଳାତଳର ପ୍ରତ୍ୟେକ ରେଣୁ ଜୀବନ୍ତ ହୋଇଉଠିବା ବିଡ଼ମ୍ବନା ହୋଇଛି । ପୁଣି ଏହା ଅସମ୍ଭବ ହେତୁ ସେ ସଚେତନ ହୋଇଉଠିଛନ୍ତି । କଥା କଳିକା ଜୁଡ଼ାରେ ମାରି ନିତ୍ୟ ସଜଳନେତ୍ରରେ ପ୍ରିୟାର ପ୍ରତୀକ୍ଷା, ପୁଣି ପ୍ରିୟ ଭାବରେ ପ୍ରିୟାର ବସନକୁ ଜାକିଧରି ସେ ଅସୀମ ସୁଖ ପାଇଛି । ଏଣୁ ମଳୟ ହୋଇ ସେ ଯାଇ ଅସଜଡ଼ା ବ୍ୟସ୍ତବ୍ୟାକୁଳ ଜୁଡ଼ାକୁ ସଜାଡ଼ିଦେବେ, ଅବା ମଳୟ ସଜାଡ଼ି ଦେବ । ଅବଶେଷରେ ସେ କହିଛନ୍ତି—

''ରୂପ ତାରେ ଦିଅ, ସ୍ନେହ ମାଗେ ପ୍ରିୟ, ଲକ୍ଷେ ଯୋଜନ ଦୂରୁ
ଦିନେ ଦିନେ ଖାଲି ମଙ୍ଗଳ ଧୂପ ମୋ ନାମେ ଉଠୁ ସେ ପୁରୁ ;
ଉପଚ୍ଛେଦ ପ୍ରଣୟର
ତାହାଠାରୁ ବଳି ନାହିଁ ପ୍ରିୟତମ ପବିତ୍ର ମନୋହର ।''

ପୁଣି ବତୀ ଲିଭାଇଦେଇ କୃଷ୍ଣବର୍ଣ୍ଣର ବସ୍ତ୍ର ପରି ଭୟଶୂନ୍ୟା ଅଭିସାରିକା ବର୍ଷାଭିସାର ଆରମ୍ଭ କରେ—ନୂପୁର ଶବ୍ଦ ନିକଟ ହୋଇଆସେ । କଦମ୍ବ କୁସୁମର ଗନ୍ଧ ପାଖେଇଆସେ । ସେ ପଥଘାସର ତୀକ୍ଷ୍ଣ ଧାର ବାଜି ପ୍ରିୟାର କାଲେ କଷ୍ଟ ହେବ ଏଣୁ କବି ଘାସକୁ ନଇଁଯିବାକୁ କୋମଳ ଅନୁରୋଧ କରିଛନ୍ତି । ପଥ କୋମଳ ହୋଇଛି । କାଲେ ଭୀରୁ ତନୁରେ ଯନ୍ତ୍ରଣାର ଶିହରଣ ସୃଷ୍ଟି ହେବ । ଶେଷରେ ସେ ତାଙ୍କର ସ୍ୱୀକୃତି ଦେବାକୁ ଯାଇ କହିଛନ୍ତି—

"ଯାହା କିଛି ମୋର ଅଛି ସବୁ ଦେବି ତୁମରେ
ନିଖିଳ ହୃଦୟ ଢାଳିବି ଏ କରକମଳେ ।"

ମାନସିଂହଙ୍କର ଏକ ପ୍ରେମ-ଦରଦୀ କଣ୍ଠସ୍ୱର କୋଟିକଣ୍ଠକୁ ମୁଖରିତ କରିଛି । ବସନ୍ତର କୁସୁମିତ ଏକ ଆମ୍ର ସହକାରତଳେ ନିଶୀଥ ବିହାରର ବଂଶୀ ବାଜିଉଠିଥିଲା । ପ୍ରଣୟ-ବିଭୋର ପ୍ରାଣରେ ଜହ୍ନ ଆଲୁଅ ଆଉ ଛାଇ, ବନପକ୍ଷୀର କରୁଣ ସ୍ୱର, ମଳୟର ସ୍ପର୍ଶରେ ଅଭିସାର ସ୍ମୃତିମୟ ହୋଇଥିଲା । ଭୀରୁ ଶଙ୍କିତା ଗୋପୀର ଅଧର-ମଦ୍ୟ ପାଇଁ, କଙ୍କଣର ସୁମଧୁର ସଙ୍ଗୀତ ଶୁଣିବା ପାଇଁ, ଶିଥିଳ ବାହୁପାଶର ଆଶ୍ଲେଷ ପାଇଁ, ନାଗରିକାର ଚୁମ୍ବନାକୁଳ ଶିଥିଳ ଚିକୁରର ନରମ ସ୍ପର୍ଶ ପାଇଁ, ପ୍ରିୟାବାସ ଉଡ଼ିବାର ଦୃଶ୍ୟ ଦେଖିବାପାଇଁ ମାନସିଂହ ପ୍ରାଣ କେତେ ବ୍ୟାକୁଳ ହୋଇଛି ! ସେଇ ସହକାରତଳେ ମୁକ୍ତ କଣ୍ଠରେ କହିଛନ୍ତି—

"କ୍ଷଣକର ସୁଖେ ଦରିଦ୍ର ମୁହିଁ ସମ୍ରାଟ ହୋଇଉଠେ,
କେହି ପାଇନାହିଁ ଦଣ୍ଡେ ଯା' ଦେଲା ପ୍ରିୟା ମୋତେ ଓଠପୁଟେ ।"

ମାତ୍ର ସମାଜର ଦାରୁଣ ଦଣ୍ଡାଘାତରେ ସେଇ ସହକାରତଳ ଶୂନ୍ୟ ହୋଇଛି । ବିରହକାତର ଦୁର୍ବିଷହ ଜୀବନ ପୁଣି ବିରାଗିତ ହୋଇଉଠିଛି । ପ୍ରେମ ବିରହ ଅଶ୍ରୁ—ସବୁଦିନେ ସତ୍ୟ । ଅଭିମାନୀ କବି କବିତା ସଜାଇବା, ଗ୍ରନ୍ଥ କରିବା, କୁଙ୍କୁମ ଲେଖିବାକୁ ଆଗ୍ରହ ପ୍ରକାଶ କରିନାହାନ୍ତି । ସମସ୍ତେ ପ୍ରଣୟ ଉତ୍ସବରେ ଯୋଗ ଦେଲାବେଳେ ବସନ୍ତ ଋତୁ ଉପଭୋଗ କରିବାକୁ ସେ ରହିନାହାନ୍ତି । ଏ ସମୟରେ 'ଦୁହେଁ ଦୁଇଦେଶେ, ବ୍ୟର୍ଥ ଏ ମଧୁମାସ ।' ଅଥଚ ବକ୍ଷଭରି ପ୍ରଣୟ ଦେବାକୁ କବି ବ୍ୟଗ୍ର । କେଉଁ ଅଦୃଶ୍ୟ ଆକର୍ଷଣୀୟ ସତ୍ତ୍ୱାକୁ ପାଇଲେ ସେ ଜରା ଓ ମରଣକୁ ଭୁଲିଯିବେ । ବାସନ୍ତୀ ପରିବେଶରେ ସେ ଉନ୍ମତ୍ତ—ତଥାପି ଆଖିରେ ଅଶ୍ରୁ । ସେ ନିଃସ୍ୱ ଅସହାୟ—ତେବେ ରିକ୍ତରେ ବିଳାପ କାହିଁକି ? ବାସକସଜ୍ଜାର ଅଭିସାର ଆଜି ବ୍ୟର୍ଥ, ତଥାପି ବିରହୀ ବୁକୁରେ ଅଭିନବ ଅନୁଭବ ଦେଇଛି । ପ୍ରେମ ପ୍ରକୃତିରେ କଷ୍ଟକର, ମାତ୍ର ତାପସୀ ଜୀବନରୁ କଠୋର । ବର୍ଷା ଆସେ । କବି ନିଃସଙ୍ଗ । ବଂକ୍ରକୈନ୍ଦ୍ରଙ୍କ କଳ୍ପନା ଆଉ ବାସ୍ତବର ଦୋଛକିରେ ଠିଆ ହୋଇ ସେ କହିଛି—କେହି ତାଙ୍କର କଥା ବୁଝିବାକୁ ନାରାଜ । ବର୍ଷା ଆଉ

ପ୍ରେମର ଆଲିଙ୍ଗନ ଦେଖି ସେ ବ୍ୟଥିତ । ପ୍ରେମର ଭାଷା ମାନବତା ଭିତରେ ଫୁଟିଉଠେ । ସ୍ମୃତି ଆଉ ବିସ୍ମୃତି ଭିତରେ ପ୍ରେମର ରୂପ ମଧୁର ହୋଇ ଝରିପଡ଼େ । ସ୍ୱର୍ଣ ଅଛି ଜ୍ଞାନ କର, ଭଲପାଅ ସେ ଯେତେବେଳେ—

"ଶୀତଳତେ ଯେବେ ଆସେ,
ସାନ୍ଧ୍ୟପଥେ ପଶି ସେ ପ୍ରିୟତମାର ରୂପ ଓ ଗନ୍ଧ ଭାସେ ।"

ବୃକ୍ଷ ସହକାର, ସରଗୀ ଗୃହ, ଟାଗ୍ରଫୁଲ ଇତ୍ୟାଦି ଶବ୍ଦ ତାଙ୍କର ସ୍ୱତନ୍ତ୍ର ଭାଷା ଓ ଆବେଗ ପାଇଁ ସାହାଯ୍ୟକାରୀ ହୋଇଛି । ପଣୟୀ ଓ ପ୍ରଣୟିନୀ ବଞ୍ଚିରହନ୍ତି କେବଳ ପ୍ରେମ ପାଇଁ । ଦୁହେଁ ନିକଟରେ ଥିଲେ ଆଉ କୌଣସି ଭୟ ନ ଥାଏ । ତାଙ୍କର ନାରୀ ପ୍ରେମିକା ଭଗିନୀ ଜନନୀ ଜାୟା ବୃନ୍ଦା ସବୁ କିଛି—

ସତେ ସେ ମୋର ଜନନୀ ଭଗିନୀ ପ୍ରିୟା,
ସବୁ ରୂପେ ସବୁ ଭାବେ ସେ କିଣିଛି ହିୟା ।

ଯାହାହେଉ ସମବୟସୀ ପ୍ରତି ସମବେଦନା ଥିଲେ ମଧ୍ୟ ସେ ଗୃହିଛନ୍ତି ପ୍ରତିଦାନ । ପ୍ରେମର କଣ ତା'ହେଲେ ପରିମାପ ଅଛି ! ନିଷ୍ଠୁର ଭାବେ କ୍ଷତ କ୍ତ ମଣିଷ ଜଣକୁ ନିବିଡ଼ ଭାବରେ ସ୍ୱାର୍ଥପର ଭାବରେ ଭଲପାଏ । ତଥାପି ସେ ଦେଖିଛନ୍ତି—

ଏକଇ ଫାଲ୍‌ଗୁନେ ଲକ୍ଷ ଫୁଲ ଫୁଟେ,
ଭ୍ରମର ଗୋଟିକରୁ ଗୋଟିକୁ ଚୁମି ଛୁଟେ ।

ଜୀବନର ଦୀର୍ଘକାଳ ମଧ୍ୟରେ ବହୁ ପ୍ରଣୟିନୀର ସ୍ମୃତି ଜଣା ବା ଅଜଣାରେ ମାନସକ୍ଷେତ୍ରରେ ଛାପ ରଖିଥାଏ । ପ୍ରେମ ଜଣକର ନୁହେଁ—ସମସ୍ତଙ୍କର । ପ୍ରେମ ବିଶ୍ୱଜନୀନ । ସେ ସର୍ବବ୍ୟାପୀ । ତାର ବ୍ୟାପ୍ତି ଅନନ୍ତ । ପ୍ରଣୟ ଅନୁକମ୍ପା ସେବା ଦୟା କ୍ଷମା କରୁଣା ସ୍ନେହ ଇତ୍ୟାଦି ମଣିଷକୁ ଉଦାର କରେ । ପୁରୁଷ ରକ୍ତ ତରଳ ଅଗ୍ନି ପରି ଜଳିଉଠେ । ଏ ପ୍ରଶ୍ନ ବହୁ ଯୁଗର - ବହୁ ପ୍ରାଣର । ତେବେ ରୂପ କଥା ଏଠାରେ ଉଲ୍ଲେଖଯୋଗ୍ୟ । ରୂପ ସମ୍ପର୍କରେ ମାନସିଂହଙ୍କର ଧାରଣା ସତ୍ୟ—

ତଥାପି ରୂପସୀ କିଶୋରୀ ତୁମର ଉଚ୍ଛଳ ଯୌବନେ
ଏକ ଗଣ୍ଡୂଷେ ପାନ କରିବାର ବାସନା ଜାଗଇ ମନେ;
ରୂପ ତବ ସଖୀ ବଡ଼ ହିଁ ତୀବ୍ର ବଡ଼ ହିଁ ଦୁର୍ବିଷହ,
ଦୂରେ ରହ ଦୂରେ ରହ ।

ଶାନ୍ତିଧିବମୁଖ ଜୀବନ ଆଉ ଯୌବନ ଭଲ । ରୂପସୀର ରୂପର ଜୁଆର ପ୍ରତି ଲୋମରେ ଫୁଟିଉଠେ । ଶରୀରର ଗନ୍ଧ, ଅଧରର ମଦ୍ୟପାନ ଓ ଘ୍ରାଣରେ ମଣିଷ ପାଗଳ ହୋଇଉଠେ । ରୂପାଲୋକରେ ପାଗଳ ହୁଏ ପ୍ରଣୟୀ, ପ୍ରଣୟିନୀ

ଭାବରେ ଯିଏ ତାର ଅନ୍ତରରେ ଅଛୁ, ସିଏ କେବେ ଦୂରକୁ ଯାଇପାରେ ନାହିଁ । ସବୁର ଊର୍ଦ୍ଧ୍ୱରେ ପ୍ରେମର ଭାଷା ଅଧିକ ଗଭୀର ଅଟେ । ରୂପାନ୍ୱେଷୀର ଶ୍ରବଣ, ଦୃଷ୍ଟି, ହୃଦୟ, ଆତ୍ମା, ସ୍ପର୍ଶ ଭିତରେ ଅନୁରାଗ ରହିଚ । ଏଣୁ କବିଙ୍କର ଜରା ପ୍ରତି ଯେପରି ଭୟ ଯୌବନ ପ୍ରତି ସେହିପରି କରୁଣ ସହାନୁଭୂତି ପ୍ରକାଶ ପାଇଚ । କେଶ ଓ ଠ ଚକୁର ସବୁ ଜରା ସଂସ୍ପର୍ଶିତ ହେଲେ ମଳିନ ହୋଇଯାଏ । ରୂପାଗତ ପ୍ରତି ପ୍ରବଳ ଆଶ୍ୱାସନାର ବାଣୀ ସେ ଶୁଣାଇଛନ୍ତି । ମୃତ୍ୟୁରେ ମଧ୍ୟ ପ୍ରେମ ଅକ୍ଷୁଣ୍ଣ ରହିପାରେ । ପ୍ରଣୟୀ ମୃତ୍ୟୁ ପୂର୍ବରୁ ଆପଣାର ଶେଷ ସଂକ୍ଷିପ୍ତ ବାର୍ତ୍ତା କହିଥାଏ—

ପାଶବ ଯଦି ଭସ୍ମ ପରେ
ପଦ୍ମପାଦ ଗ୍ଭଳିବ ଧୀରେ;
ଜୀବନ ପୁଣି ଲଭିବି ସଖି,
ନିଷ୍ଟୟ ମୁଁ ମରଣଗରେ ।

ଇନ୍ଦ୍ରିୟଭୋଗୀ ବିଶ୍ୱର ଦର୍ଶନ ଆଉ ସ୍ପର୍ଶ ତାରୁଣ୍ୟକୁ ଚଞ୍ଚଳ କରିଥାଏ । "ଧୂପ" ଭଳି ଏକ ପ୍ରଣୟଗୀତିରେ ସେ ଜୀବନର ସମସ୍ତ ଅନୁଭୂତି ଆଉ ଅଭିଳାଷକୁ ରୂପ ଦେଇଛନ୍ତି । ଏହା ବ୍ୟତୀତ ସେ ପ୍ରେମର ସଂଜ୍ଞା ନିରୂପଣ କରିବାକୁ ଯାଇ କହିଛନ୍ତି—

"ଯୁଗ୍ମ-ବେଣୀ ଶୋଭା କନକ ଗଳା ବାହିଁ,
ମରଣ ନିକେ ସହି ରହିବ କ୍ଷଣେ ଗ୍ଭହିଁ,
ଦ୍ରାକ୍ଷା-ସୁକୋମଳ ଅଧର ଟଳମଳ,
ବିସ୍ମୃତ ବକ୍ଷେ ଯା'ର ପାନ ଗୋ !
ପୀୟୂଷ ସ୍ୱାଦୁ ମଧୁ ଘ୍ରାଣ ଗୋ !

କେଉଁଠି କବି ରୂପାଲୋକର ମାୟାରେ ନୀଳାଚଞ୍ଚଳ ତ କେଉଁଠି ବିରସ୍ତ ଘନକୁ ଦେଖି ସେ ବିଭୋର । କେଉଁଠି ସମ୍ଭାଷଣମୁଖର ତ ହତସ୍ୱପ୍ନର ପଦ ପାଠ କରି ମ୍ରିୟମାଣ—ନୟନ ଲୋତକାର୍ଦ୍ର । କେଉଁଠି ବଂଶୀର ଆହ୍ୱାନରେ ଦେଖିଛନ୍ତି କୁଳଟା ରାଧାର ଯନ୍ତ୍ରଣା ଆଉ ତା ପ୍ରତି କବିଙ୍କର ବ୍ୟାକୁଳ ସହାନୁଭୂତି ପ୍ରକାଶ ପାଇଚ । ଉଦାସୀ ପାନ୍ଥ ପ୍ରାଣରେ ରୂପସୀର ଆହ୍ୱାନ । କେଉଁଠି ଉଲୁପୀ ବିଳାପ କରିଉଠିଚ ଆବେଗପୂର୍ଣ୍ଣ ଭାବରେ ଅର୍ଜ୍ଜୁନ ସ୍ୱପ୍ନରେ । ପର୍ଣ୍ଣନାରୀର ରେଙ୍ଗୁନ ଚିଠି ଆଉ ତଅପୋଇର ବିଳାପ ଆଉ ବିଦ୍ରୋହ ଭିତରେ ଶାନ୍ତ ସ୍ନିଗ୍ଧ ନାରୀର ନିରଳସ ମୁଖମଣ୍ଡଳର ସରଳ ପ୍ରେମର ସଙ୍କେତ ଦେଇଛନ୍ତି ।

'ମାଟିବାଣୀ', 'ହେମପକ୍ଷ' ଆଦି କବିତା ଗ୍ରନ୍ଥରେ ଏଇ ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ସମାବେଶ ଘଟିଥିବାର କବି ନିଜେ ସ୍ୱୀକାର କରିଛନ୍ତି । 'ପ୍ରେମଶଙ୍ଖ', 'ଜୀବନ ଚିନ୍ତା', 'ଅକ୍ଷତ' ଆଦି କବିତା ଗ୍ରନ୍ଥରେ ସେଇ ଜୀବନ-ଦର୍ଶନ ପରିସ୍ଫୁଟ ।

ମାନସିଂହଙ୍କର କାବ୍ୟଗୁଡ଼ିକ ହେଲା ସାଧବଝିଅ, କେମା ଓ କମଳାୟନ । ଏହି କାବ୍ୟଗୁଡ଼ିକରେ ଇନ୍ଦ୍ରିୟ ଆଉ ଅତୀନ୍ଦ୍ରିୟର ଚେତନା ଅଧିକ ଭାବରେ ସ୍ପଷ୍ଟ । ମାତ୍ର ନାଟକ ନାଟିକା, ପ୍ରବନ୍ଧ ଓ ଆଲୋଚନା, ଭ୍ରମଣ ବୃତ୍ତାନ୍ତ, ଶିଶୁସାହିତ୍ୟ, ସବୁ ପୁସ୍ତକରେ ବହୁମୁଖୀ ପ୍ରତିଭାର ସ୍ୱାକ୍ଷର ରହିଛି । କବିପ୍ରଧାନ ଆବେଗପ୍ରବଣ କବି । ମାନସିଂହଙ୍କର କବିତାରେ ଇନ୍ଦ୍ରିୟ ଆଉ ଅତୀନ୍ଦ୍ରିୟର ବ୍ୟଞ୍ଜନା, ପ୍ରଚଣ୍ଡ ଜୀବନାନୁଭୂତି ଦ୍ୱାରା ଶାଣିତ । ଏଇ ସମ୍ବେଦନଶୀଳ ଅଭିବ୍ୟକ୍ତି ବାସ୍ତବିକ ଚମତ୍କାର ଭାବେ ରୂପ ଗ୍ରହଣ କରିଚି; ତାଙ୍କର ଭାଷା, ଛନ୍ଦ, ଧ୍ୱନି ଓ ଲାଳିତ୍ୟ ଦ୍ୱାରା ବେଶ କୋମଳ ଓ ମାଧୁର୍ଯ୍ୟମୟ । ତାଙ୍କର ପଦ୍ୟଛନ୍ଦ ଆଉ ଅନୁପ୍ରାସ ପାଠକପ୍ରାଣକୁ ପ୍ରଲୁବ୍ଧ କରେ । ତାଙ୍କର ପ୍ରକୃତି ରସୋପଲବ୍ଧି, ସୌନ୍ଦର୍ଯ୍ୟ କଳ୍ପନା, ସାଙ୍ଗୀତିକତା ପାଠକପ୍ରାଣକୁ ଏକାତ୍ମ ଓ ତନ୍ଦ୍ରାତୁର କରିଥାଏ । ଏଣୁ ମାନସିଂହଙ୍କର ପ୍ରତ୍ୟେକ କାବ୍ୟ କବିତାରେ ତନ୍ଦ୍ରାଛନ୍ନତା ଥିଲେ ମଧ୍ୟ ଗୋଟିଏ ସରଳ ସତ୍ୟ ରହିଚି । ସେ ସତ୍ୟ ହେଉଚି—ଜଗତ ଆନନ୍ଦମୟ ହେଲେ ମଧ୍ୟ ତା ଭିତରେ ଏକ ପ୍ରଚ୍ଛନ୍ନ ଅନତିକ୍ରାନ୍ତ ଦୁଃଖ ଆଉ ବେଦନା ରହିଛି । ମାନବର ଏଇ ବେଦନା ଅତିକ୍ରମଣ ପ୍ରକୃତପକ୍ଷେ ଏକ ଚେତାବନୀ ।

ମାନସିଂହ କବିତାର ପ୍ରାଣ-ପ୍ରକୃତି ହେଲା ରହସ୍ୟ-ସମାଚ୍ଛାଦିତ । ଇନ୍ଦ୍ରିୟ ଓ ଇନ୍ଦ୍ରିୟୋତ୍ତର ବିଳାସ ଭିତରେ ଯେଉଁ ଅଭୂତ ଶକ୍ତି ନିହିତ ସେହି ଶକ୍ତି ବଳରେ ମାନସିଂହ ଆପଣାର କବି ପ୍ରତିଭାକୁ ଉଜ୍ଜ୍ୱଳ କରିଛନ୍ତି । ତାଙ୍କର ସକଳ ଅସ୍ତିତ୍ୱକୁ ଅଭିଭୂତ କରିଥିବା ଏଇ ଶକ୍ତି କେବଳ ଉପଲବ୍ଧିର ନୁହେ—ତାର ଆକର୍ଷଣ ଅନନ୍ୟସାଧାରଣ । ନାରୀର ଅଙ୍ଗ-ନର୍ତ୍ତନ ଆଉ ଭ୍ରୂବିଳାସ ପରି ଲୀଳାମୟ ତାଙ୍କର କବିତା । ତାଙ୍କର କବିତା ପାଠ କଲେ ସତେ ଯେପରି ଆମେ ଅନ୍ୟ ଏକ ସ୍ୱପ୍ନାତୁର ତନ୍ଦ୍ରାତୁର ଆଉ କଳ୍ପନାତୁର ଜଗତରେ ପଶିଯାଉ । ରସଧ୍ୱନିର ଏଇ ଉଲ୍ଲଙ୍ଘନ ଆମକୁ ଲଘୁ ମାଦକଦ୍ରବ୍ୟ ପରି ବିହ୍ୱଳ କରିପକାଏ । ତେବେ ସୌନ୍ଦର୍ଯ୍ୟପିପାସୁ କବି ମାନସିଂହ ମୋହଗତ ପୃଥିବୀକୁ ଅମୃତ ଦୃଷ୍ଟିରେ ଦେଖିଛନ୍ତି ଆଉ ଇନ୍ଦ୍ରିୟାତୀତ ସ୍ଥୂଳକର ଐଶ୍ୱର୍ଯ୍ୟ ଭିତରେ ସେ ହଜିଯାଇଛନ୍ତି । ପ୍ରତ୍ୟେକ ବସ୍ତୁକୁ ବିଶ୍ଳେଷଣ କରି ନିଜସ୍ୱ ଜ୍ଞାନାଲୋକରେ ରୁଚି ଅଭି ଶୁଚିସମ୍ମତ କରି ସେ ଅପୂର୍ବ ଧୀଶକ୍ତିର ପରିଚୟ ଦେଇଛନ୍ତି । ଏଣୁ ଏଇ ତନ୍ମୟତା ବାସ୍ତବିକ କବିପ୍ରାଣର ଏକ ଅଭ୍ରାନ୍ତ ବ୍ୟକ୍ତିତ୍ୱର ରୂପ ଦେଇଯାଏ ।

'ଧୂପ' ତାଙ୍କର ଏକ ଶ୍ରେଷ୍ଠ କବିତାକୃତି । ହୃଦୟର ତୀବ୍ର ଆଲୋଡ଼ନ ଦ୍ୱାରା କବିତାସବୁ ରସାଳ-ଫେନଯୁକ୍ତ । ପୁଣି ନୈରାଶ୍ୟ ଆଉ ଆଶଙ୍କାର ଢେଉର ଭିତରେ ତାଙ୍କର ଚେତନାର କରୁଣ ମଗ୍ନତା ବାସ୍ତବିକ ମନୋଜ୍ଞ । ତାଙ୍କର ଆତ୍ମିକ ଉପଲବ୍ଧି, ଗଭୀର ଆନ୍ତରିକତା, ଆକାଶୀ କଳ୍ପନା, ସମାଜ ପ୍ରତି ଏକ

ସିଧାସଳଖ ଦାୟିତ୍ୱବୋଧ, ଜୀବନ ଓ ଯୌବନ ପ୍ରତି ଶାଣିତ ଓ ତୀବ୍ର ଦୃଷ୍ଟିଭଙ୍ଗୀ, ଆବେଗ, ଭାଷାନୈପୁଣ୍ୟ ଓ ଚମତ୍କାରିତା ସହିତ ନାଟକୀୟ ଆତ୍ମପ୍ରକାଶ ଇତ୍ୟାଦି ତାଙ୍କ କାବ୍ୟକୃତିକୁ ଉଚ୍ଚକୋଟୀକୁ ନେଇଯାଇଛି । ସେ ସତ୍ୟବାଦୀ ବା ସବୁଜ ଭଳି ଗୋଷ୍ଠୀ ଭିତରେ ଲାଳିତ ପାଳିତ ନ ହୋଇ ସ୍ୱତନ୍ତ୍ରଭାବେ ସାଧନାରତ ହୋଇ ଯଶସ୍ୱୀ ।

କବି ମାନସିଂହଙ୍କର ଇନ୍ଦ୍ରିୟ ଆଉ ଅତୀନ୍ଦ୍ରିୟ ଚେତନାର କାବ୍ୟ କବିତା-ଗୁଡ଼ିକ ରସୋତ୍ତୀର୍ଣ୍ଣ । କାରଣ ସେ ଖାଲି ଦେହବାଦୀ ନୁହନ୍ତି, ମନୋବାଦୀ ମଧ୍ୟ । ତାଙ୍କର କବିତାର ସାଧାରଣ ଆବେଦନ ପାଇଁ ବାହ୍ୟ ବିଭବ କେବଳ ଯଥେଷ୍ଟ ମନେହୋଇଛୁ, ତାହି ନୁହେ । ବ୍ୟହ୍ୟଗତି-ଶକ୍ତି ଉଦ୍ଦୀପକ କବିତା ଭିତରେ ଖାଲି ଆପଣାକୁ ହଜେଇ ଦେଇନାହାନ୍ତି—ସେ ସୁରସ ମନୋପଲବ୍ଧି କରିଛନ୍ତି । ଇଂରାଜୀ କାବ୍ୟ, ସଂସ୍କୃତ କାବ୍ୟ ଆଉ ଅନ୍ୟ ଭାଷାର କାବ୍ୟକବିତା ସେ ଅଧ୍ୟୟନ କରିଛନ୍ତି । ଏଣୁ ବ୍ୟାପକ ଦୃଷ୍ଟିକୋଣ ନେଇ କବି କବିତାର ରୂପରଂଗ ଦେଖିଛନ୍ତି ଆଉ ପାଠକ ପ୍ରାଣକୁ ଭିତ୍ତିର ତୀବ୍ରତା ଦ୍ୱାରା ଜଟିଳ ସେ କେବେ କରିନାହାନ୍ତି । ତାଙ୍କର କାବ୍ୟମାନସର ଅନ୍ତରାଳବର୍ତ୍ତୀ ସୂକ୍ଷ୍ମ ଚେତନାର ବୀଣାସ୍ୱର ତାଙ୍କୁ ଆନନ୍ଦ-ମୁଖର କରିଛି । Henery Bergsonଙ୍କ ମତରେ—The object of art is to lull to sleep the active, or rather the resisting powers of our personality and theirs to bring us to a state of perfect docility, in which we realise the idea suggested to us and sympathise with the sentiment expressed.

ତେବେ ଆଧୁନିକ ପୃଥିବୀ ବହୁବର୍ଣ୍ଣିଳ, ବହୁ ଜଟିଳ, ବହୁ ବିଚିତ୍ର । ଏଣୁ ମାନସିଂହଙ୍କର କବିତାରେ ମୁଖ୍ୟତଃ ସରଳ ଭାବ ଅନୁଭୂତିର ଛାପ ପରିଲକ୍ଷିତ । ସେ ଗୋଟିଏ ପ୍ରକାର ଆଙ୍ଗିକରେ ବିପୁଳ ବିଚିତ୍ର ଭାବରାଜିକୁ ଧରିପାରିନାହାନ୍ତି । ଏହା ମଧ୍ୟ ସତ୍ୟ ସେ ଅନ୍ୟାନ୍ୟ ବହୁ କବିତାରେ ଅନେକ କଥା ସାମାଜିକ ପରିବେଶକୁ ନେଇ ଲେଖିଛନ୍ତି; ମାତ୍ର ଇନ୍ଦ୍ରିୟ ଆଉ ଅତୀନ୍ଦ୍ରିୟ ଭାବର ସମସ୍ତ କବିତା ଆଉ କାବ୍ୟ ଅତୀବ ଲୋକପ୍ରିୟ, ଏବଂ ସେଇ ଲୋକପ୍ରିୟତା ହିଁ ତାଙ୍କର କାବ୍ୟପ୍ରତିଭା ପ୍ରତି ପ୍ରଗାଢ଼ ଅନୁରକ୍ତିର ସଙ୍କେତ । ପୂର୍ବସୂରିଙ୍କୁ ଆଉ ଆମର ସଂସ୍କୃତିକୁ ସେ ଭୁଲିନାହାନ୍ତି; ତା'ର ଉପରେ ଠିଆ ହୋଇ ସେ ଆଗକୁ ପାଦ ବଢ଼େଇଛନ୍ତି । ମାତ୍ର ଆଙ୍ଗିକ ପରିବର୍ତ୍ତନରେ ପାଶ୍ଚାତ୍ୟର ପରୀକ୍ଷାକୁ ଅଧିକ ଭାବେ ଗ୍ରହଣ କରିନାହାନ୍ତି । ତେବେ ତାଙ୍କର ପ୍ରକାଶଭଙ୍ଗୀ, ଗତାନୁଗତିକତାର ରଙ୍ଗ ତାଙ୍କୁ ଏକ ସ୍ୱତନ୍ତ୍ର ପ୍ରତିଭାଧର କବିଭାବରେ ପ୍ରତିଷ୍ଠା ଦେଇଛି ।

ଇନ୍ଦ୍ରିୟ ଆଉ ଅତୀନ୍ଦ୍ରିୟବିଳାସୀ କବି ମାନସିଂହ । ମାଟି ଆଉ ଆକାଶର ହୃଦୟକୁ ସେ ବୁଝିଛନ୍ତି । ମାତ୍ର ତାଙ୍କର ଦୃଷ୍ଟିକୋଣ ସର୍ବଦା ରୋମାଣ୍ଟିକ । ସେଇ ରୋମାଣ୍ଟିକ୍‌ର ନୀଳ ଚଷମାରେ ନୂତନ ଖିଆଲ ଓ ରୁଚିବୋଧର ପୃଥିବୀକୁ ସେ ଗଭୀର ଅନ୍ତର୍ଦୃଷ୍ଟି ଦେଇ ଦେଖିଛନ୍ତି । ସେଇ ଶୀଳାବନ୍ୟ, ଇରାନୀ କଣୋଷ୍ଟ, ତଅପୋଇ, ଧାଡ଼ି ବାନ୍ଧି ଠିଆ ହୋଇ କମଳବିଳାସୀ ଧାରଣା, ସୌନ୍ଦର୍ଯ୍ୟବୋଧର ତାଣ୍ଡବ ଆଉ କାବ୍ୟିକ ସମ୍ପୂର୍ଣ୍ଣତାକୁ ପୋଷାକ ରୂପରେ ପ୍ରସାଧାନ କରି ସେ ତାଙ୍କ ଆଖିରେ ଚମକ ଲଗାଉଥିବେ—ଏଥିରେ ସନ୍ଦେହ ନାହିଁ ।

କବି ମାନସିଂହଙ୍କର ବହୁମୁଖୀ ପ୍ରତିଭା ମଧ୍ୟରୁ ଏଇ ଦୃଷ୍ଟିକୋଣଟି ଗୁରୁତ୍ୱପୂର୍ଣ୍ଣ । ତନ୍ମଧ୍ୟରେ ଏଇ ଦୃଷ୍ଟିକୋଣରେ ସାର୍ଥକ ପ୍ରକାଶ "ଧୂପ"ରେ ହୋଇଥିବାରୁ ଆଲୋଚକ ତାକୁହିଁ ଗ୍ରହଣ କରିଚି । ବନ୍ଧୁ ସମ୍ପାଦକଙ୍କ ନିର୍ଦ୍ଦେଶ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଆଉ ସୁଚିନ୍ତିତ ମନେହୁଏ । ତେବେ ଏତିକି କୁହାଯାଇପାରେ, କବି ମାନସିଂହ ଜଣେ ବରେଣ୍ୟ କବି । ତାଙ୍କର କୃତି ସମ୍ପର୍କରେ ଓ ତାଙ୍କର ଏକକ commitment ସମ୍ପର୍କରେ ଏତିକି କୁହାଯାଇପାରେ, ସେ ଜଣେ ମୁଖ୍ୟତଃ ପ୍ରେମିକ କବି । ତାଙ୍କର ସ୍ୱପ୍ନଜୀବୀ କଳ୍ପନାବିଳାସର ସରଳ ଅକପଟ ଆନ୍ତରିକତା ପ୍ରକାଶ ଆମକୁ ବିସ୍ମିତ କରେ—ସେଥିପାଇଁ ସେ ଆମର ନମସ୍ୟ ।



# ମାନସିଂହଙ୍କ କବିତାରେ ପରମ୍ପରା ଓ ନୂତନତା

**ଅଧ୍ୟାପକ ସଚ୍ଚିଦାନନ୍ଦ ମିଶ୍ର**

T. S. Eliotଙ୍କ ଭାଷାରେ କହିବାକୁ ଗଲେ "No author can claim himself to be absolutely original. The past tradition and present development are bound to influence him when he sits down to write. "କୌଣସି ଲେଖକ ନିଜର ଲେଖାକୁ ଏକାନ୍ତ ନିଜସ୍ୱ ବୋଲି ଦାବି କରିପାରିବ ନାହିଁ । କାରଣ ଅତୀତର ପରଂପରା ଏବଂ ବର୍ତ୍ତମାନର କ୍ରମବିକାଶ ତା'ର ଲେଖନୀକୁ ସ୍ୱତଃ ପ୍ରଭାବିତ କରିଥାଏ । ତେଣୁ କୌଣସି ଲେଖକ ଅତୀତ କାବ୍ୟ-କବିତା ଲିଖନ ଶୈଳୀରୁ ସଂପୂର୍ଣ୍ଣ ପୃଥକ ରହି ସାହିତ୍ୟରେ ନୂତନ ଆଭିମୁଖ୍ୟ ଦେବାରେ ସମର୍ଥ ହୋଇ ନ ପାରେ । ଅନ୍ୟ ପକ୍ଷରେ ପ୍ରାଚୀନର ମୋହ ଓ ପୂର୍ବ-ସୂରୀଙ୍କ ସାହିତ୍ୟକୃତି ଲେଖକର ପୁଷ୍ଟି ହୋଇ ତା'ର ପ୍ରତିଭା ବିକାଶରେ ସହାୟତା କରିଥାଏ । ଲେଖକ ଯେତେ ପ୍ରତିଭାଶାଳୀ ହେଲେ ମଧ୍ୟ ଅତୀତର ଆକର୍ଷଣକୁ ଏତେ ସହଜରେ ଭୁଲିପାରେ ନାହିଁ । କାରଣ ଅତୀତର ଇତିହାସ, ସଂସ୍କୃତି, ଭୌଗୋଳିକ ଅବସ୍ଥିତି ଓ ସାହିତ୍ୟଗତ ସମୃଦ୍ଧି ତା'ର ବୌଦ୍ଧିକ ବିକାଶ ନିମନ୍ତେ ଅଜସ୍ର ଉପାଦାନ ଯୋଗାଇଥାଏ । ସେହିପରି ବର୍ତ୍ତମାନ ସମାଜର ପାରିପାର୍ଶ୍ୱିକ ଅବସ୍ଥା, ଆଶା ନିରାଶା ଏବଂ ଭବିଷ୍ୟତ ପାଇଁ ମଣିଷର ଅଭିଳାଷ ଓ ସାଧନା ଇତ୍ୟାଦିରୁ ଉପାଦାନ ସଂଗ୍ରହ କରି ସେ ନିଜର ପ୍ରତିଭାକୁ ପୁଷ୍ଟ କରିବା ସଙ୍ଗେ ସଙ୍ଗେ ନୂତନତାର ସନ୍ଧାନ ଦେଇ ଅନ୍ୟକୁ ନିୟନ୍ତ୍ରଣ କରିଥାଏ । ପ୍ରତିଭାଶାଳୀ ଲେଖକର ଲେଖନୀ ପାରଂପରିକ ସାହିତ୍ୟ ସାଧନା କ୍ଷେତ୍ରରୁ ବିଚ୍ଛିନ୍ନ ନ ହେଲେ ମଧ୍ୟ ନୂତନତାର ସନ୍ଧାନ ଦେବାରେ ତାର କାର୍ପଣ୍ୟ ନାହିଁ । ତେଣୁ କବିହସ୍ତର ଯାଦୁକାଠି ସ୍ପର୍ଶରେ ପୁରାତନ ଜିନିଷ ନୂତନ ରୂପରେ ଆମ ସମ୍ମୁଖରେ ପ୍ରତିଭାତ ହୋଇଥାଏ । କବି-ଶିଳ୍ପୀ ମାୟାଧର ମାନସିଂହ ବିଭିନ୍ନ କାବ୍ୟ ଏବଂ ଗୀତି କବିତାରେ ନୂତନ

ପଥପ୍ରଦର୍ଶନ ଦେବାରେ ଯେତିକି ପ୍ରୟାସ କରିଅଛନ୍ତି, ପାରମ୍ପରିକ କାବ୍ୟ-ଶୈଳୀ ରକ୍ଷା କରିବାରେ ତଦପେକ୍ଷା ଯଥେଷ୍ଟ ନିଦର୍ଶନ ରଖିଛନ୍ତି ।

ମାନସିଂହଙ୍କ ପ୍ରତିଭା ବହୁମୁଖୀ । ସାହିତ୍ୟର ବିଭିନ୍ନ ବିଭାଗ ଉପରେ ତାଙ୍କ ଲେଖନୀର ସଙ୍କେତ ରହିଛି । କାବ୍ୟ-କବିତା, ନାଟକ, ଗୀତିନାଟ୍ୟ, ଗୀତି କବିତା, ପ୍ରବନ୍ଧ, ଭ୍ରମଣ କାହାଣୀ ପ୍ରଭୃତି ତା'ର ନିଦର୍ଶନ । କିନ୍ତୁ ତାଙ୍କ ପ୍ରତିଭାର ପ୍ରକୃତ ସ୍ଫୁରଣ ଗୀତି କବିତାରେ । ତାଙ୍କ ଗୀତି କବିତା ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । ଯଥା—ପ୍ରେମମୂଳକ ଓ ଅନ୍ୟଟି ଆଧ୍ୟାତ୍ମିକ ଭାବାପନ୍ନ । କିନ୍ତୁ ପ୍ରେମମୂଳକ କବିତାରେ ହିଁ ତାଙ୍କର ବୈଶିଷ୍ଟ୍ୟ ନିହିତ । ଏହି ପ୍ରେମସମ୍ବନ୍ଧୀୟ କବିତା ପୁଣି ଦୁଇ ଭାଗରେ ବିଭକ୍ତ । ପ୍ରଥମଟି ଦେଶପ୍ରେମମୂଳକ ଓ ଅନ୍ୟଟି କାନ୍ତାପ୍ରେମମୂଳକ । ଉଭୟଟିରେ ତାଙ୍କ ଲେଖନୀର ଚମତ୍କାରିତା ରହିଛି ।

ମାନସିଂ ଜଣେ ନିଷ୍ଠାପର ସ୍ୱଦେଶପ୍ରେମୀ ଜାତୀୟତାବାଦୀ କବି । କୋଣାର୍କ, ବାରବାଟୀ, ମହାନଦୀର ଜ୍ୟୋତ୍ସ୍ନାବିହାର ଆଦି କବିତାରେ ତାଙ୍କ ସ୍ୱଦେଶପ୍ରେମ ନିହିତ । କେମିତି, ସାଧବଝିଅ ଆଦି କାବ୍ୟରେ ସେ ପ୍ରାଚୀନ ଉତ୍କଳର ସଭ୍ୟତା ଓ ସଂସ୍କୃତିର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରି ଆମକୁ ଗୌରବମଣ୍ଡିତ ଅତୀତ ପ୍ରତି ସଚେତନ କରାଇଦିଅନ୍ତି । ଓଡ଼ିଆ ସାହିତ୍ୟରେ ଏହି ସ୍ୱଦେଶାନୁରାଗର ପ୍ରଥମ ମନ୍ତ୍ର ଉଚ୍ଚାରଣ କରିଥିଲେ ଯୁଗସ୍ରଷ୍ଟା ରାଧାନାଥ । ମାତ୍ର ଆମ ସମାଜର ଆଦର୍ଶ ଏବଂ ନୈତିକତା ତାଙ୍କ ଲେଖନୀରେ ଅନ୍ତଃସାରଶୂନ୍ୟ ହୋଇଗଲା । ତେଣୁ ସତ୍ୟବାଦୀ ଗୋଷ୍ଠୀର ଜାତୀୟତାବାଦୀ କବିବୃନ୍ଦ ରାଧାନାଥଙ୍କ ପରି ତୀବ୍ର କଟୂକ୍ତି ପ୍ରକାଶ କରିବାକୁ କୁଣ୍ଠାବୋଧ କରୁ ନ ଥିଲେ । କବି ସମାଲୋଚକ ସ୍ୱର୍ଗତଃ ପଣ୍ଡିତ ନୀଳକଣ୍ଠ 'କୋଣାର୍କ' କାବ୍ୟରେ ରାଧାନାଥଙ୍କୁ ଆକ୍ଷେପ କରି ଲେଖିଛନ୍ତି—"କବିଙ୍କି ସୁମତି ବିରାଗେ ମୁଖ ଫେରାଅ ପଛେ ।" ତେଣୁ ରାଧାନାଥଙ୍କ କାବ୍ୟର ରୂପଜ ମୋହ ତଥା ଦୈହିକ ପ୍ରେମ, ଏହି ସତ୍ୟବାଦୀ ଗୋଷ୍ଠୀର ଲେଖାରେ ମଳିନ ପଡ଼ିଯାଇଛି । ତା'ର ସ୍ଥାନ ଅଧିକାର କରିଛି ଆଦର୍ଶ ପ୍ରେମ, ନିଷ୍ଠା, ସେବା, ତ୍ୟାଗ ଏବଂ ମାନବ କଲ୍ୟାଣ । ମନୁଷ୍ୟକୁ ମନୁଷ୍ୟ ଭାବରେ ଦେଖିବା, ମାତୃଭୂମିର ପ୍ରତିଟି ଧୂଳିକଣାକୁ ନିଜ ପାଖରେ ପବିତ୍ର ଓ ମହାନ ମନେ କରିବା ସେମାନଙ୍କ ସାହିତ୍ୟ-ସୃଷ୍ଟିର ଥିଲା ଲକ୍ଷ୍ୟ । ଏହି ଯୁଗର ଆଦର୍ଶ ଚରିତ୍ର ଏବଂ ଜାତୀୟଚେତନା ଆଦିରେ ହିଁ କବି ମାନସିଂହ ବିଶେଷ ଭାବରେ ଅନୁପ୍ରାଣିତ ହୋଇଥିଲେ । ତାର ପ୍ରକୃଷ୍ଟ ପ୍ରମାଣ ପ୍ରବୀଣ ନୀଳକଣ୍ଠଙ୍କ 'କୋଣାର୍କେ' କାବ୍ୟରେ ତରୁଣ କବି ମାନସିଂହଙ୍କର ପ୍ରସିଦ୍ଧ ଭୂମିକା ।

ସାରଳା, ବଳରାମ ପ୍ରଭୃତିଙ୍କ କାବ୍ୟ ପୁରାଣରେ ଜାତୀୟ ପ୍ରେମ ଅସ୍ପଷ୍ଟ । କାରଣ ଏସବୁଥିରେ କବିମାନଙ୍କର ସଚେତନ ପ୍ରୟାସ ନାହିଁ । ରାଧାନାଥଙ୍କ ଜାତୀୟ

ଚେତନା ଉଦ୍ଦେଶ୍ୟପ୍ରଣୋଦିତ ହେଲେହେଁ ତାହା ଐତିହାସିକ ଘଟଣା ଏବଂ ଭୌଗୋଳିକ ତଥ୍ୟଦ୍ୱାରା ଭୂକ୍ତିମନ୍ତ । ସତ୍ୟବାଦୀ ଯୁଗର ଜାତୀୟ ପ୍ରେରଣା କଳ୍ପନାର ବୃତ୍ତ ମଧ୍ୟରେ ଆବଦ୍ଧ । ସେବା, ଆଦର୍ଶ, ଉପଦେଶାତ୍ମକ ଭାବଧାରାର କେନ୍ଦ୍ରବିନ୍ଦୁ ଉପରେ ସେମାନଙ୍କ ଜାତୀୟ ପ୍ରେମ ଆଧାରିତ । ତେଣୁ ଏହା ମଧ୍ୟରେ ଭାବାତ୍ମକ ପ୍ରେରଣା ଥିଲା ଖୁବ୍ କମ୍ ।

କିନ୍ତୁ କବି ମାନସିଂହ ଜଣେ ଉଚ୍ଚସ୍ତରର କଳାର ପୂଜାରୀ । ତେଣୁ କଳାକୁ ଆଧାର କରି ହିଁ ତାଙ୍କ ଜାତୀୟଭାବ ବିକଶିତ । ସେ ରାଧାନାଥଙ୍କ ପରି ଉତ୍କଳର ଜୀର୍ଣ୍ଣ, ଖଣ୍ଡିତ ଗୌରବ ସ୍ତୂପ ବାରବାଟୀ କିମ୍ବା କୋଣାର୍କକୁ ଅବଲୋକନ କରି ବିଷଣ୍ଣ କି ମୂହ୍ୟମାନ ନୁହନ୍ତି, କିମ୍ବା ସତ୍ୟବାଦୀଗୋଷ୍ଠୀର କବିମାନଙ୍କ ପରି ଗର୍ବ ମଧ୍ୟ ଅନୁଭବ କରିନାହାନ୍ତି । ସେ କଳାକୁ କଳା ଭାବରେ ଦେଖିଛନ୍ତି । ସୁନ୍ଦର ବସ୍ତୁର ଯଥାଯଥ ବିଶ୍ଳେଷଣ ଓ ବିନ୍ୟାସ ତାଙ୍କ ଲେଖନୀର ବୈଶିଷ୍ଟ୍ୟ । କୋଣାର୍କ ମନ୍ଦିର ଏବଂ ବାରବାଟୀ ଏହାର ନିଦର୍ଶନ । ମାନସିଂହ ଦେଶର ଦୁର୍ଗତି ଏବଂ ଧ୍ୱଂସ ଗୌରବ ପାଇଁ ପ୍ରାଣରେ ବେଦନା ଓ ଅନୁଶୋଚନା ପାଇଥିଲେ ଏବଂ ଭବିଷ୍ୟତର ଉନ୍ନତି ପାଇଁ ଆଶାୟୀ ମଧ୍ୟ ଥିଲେ । ତାଙ୍କ ଦେଶାତ୍ମକ କବିତା ରାଜନୀତି-ପ୍ରଭାବିତ ନୁହେଁ । ସେଥିରେ ଉଦ୍‌ବୋଧନାତ୍ମକ ବା ଉତ୍ତେଜନ ମୂଳକ ଆହ୍ୱାନ ନାହିଁ, ଯାହା କୁନ୍ତଳାକୁମାରୀ, ଗୋଦାବରୀଶ ମହାପାତ୍ର ପ୍ରଭୃତିଙ୍କ ରଚନାରେ ସୁଲଭ ।

'କୋଣାର୍କ' କବିତାରେ ହିଁ କବି ମାନସିଂହଙ୍କ ପ୍ରକୃତ କଳାକାରର ଦୃଷ୍ଟିଭଙ୍ଗୀ ପରିଲକ୍ଷିତ ହୁଏ । କବି କୋଣାର୍କର ସ୍ଥାପତ୍ୟକଳାରେ ମୁଗ୍ଧ । କୋଣାର୍କ ମାନସିଂହଙ୍କ ନିକଟରେ ଜଣେ ବିଦଗ୍ଧ ଅଭିଶପ୍ତ ପଙ୍ଗୁ ପ୍ରେମିକ ନୁହେଁ, ନୁହେଁ ମଧ୍ୟ ଅତୀତ ଗୌରବର ଜଡ଼ ଆଦର୍ଶ, ମାସ୍ଟ୍ରଦେବୀ କାବ୍ୟର ବିଷୟବସ୍ତୁ । ସେ ହେଉଛି ଗୋଟିଏ ହାସ୍ୟଲାସ୍ୟମୟୀ ତରୁଣୀ ପ୍ରେମିକା । ମାନସିଂହଙ୍କ ଲେଖନୀରେ ଜୀବନ୍ୟାସ ପାଇଛନ୍ତି କୋଣାର୍କ ଗାତ୍ରର ନୃତ୍ୟଚପଳା ନାୟିକାଶ୍ରେଣୀ । ଏଥିରେ ମାନସିଂହଙ୍କ କଳାକାର ଏବଂ ପ୍ରେମିକର ଦୃଷ୍ଟିଭଙ୍ଗୀ ସୁସ୍ପଷ୍ଟ । ଆଧୁନିକ ବରେଣ୍ୟ କବି ସଚ୍ଚି ରାଉତରାୟଙ୍କ ମାର୍କସ ଦର୍ଶନ ପ୍ରଭାବିତ ସାମ୍ୟବାଦୀ ଦୃଷ୍ଟିରେ ଏ କୋଣାର୍କ ମୂଲ୍ୟହୀନ । ବିପ୍ଳବୀ କବି ରବି ସିଂହଙ୍କ ଆଖିରେ ଦାଲିକ ଲହୁର ବନ୍ଦନମୟରେ ନିର୍ମିତ ଏହି କୋଣାର୍କ ଅପବିତ୍ର—କଳୁଷିତ । ସମସ୍ତ କବିଙ୍କ ଚିନ୍ତାଧାରା ବିଚାର କରି ଜଣେ ଆଧୁନିକ ସମାଲୋଚକ ମତ ଦିଅନ୍ତି—''ମାନସିଂହଙ୍କ 'କୋଣାର୍କ' କବିତା ତାରକସି ସୁନାଚେନ୍ ପରି । ନୀଳକଣ୍ଠୀୟ କାବ୍ୟ ଜଗନ୍ନାଥ ରଥ ଦଉଡ଼ି । ଗୋପବନ୍ଧୁଙ୍କ କୃତି ତୁଳସୀ ମାଳ ସଦୃଶ । ରାଧାନାଥଙ୍କ ରଚନା ବିଦେଶୀ ଡେଲିଆ ବା ଡାଲିଆ ଫୁଲର ମାଳା ଯାହା ଏ ଦେଶର ମାଟିରେ ପ୍ରତିଭାର ସବୁଜ ସାର ପାଇ ବିକଶିତ । ସଚ୍ଚି ରାଉତରାୟଙ୍କ ଲେଖା ଲଙ୍ଗଳ ଦଉଡ଼ି ବା ଟେନର ଲୁହା ଜଞ୍ଜିର ପରି ଓ

ରବି ସିଂହଙ୍କ ଲେଖା ସମ୍ବାଦ ବେକର ଫାଶୀ ଦଉଡ଼ି ।'' ମାନସିଂହ କଳାର ଆଙ୍ଗିକ ଓ ଆତ୍ମିକ ବିଶ୍ଳେଷଣକୁ ମୁଖ୍ୟ ଭାବରେ ଗ୍ରହଣ କରିଛନ୍ତି । ବାରବାଟୀ, ମହାନଦୀରେ ଜ୍ୟୋତ୍ସ୍ନା ବିହାର ପ୍ରଭୃତି କବିତାରେ ସେ ଅତୀତ ଗୌରବମୟ ଦିନଗୁଡ଼ିକୁ ସ୍ମରଣ କରି ଆନନ୍ଦିତ ହୋଇଛନ୍ତି । କବି ଏହାର ଦର୍ଶନରେ ଯେତିକି ଆନନ୍ଦିତ ସେତିକି ବିଷଣ୍ଣ ଓ ଭବିଷ୍ୟତ ଉଜ୍ଜ୍ୱଳତାର ଆକାଙ୍‌କ୍ଷାରେ ଅଧିକ ଆଶାବାନ୍ । କଳାର ଯଥାଯଥ ବିଶ୍ଳେଷଣ, ଅନୁଭୂତିଲବ୍‌ଧ ଚିନ୍ତାଧାରା, ଚମତ୍କାର ଭାଷା ଓ ଭାବଦ୍ୱାରା କଳାର ପ୍ରାଣସଞ୍ଚାର କରିବାରେ ହିଁ କବିଙ୍କ ବିଶେଷତ୍ୱ ପରିଲକ୍ଷିତ ।

ପ୍ରେମ ମାନବ ଜୀବନର ଏକ ସହଜାତ ପ୍ରବୃତ୍ତି । ପ୍ରତ୍ୟେକ ଯୁଗର କବି-ସାହିତ୍ୟିକମାନେ କାନ୍ତା-ପ୍ରେମକୁ ମୁଖ୍ୟ ସ୍ଥାନ ଦେଇଆସିଛନ୍ତି । ଆଜି ଅତି ବସ୍ତୁବାଦୀ ସମାଜରେ ମଧ୍ୟ ସାହିତ୍ୟରୁ ପ୍ରେମର ସତ୍ତା ଲୋପ ପାଇନାହିଁ । ଯୁଗୋପ-ଯୋଗୀ ଭାବେ ଏଥିରେ ପରିବର୍ତ୍ତନ ଆସିବା ସ୍ୱାଭାବିକ । ପ୍ରାଚୀନ କବିମାନେ ପ୍ରେମକୁ ଶାରୀରିକ ବା ଦୈହିକ ସୁଖ ଭାବରେ ଗ୍ରହଣ କରୁଥିଲେ । ସେହି ପ୍ରେମରେ ଶୃଙ୍ଗାରିକତା ଏବଂ କାଳ୍ପନିକତା ଥିଲା ଅଧିକ । କିନ୍ତୁ, ଆଧୁନିକ କବିମାନେ ପ୍ରେମକୁ ଦେହର ଊର୍ଦ୍ଧ୍ୱ ମାନସିକ ସ୍ତରରେ ପହଞ୍ଚାଇଲେ । ଏହି ପ୍ରେମର ଅନ୍ୟ ଏକ ବିଭବ ହେଲା ବାସ୍ତବତା । କବି ମାନସିଂହ ସେହି ବାସ୍ତବ ପ୍ରେମର ଜଣେ ଏକନିଷ୍ଠ ପୂଜାରୀ । ଧୂପ, ହେମଶସ୍ୟ, ହେମପୁଷ୍ପ ପ୍ରଭୃତି କବିତା ପୁସ୍ତକରେ ଏହାର ଯଥାଯଥ ପ୍ରମାଣ ମିଳିଥାଏ । ମାନସିଂହଙ୍କ ପ୍ରେମସମ୍ବନ୍ଧୀୟ କବିତାକୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ, ଯଥା—ପରକୀୟା ପ୍ରେମ ଓ ସ୍ୱକୀୟା ପ୍ରେମ ।

'ଧୂପ' କବିତା ଗ୍ରନ୍ଥ ତରୁଣ କବି ମାନସିଂହଙ୍କ ପରକୀୟା ବା ପ୍ରଣୟମୂଳକ କାବ୍ୟର ଶ୍ରେଷ୍ଠ ନିଦର୍ଶନ । କବି ପ୍ରତ୍ୟେକ କବିତାରେ ପ୍ରଣୟିନୀ ପାଖରେ କୃତଜ୍ଞ । ପ୍ରଣୟିନୀର ହୃଦଖୋଲା ପ୍ରୀତିଭରା ସମ୍ଭାଷଣ, ଅକପଟ ପ୍ରୀତିଦାନ, ପ୍ରଣୟିନୀର ହସ, ଅଶ୍ରୁ, ଅଭିମାନ ଆଦି କବିଙ୍କ ନିକଟରେ ମହାର୍ଘ୍ୟ । ଏହା କବିଙ୍କ ମନରେ ଗଭୀର ରେଖାପାତ କରି ତାଙ୍କ ସୃଜନଶୀଳ ମନକୁ ଅଧିକ ସକ୍ରିୟ କରିପାରିଛି । ପ୍ରତ୍ୟେକ କାର୍ଯ୍ୟରେ ସେ ପ୍ରଣୟିନୀର ଗୋପନ ହସ୍ତ ଦେଖିପାରିଛନ୍ତି । ପ୍ରଣୟିନୀର ଉପଯୁକ୍ତ ହେବା ପାଇଁ କବି ନିଜକୁ ଠିକ୍ ଭାବରେ ଗଢ଼ିବାକୁ ମନରେ ଆକାଙ୍‌କ୍ଷା ପୋଷଣ କରିଛନ୍ତି ।

ପ୍ରେମିକ କବି ମାନସିଂହ ସାର୍ବଜନୀନ ପ୍ରେମାନୁଭୂତିକୁ ସାବଲୀଳ ଭାଷା ଓ ଚମତ୍କାର ପ୍ରକାଶ ଶୈଳୀରେ ଜୀବନ୍ତ ରୂପ ଦେଇ ପାଠକର ଅବଚେତନ ମନରେ ଏକ ଆସ୍ୱାଦନଜନିତ ପୁନର୍ଜାଗରଣ ଆଣିଦିଅନ୍ତି । ମାନସିଂହ ପ୍ରଣୟିନୀକୁ କ୍ଷଣିକ ନିମିତ୍ତ ପାଖରୁ ଅନ୍ତର କରିବା ପାଇଁ ଇଚ୍ଛୁକ ନୁହନ୍ତି । ସେ ସଂସାରର ସବୁକିଛିକୁ

ପ୍ରଣୟ ନିକଟରେ ତୁଚ୍ଛ-ହେୟ ଜ୍ଞାନ କରନ୍ତି । ପ୍ରେୟସୀର ମୁଖଚୁମ୍ବନରେ ହିଁ ତାଙ୍କର ସ୍ୱର୍ଗପ୍ରାପ୍ତି । 'ତରୁଣ କବିର ଆଶା' କବିତାରେ ସେ କହିଛନ୍ତି—

"ପାଶରେ ଥାଆନ୍ତା ରସ କବିତା
ଚିର ଯଉବନ ପ୍ରଣୟ ଗୀତା
ପ୍ରେୟସୀ ଗାଆନ୍ତା ଚୁମ୍ବନ୍ତି ମୁଖ
ସରନ୍ତା ସୁଖ ।"

ଏକାଦଶ ଶତକର ବିଖ୍ୟାତ ପାର୍ଶୀକବି ଓମର ଖୈୟାମ ଏହି ମର୍ମରେ କହିଥିଲେ—

"Hear with a loaf of bread
beneath the bough
A flask of wine, a book of verse and thou
Beside me sing.ng in the wilderness. '
And wilderness is Paradisc enow"

ପ୍ରେମିକ କବି ମାନସିଂହଙ୍କ ପ୍ରଣୟିନୀ ପାର୍ଥିବ ଏବଂ ଅପାର୍ଥିବ ସୌନ୍ଦର୍ଯ୍ୟର କେନ୍ଦ୍ରବିନ୍ଦୁ । ପ୍ରିୟାମୁଖ ଦର୍ଶନରେ କବି ପୃଥିବୀର ସମସ୍ତ ଅପ୍ରକୃତ ଓ ପ୍ରକୃତ ବସ୍ତୁକୁ ଭୁଲିଯାଏ । ଏହି ପ୍ରେମ ନିକଟରେ ସ୍ୱର୍ଗର ଅମୃତ ମଧ୍ୟ ତୁଲ୍ୟ ନୁହେଁ । ସେହିପରି ବିଦଗ୍ଧଚନ୍ଦ୍ରାମଣିକାର ଅଭିମନ୍ୟୁ ସାମନ୍ତସିଂହାର କହିଛନ୍ତି—

ପ୍ରେମିକ ପ୍ରେମିକାଙ୍କର ସମ୍ଭୋଗଜନିତ ସୁଖକୁ କୋଟିବ୍ରହ୍ମାଣ୍ଡର ଅମୃତ ରୂପକ ଶ୍ରେଷ୍ଠ ସମ୍ପତ୍ତି ମଧ୍ୟ ଲକ୍ଷ୍ୟ ହେବ ନାହିଁ । ଇଟାଲୀୟ କବି ଦାନ୍ତେ ତାଙ୍କ ପ୍ରଣୟିନୀକୁ ସ୍ୱର୍ଗୀୟ ସୌନ୍ଦର୍ଯ୍ୟର ଦର୍ପଣ ବୋଲି ବିବେଚନା କରୁଥିଲେ । ବିଶ୍ୱର ସମସ୍ତ ବେଦନା ଓ ବିଶୃଙ୍ଖଳା ପ୍ରୀତିବନ୍ଧନ ଦ୍ୱାରା ଉପଶମ ଲାଭ କରିପାରେ ବୋଲି କବି ମାନସିଂହଙ୍କ ଦୃଢ଼ ବିଶ୍ୱାସ । 'ଆତ୍ମାର ସୌନ୍ଦର୍ଯ୍ୟ' କବିତାରେ ସେ କହିଛନ୍ତି—

' କିନ୍ତୁ ମୋ ଆତ୍ମାର
ସୌନ୍ଦର୍ଯ୍ୟ ତହିଁରୁ ବଳି, ଯା ର ସମ୍ମୁଖରେ
ମନୁଷ୍ୟ ନୁଆଁଏ ମଥା ତବ ରୂପ ତଳେ
ସେ ରୂପର ସନ୍ଧାନ ମୁଁ ପାଇଛୁ ସୁନ୍ଦରୀ
ସେ ପ୍ରେମ ସରସ ଦେହେ ଅନ୍ତର ସଞ୍ଚରି ।"

କବିଙ୍କର ପ୍ରେମ ଇନ୍ଦ୍ରିୟବନ୍ଧନରୁ ମୁକ୍ତ ହୋଇ ଅତୀନ୍ଦ୍ରିୟ ଜଗତରେ ପରିବ୍ୟାପ୍ତ । ଏହି ପ୍ରେମରେ ଆନନ୍ଦ ଓ ସୌନ୍ଦର୍ଯ୍ୟ ଅଛି; ଗ୍ଲାନି-ବ୍ୟର୍ଥତା କିମ୍ବା ଅନୁଶୋଚନା ନାହିଁ । କବି ରୂପ ନୈବେଦ୍ୟ ଦ୍ୱାରା ଅରୂପ ଦେବତାର ଆରାଧନା କରିଛନ୍ତି । ପଣ୍ଡୟୀ ଯୁଗଳ ପ୍ରେମାନନ୍ଦରେ ଆତ୍ମ ହୁତ ଦେଇ ଜୀବନର ସାର୍ଥକତା ଆଣିଥାଆନ୍ତି । ତାଙ୍କ ଦୃଷ୍ଟିରେ ପ୍ରେମ କଳଙ୍କଶୂନ୍ୟ । ପ୍ରକୃତ ପ୍ରେମରେ ପରକୀୟା କିମ୍ବା ସ୍ୱକୀୟା ଭେଦ ନ ଥାଏ । ପ୍ରଣୟ ପାଖରେ ସତୀ ଅସତୀର ଭେଦ ନ ଥାଏ । ପ୍ରେମିକ କହିଛି ଯେଉଁ ପ୍ରଣୟିନୀ ଅଶ୍ରୁଦାନ କରି ପ୍ରେମର ପ୍ରତିଦାନ ଦେଇପାରେ, ସେହି ହୋଇଛି କବିଙ୍କର 'ପରମପୂଜ୍ୟା ମହିଳା' । ତାର ସ୍ପର୍ଶ ଲଭ ପାଇଁ କବି ବ୍ୟଗ୍ର । ପ୍ରେମିକ ର ପଥପାଶରେ ମିଶିଯାଇ ପାଦର ସ୍ପର୍ଶ ପାଇବାକୁ ଆଶା କରନ୍ତି । ପ୍ରଣୟିନୀର ଭଲପାଇବା କଥା ଜାଣି କବି ଜୀବନକୁ ସାର୍ଥକ-ମଣିଛନ୍ତି ଏବଂ ସାହସୀ ଆଶାବାଦୀ ହୋଇପାରିଛନ୍ତି । ସେ କହନ୍ତି, ସାଂସାରିକ ଦୁଃଖ-ଦୈନ୍ୟର ବେଦନା ଅପେକ୍ଷା ପ୍ରଣୟଜନିତ ବେଦନା ଅଧିକ ପ୍ରାଣସ୍ପର୍ଶୀ, ଏହାର ଭାଷା ନାହିଁ, ଅଛି ଅଶ୍ରୁ ଏବଂ ନୀରବତା । କବି ଏହି ବେଦନା ମାଧ୍ୟମରେ ଜୀବନରେ, ଅଧିକ ଆନନ୍ଦ ଓ ସଫଳତା ଭୋଗ କରିଛନ୍ତି । ସେ ଏହି ପ୍ରଣୟ ବେଦନାକୁ ଦୂର କରିବାପାଇଁ ପ୍ରଣୟିନୀ ଶରୀରର ଶୃଙ୍ଗାର କାବ୍ୟ ପାଠ କରି ଆନନ୍ଦ ଉପଲବ୍‌ଧି କରିଛନ୍ତି । କାରଣ, ଦେହଦାନ ବ୍ୟତୀତ ପ୍ରକୃତ ପ୍ରେମର ସାର୍ଥକତା ନାହିଁ । ନେତ୍ର ଶୁରିତଷ୍ଟ ମିଳନ, ଚୁମ୍ବନ, ଅଭିମାନ, ଗୋପନ ସମ୍ଭାଷଣ ଏବଂ ଦୈହିକ ମିଳନର ମାଧ୍ୟମରେ ନୈସର୍ଗିକ ପ୍ରେମର ସେ କଳ୍ପନା କରିଛନ୍ତି । ଯୌବନ ଗୁଲିଗଲେ ମଧ୍ୟ ପ୍ରେମର ବିଳୟ ଘଟେନାହିଁ । ବାର୍ଦ୍ଧକ୍ୟ ଅବସ୍ଥାରେ ମଧ୍ୟ ପ୍ରେମିକା ସହ ମିଳିତ ହେବା ପାଇଁ କବି ଆଶାପୋଷଣ କରିଛନ୍ତି । 'ମରଣ ପରେ' କବି ପ୍ରିୟାର ସ୍ପର୍ଶ ପାଇ ପୁନର୍ଜୀବନ ଲଭ କରିବାର ଆଶା ରଖିଛନ୍ତି ।

ମାନସିଂହଙ୍କର ଏହି ସରଳ ତରଳ, ଭାବ ଓ ଭାଷାରେ ମଞ୍ଜୁଳ ପ୍ରେମକବିତା ଧାରାବାହିକ ଭାବେ ରହିପାରିନାହିଁ । 'ଧୂପ'ର ଉଚ୍ଛ୍ୱାସ ପୂର୍ଣ୍ଣ ଆବେଗମୟୀ କବିତା 'ହେମଶସ୍ୟ' ଓ 'ହେମ-ପୁଷ୍ପ'ରେ ମଳିନ ଓ ଦୀପ୍ତିହୀନ ହୋଇଛି । ଏହି ଦୁଇ କବିତା ଗ୍ରନ୍ଥରେ ସାଂସାରିକ ସୁଖ ଦୁଃଖ, ଆଶା-ନିରାଶା, ନବଦମ୍ପତିଙ୍କର ସୌନ୍ଦର୍ଯ୍ୟ ଓ ଭୋଗଲିପ୍ସା ବିଭିନ୍ନ ସ୍ତରରେ କିପରି ଉଜ୍ଜ୍ୱଳ ଓ ବିକଶିତ ତାହା ବର୍ଣ୍ଣିତ । ଏଥିରେ ଜୀବନର ସ୍ପଷ୍ଟ ଓ ବାସ୍ତବଚିତ୍ର ଥିଲେ ମଧ୍ୟ କାଳାତ୍ମକ ଦୃଷ୍ଟିରୁ ପରକୀୟା ପ୍ରେମମୂଳକ ପୁସ୍ତକ "ଧୂପ" ହିଁ ବିଶେଷ ଭାବରେ ଆଦୃତ ।

ମାନସିଂହଙ୍କ ସାହିତ୍ୟସାଧନାର ସମସାମୟିକ ଭାବେ ସବୁଜ କବିଗୋଷ୍ଠୀ ଲେଖନୀ ଧାରଣ କରିଥିଲେ । ସେମାନେ ଥିଲେ କଳ୍ପନାବିଳାସୀ ପଦଭୃକ୍ । ସେମାନେ ରବୀନ୍ଦ୍ରନାଥ ଠାକୁର ଏବଂ ପାଶ୍ଚାତ୍ୟ ରୋମାଣ୍ଟିକ କବିଗୋଷ୍ଠୀ ସେଲି,

ବାଇରନ, କୀଟସଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ସୀମିତ ପରିସର ମଧ୍ୟରେ ସଙ୍କୁଚିତ ଥିଲେ । ଅଧ୍ୟାପକ ନଟବର ସାମନ୍ତରାୟଙ୍କ ଭାଷାରେ କହିଲେ "ସବୁଜ କବିମାନେ ଏଇ ମାଟିର ପାଣି, ପବନ, ମଣିଷକୁ ତ୍ୟାଗ କରି ଏକ ମଧୁମୟ ପରୀରାଜ୍ୟରେ ବିଚରଣ କରିଛନ୍ତି ।" ମାନସିଂହ ସେହି ସବୁଜ ସାହିତ୍ୟିକ ଗୋଷ୍ଠୀର ବିପରୀତମୁଖୀ ଥିବାରୁ ସେମାନଙ୍କ ଦ୍ୱାରା କମ ପ୍ରଭାବିତ ହୋଇଛନ୍ତି । ତଥାପି ମାନସିଂହଙ୍କ କବିତାର ଭାଷା, ପ୍ରକାଶ ଶୈଳୀ, ଛନ୍ଦ ଏବଂ ଲାଳିତ୍ୟ ଅନେକାଂଶରେ ସବୁଜ କବିମାନଙ୍କର ଅନୁବର୍ତ୍ତୀ ।

ମାନସିଂହଙ୍କ ଲେଖାର ସମସାମୟିକ ଭାବେ "ପ୍ରଗତିଶୀଳ ସାହିତ୍ୟ" ନାମରେ ଗୋଟିଏ ନୂତନ ଯୁଗର ସୂତ୍ରପାତ ହୋଇଛି । ଭଗବତୀଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ରାଉତରାୟ, ମନ ମୋହନ ମିଶ୍ର, ଅନନ୍ତ ପଟ୍ଟନାୟକ, କୃଷ୍ଣଚନ୍ଦ୍ର କର ପ୍ରଭୃତିଙ୍କ ସହାୟତାରେ ଏହି ନୂତନ ସାହିତ୍ୟର ଅଭ୍ୟୁଦୟ ହୁଏ । ଏମାନେ ପ୍ରଥମତଃ ଜାତୀୟତାବାଦୀ ଥିଲେ ମଧ୍ୟ କାବ୍ୟ-କବିତା, ଗଳ୍ପ-ଉପନ୍ୟାସ ଆଦିରେ ଏକ ନୂତନ ଦୃଷ୍ଟିଭଙ୍ଗୀ ପ୍ରଚାର କଲେ । ଏମାନେ କାର୍ଲମାର୍କସଙ୍କ ପ୍ରଭାବରେ ବାସ୍ତବ ଓ ବିଦ୍ରୋହାତ୍ମକ କବିତା ସୃଷ୍ଟି କଲେ । କ୍ରମେ ଏମାନଙ୍କ ହସ୍ତରେ ଗୀତ କବିତା ସମସ୍ତ ସୌନ୍ଦର୍ଯ୍ୟ ହରାଇ ଗଦ୍ୟ କବିତାରେ ରୂପାନ୍ତରିତ ହେଲା । ସେମାନେ କବିତାକୁ ପ୍ରତୀକାତ୍ମକ ଭାଷା ଏବଂ ଦାର୍ଶନିକ୍ ଦୃଷ୍ଟିଭଙ୍ଗୀ ଦେଇ ବୌଦ୍ଧିକ ସ୍ତରକୁ ଉନ୍ନୀତ କରାଇଲେ । କବି ମାନସିଂହ ଏହି କବିତାକୁ ଆଦୌ ପସନ୍ଦ କରୁ ନ ଥିଲେ । ତଥାପି ଯୁଗରୁଚି ଅନୁଯାୟୀ ଯେଉଁଠି ସେ ନୂତନ ସାହିତ୍ୟ ସୃଷ୍ଟି ପାଇଁ ପ୍ରୟାସ କରିଛନ୍ତି, ସେଠାରେ ସେ କୃତକାର୍ଯ୍ୟ ହୋଇପାରିନାହାନ୍ତି । 'ଧୂଳି' କବିତା ଏହାର ପ୍ରକୃଷ୍ଟ ଉଦାହରଣ । ଏହି କବିତାରେ ସେ ବୌଦ୍ଧିକ ଚେତନା ଦ୍ୱାରା ପରିଚାଳିତ ହୋଇ ନୂତନ ଦୃଷ୍ଟିଭଙ୍ଗୀ ଦେବାକୁ ଯାଇଥିଲେ ମଧ୍ୟ ତାହା କବିଙ୍କ ଋଦ୍ଧିଷ୍ଣୁ ପ୍ରତିଭାର ପରିଚାୟକ । ସତ୍ୟବାଦୀ, ସବୁଜ ଓ ପ୍ରଗତିଶୀଳ ଯୁଗ ମଧ୍ୟରେ କବି ମାନସିଂହ, କବି ଗଡ଼ନାୟକଙ୍କ ପରି ଜଣେ ଏକକ ସାହିତ୍ୟ ସାଧକ ।

ପ୍ରେମ କବିତା ଗୁଡ଼ିକରେ କବି ମାୟାଧର ମାନସିଂହଙ୍କ ପ୍ରକୃତ କବି-ପ୍ରତିଭାର ବିକଚ ବିକାଶ ଲକ୍ଷ୍ୟ କରାଯାଏ । କବିଙ୍କ ପ୍ରଣୟ ଚେତନା ଏବଂ ସ୍ୱଦେଶ ପ୍ରେମ ସଙ୍ଗେ କଳାର ଉପାସନା କୃତ୍ରିମ ଆବରଣ ମଧ୍ୟରେ ଲୁକ୍କାୟିତ ନୁହେଁ । ତାଙ୍କର ବର୍ଣ୍ଣନା ଶୈଳୀ, କାବ୍ୟିକ ଭାଷାବିନ୍ୟାସ ଏବଂ ସୁସଂଯତ ଚିନ୍ତାଧାରାର ସନ୍ନିକରଣ ସ୍ପଷ୍ଟ ଓ ସରଳ । କିନ୍ତୁ ଦାର୍ଶନିକ ଚିନ୍ତାଧାରାରେ ରୁଦ୍ଧିମନ୍ତ 'ଧୂଳି' ଏବଂ ସାମାଜିକ ଭିତ୍ତିରେ ରଚିତ 'କମଳାୟନ' କାବ୍ୟ କବିଙ୍କ ଋଦ୍ଧିଷ୍ଣୁ ପ୍ରତିଭାର ସଙ୍କେତ ବହନ କରିଚି । ଏହା ଶୁଷ୍କ ଓ ରସହୀନ ହେତୁ ପାଠକର ହୃଦୟକୁ

ସ୍ପର୍ଶ କରେ ନାହିଁ । କେବଳ କବିଙ୍କ ଯୁବଚେତନାରୁ ସମ୍ଭୂତ ପ୍ରେମ ସମ୍ବନ୍ଧୀୟ କବିତା ପାଠକର ଚିତ୍ତାକର୍ଷକ ଓ କବି ହୃଦୟର ପ୍ରକୃତ ପରିଚାୟକ । ଦେଶପ୍ରେମ-ମୂଳକ କବିତା ପର୍ଯ୍ୟାୟରେ କବିଙ୍କ ପ୍ରାଚୀନ ଉତ୍କଳର ଐତିହ୍ୟ, ଗୌରବ ଚେତନା ଏବଂ କଳାର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତି ପାଠକକୁ ମୁଗ୍ଧ କରେ । ଜାତୀୟ ପ୍ରେମ ତଥା ପ୍ରଣୟର ନୂତନ ଦୃଷ୍ଟିଭଙ୍ଗୀ ପ୍ରତି ରାଧାନାଥ, ସତ୍ୟବାଦୀ ଓ ସବୁଜ ଗୋଷ୍ଠୀର କବିମାନେ ଅଧିକରୁ ଅଧିକ ସଚେତନ ରହି ତା'ର ମହତ୍ତ୍ୱ ପ୍ରତିଷ୍ଠାପନରେ ସଚେଷ୍ଟ ଥିଲେହେଁ କବି ମାନସିଂହଙ୍କ ହସ୍ତରେ ଏହି ଦୁଇ ବିଭାଗର କଳନାତ୍ମକ ବିକାଶ ସାଧିତ ହୋଇଛି । ଏହି ଧାରାବାହିକ ପ୍ରଚେଷ୍ଟା ଭବିଷ୍ୟତ ପାଇଁ ପଥପ୍ରଦର୍ଶକର କାର୍ଯ୍ୟକରି ମାନସିଂହଙ୍କ ପ୍ରତିଭାକୁ ଆବିଷ୍କାର କରିଛି । ଏ କ୍ଷେତ୍ରରେ C. M. Bowraଙ୍କ ଉକ୍ତି ପ୍ରଣିଧାନ ଯୋଗ୍ୟ :

"Poetry lives by tradition, and that such tradition is important not merely for poetry but for anything that may rightly be called civilization."

# ମାନସିଂ କବିତାରେ ବେଦନାବୋଧ

ଅଧ୍ୟାପକ ଶ୍ରୀ ବାଳକୃଷ୍ଣ ଶତପଥୀ

ଶିଳ୍ପର ରୂପାୟନ ପୂର୍ବରୁ ସ୍ରଷ୍ଟା ପ୍ରାଣରେ ଦ୍ୱିବିଧ ବେଦନା ଲକ୍ଷ୍ୟ କରାଯାଇପାରେ । ପ୍ରାଣୀ ଜଗତର ଅଜସ୍ର ଅଶ୍ରୁଳ ଘଟଣାର ପୁଞ୍ଜୀଭୂତ ଆବେଦନ ଶିଳ୍ପୀର କୋମଳ ପ୍ରାଣତନ୍ତ୍ରୀରେ ଯେଉଁ କାରୁଣ୍ୟର ସ୍ୱର ଉତ୍ତୋଳନ କରେ ସେଥିରେ ସହାନୁଭୂତିର ଗଭୀର ମାର୍ମିକ ସ୍ପର୍ଶ ଦେଇ ଶିଳ୍ପୀ ପ୍ରକାଶ କାମନାରେ ଅଧୀର ହୋଇଉଠେ । ସ୍ରଷ୍ଟାର ହୃଦୟ-ରାଜ୍ୟରେ ସେହି ଅନୁଭୂତିର ତୀବ୍ର ଆଲୋଡ଼ନ ସ୍ରଷ୍ଟା ପ୍ରାଣକୁ ବେଦନାକ୍ତ କରେ ପ୍ରକାଶ ପାଇଁ । ସେହି ଆଲୋଡ଼ନକୁ ଆବେଦନପୂର୍ଣ୍ଣ ବାଙ୍‌ମୟ ରୂପଶ୍ରୀରେ ମଣ୍ଡିତ କରିବାପାଇଁ ଶିଳ୍ପୀର ମନୋରାଜ୍ୟର ଅଖଣ୍ଡ ପରିକଳ୍ପନା ମଧ୍ୟରେ ତାହାର ବେଦନାବୋଧ ଏକ ମୁଖ୍ୟ ଉପାଦାନ । ତେଣୁ ବିଶ୍ୱ ଜନ-ଯାତନାର ସହାନୁଭୂତିପୂର୍ଣ୍ଣ ସାର୍ଥକ ପ୍ରତୀକ ହେଲା ପ୍ରକୃତ କବିର ଅନ୍ତର । ପ୍ରାଣୀ-ନିର୍ବିଶେଷରେ ପ୍ରତିଟି ଦୁଃଖ, ପ୍ରକୃତ କବିର କୋମଳ ତଥା ରସଗ୍ରାହୀ ମର୍ମପଟରେ ପ୍ରତିଫଳିତ ହୋଇଥାଏ । ସେହି ଅସୀମ ଶକ୍ତିଶାଳୀ ତୀବ୍ର ଅନ୍ତର୍ଦୃଷ୍ଟି, ଜାତି-ଦେଶ କାଳ-ଗୋଷ୍ଠୀ-ନିର୍ବିଶେଷରେ, ପ୍ରତିଟି ପ୍ରାଣୀର ଅନ୍ତର୍ଦେଶକୁ ଅଲୋଡ଼ନ କରି ଅନୁକ୍ତ ପୁଞ୍ଜୀଭୂତ ବେଦନାର ହିସାବ ରଖେ । କାତର କାବ୍ୟପୁରୁଷ ପ୍ରାଣୀଜଗତର ଲୁହକୋହରେ ବ୍ୟଥିତ ହୋଇ କରୁଣ ରାଗିଣୀ ଗାଇଯାଏ । ପ୍ରାଣୀ ଜଗତର ପ୍ରାତ୍ୟହିକ ଜୀବନର ଅଜସ୍ର ଦୁଃଖ ଦୈନ୍ୟ ଯେଉଁ ଅନ୍ତରକୁ ଆଲୋଡ଼ିତ କରେ ନାହିଁ ତାହା ସମ୍ଭବତଃ ମାନବର ଅନ୍ତର ହୋଇପାରେ, କିନ୍ତୁ କେବେହେଁ କବିର ନୁହେଁ । ଜୀବନ-ଯାତ୍ରା-ପଥରେ ଆପାତ-ସୁଖ-ସ୍ପର୍ଶରେ-ଅଧୀର ପ୍ରାଣୀଜଗତର, ଦୁଃଖଭୋଗ ହିଁ ଏକମାତ୍ର ସତ୍ୟ । ସେହି ମହାନ୍ ସତ୍ୟକୁ ସ୍ରଷ୍ଟା କେବଳ ସେତେବେଳେ ହିଁ ଅନ୍ତରରେ ସ୍ପଷ୍ଟ ଅବଧାରଣ କରିପାରେ ଯେତେବେଳେ ସେ ଅଗଣିତ ଶୋକାପ୍ଳୁତ-ଜନତା ମଧ୍ୟରୁ ଜଣେ ହୁଏ, ଯେତେବେଳେ ସହାନୁଭୂତିରେ ତାର ବୁକୁ ଭରିଉଠେ । ଶାଶ୍ୱତ ଦୁଃଖର ସେହି ଭୟଙ୍କର ସ୍ୱରୂପକୁ ଦେଖି ଦେଖାଇଦେବାର ଦାୟିତ୍ୱ ହୋଇଉଠେ ତେଣୁ ସେହି କବିଗୋଷ୍ଠୀର । ଆନନ୍ଦର ଫେନିଳ ଶ୍ରାବଣୀ ପ୍ରବାହ ମଧ୍ୟରେ ଦୁଃଖର ଶାଶ୍ୱତ ଧାରା ବେଶି ସମୟ

ସଗୁ ପ୍ତ ଚେତନାହିଁ । ଶାରଦୀୟ ସ୍ୱଚ୍ଛ ସ୍ରୋତରେ ତାହା ସ୍ୱଭାବତଃ ସ୍ପଷ୍ଟ ହୋଇଉଠେ । ନିଜ ଦୁଃଖକୁ ନିଜେ ଅନୁଭବ କରି ମଧ୍ୟ ସାଧାରଣ ଜନତା ତାର ଭୟଙ୍କର ସ୍ୱରୂପ ପ୍ରତି ସଚେତନ ନ ଥାଏ । ଅସାଧାରଣ ପ୍ରତିଭାର ଅଧିକାରୀ ଶିଳ୍ପୀଗୋଷ୍ଠୀ ହିଁ ସେହି ସ୍ୱରୂପ ଉଦ୍‌ଘାଟନର ସହାୟକ । ବିଶ୍ୱବିଶ୍ରୁତ ପ୍ରତିଟି କଳାକୃତିର ସର୍ଜନା ପଶ୍ଚାତରେ କଳାକାରର ଅନ୍ତରର ଏହି ଭାବଟି ହିଁ ବିଶେଷଭାବରେ କ୍ରିୟାଶୀଳ । ସ୍ରଷ୍ଟାପ୍ରାଣର ଏହି ବାର୍ତ୍ତାକୁ ପୂର୍ଣ୍ଣତଃ ଉପଲବ୍ଧି କରିବାରେ ସ୍ରଷ୍ଟା ସହିତ ଦ୍ରଷ୍ଟାର ପରିଚୟବୋଧକୁ ଦୃଢ଼ ଏବଂ ସମ୍ପୂର୍ଣ୍ଣ କରିବାରେ ଏବଂ ନିଜର ସ୍ୱରୂପକୁ ଘନୀକୃତ ବ୍ୟଥିତ ପ୍ରାଣସତ୍ତା ମଧ୍ୟରେ ଖୋଜି ପାଇବାରେ ଦ୍ରଷ୍ଟାର ପ୍ରାଣ ବି କମ୍ ବେଦନା ଅନୁଭବ କରି ନ ଥାଏ । ଯାହା ଅଶ୍ରୁଳ କେବଳ ତାହାରି ଆବେଦନ ହିଁ ଚିରସ୍ଥାୟୀ । ବେଦନାନୁଭୂତିରୁ ହିଁ ସ୍ଥାୟୀ ଆନନ୍ଦର ଉପଲବ୍ଧି । ଦ୍ରଷ୍ଟା ପ୍ରାଣର ବେଦନା, ସ୍ରଷ୍ଟା ପ୍ରାଣର ବେଦନା ସହିତ ଏକୀଭୂତ ହୋଇ ସୃଷ୍ଟି ଅନ୍ତର୍ଗତ ସମଗ୍ର ସୌନ୍ଦର୍ଯ୍ୟର ଶାଶ୍ୱତ ସ୍ଥିତିକୁ ଉଭୟେ ଉପଲବ୍ଧି କରିଥାନ୍ତି । ସେହିଗୁଡ଼ିକ ଆମର ପ୍ରିୟ କବିତା, ଯାହା ମଧ୍ୟରେ ଆମ ପ୍ରାଣର ଅସୀମ ଯନ୍ତ୍ରଣା ଜୀବନ୍ତ ହୋଇପାରିଛି । ରୂପବିଳାସୀ ସୌନ୍ଦର୍ଯ୍ୟପିପାସୁ ଶିଳ୍ପୀ ଯେତେସବୁ କୁତ୍ସିତ ରୂପହୀନକୁ ଶୋଭନଶ୍ରୀ ଦେଇପାରେ । ତାହାର ସୃଷ୍ଟିରେ ଅସୁନ୍ଦରର ସ୍ଥାନ ନାହିଁ । ତମସାର ନିଦାରୁଣ ରୂପ, ଦୁଃଖର ବୀଭତ୍ସଶ୍ରୀ, ମୃତ୍ୟୁର ପାଣ୍ଡୁର ବିବର୍ଣ୍ଣ ଅଙ୍ଗରାଗ ଇତ୍ୟାଦି ସମସ୍ତ ହିଁ ଶିଳ୍ପୀ ପାଇଁ ରହସ୍ୟାବୃତ ଓ ମନୋଜ୍ଞ । ସକଳ ଯାତନାର ପ୍ରକାଶ ତାର ଶିଳ୍ପ ମଧ୍ୟରେ ସୌଷ୍ଠବ ନିନ୍ଦିତ ହୋଇଉଠେ । ଐହିକ ଜଗତରେ ପ୍ରତ୍ୟହ ଯାହାର ସ୍ପର୍ଶ ମାରାତ୍ମକ, ଅଶୁଭପ୍ରଦ ଅଥଚ ତାହା ସେହି ଶିବର ଉପାସକ, ସତ୍ୟସନ୍ଧାନୀ, ସୌନ୍ଦର୍ଯ୍ୟ ପିପାସୁର ସୃଷ୍ଟି ମଧ୍ୟରେ ମନୋରମ ରୂପଶ୍ରୀରେ ରୂପାନ୍ତରିତ । ଏ ସ୍ଥଳରେ ସ୍ରଷ୍ଟା ଅନୁଭବ କରେ ଦ୍ୱିତୀୟ ବେଦନା । ସେ ବେଦନା କୁତ୍ସିତକୁ ସ୍ୱର୍ଗୀୟ ରୂପରେ ଐଶ୍ୱର୍ଯ୍ୟମଣ୍ଡିତ କରିପାରେ । ସେ ବେଦନା ଅନ୍ତରକୁ ବାହାରେ ପ୍ରକ୍ଷିପ୍ତ କରିପାରେ । ସେ ବେଦନା ଐହିକ ସତ୍ତାକୁ ପାରଲୌକିକ ପ୍ରତିଷ୍ଠା ଦେବାରେ ନିହିତ । ବିଶ୍ୱବେଦନାକୁ କୋମଳ କବିପ୍ରାଣ ନିଜ ବେଦନାରୂପେ ଗ୍ରହଣ କରିଥାଏ । ପରକୁ ସେ ଆପଣାର କରେ । ପରସ୍ୱ ଦୁଃଖ ଏଠି ଆତ୍ମୀୟ ସମ୍ବେଦନଶୀଳତାରେ ନୂତନ ରୂପରେ କବିର ନିଜର ହୋଇଉଠେ । ନୈର୍ବ୍ୟକ୍ତିକ ଶୋକୋଚ୍ଛ୍ୱାସ ବ୍ୟକ୍ତିକ ସତ୍ତା ମଧ୍ୟରେ ନୂତନ ମନୋଜ୍ଞ ରୂପରେ ରୂପାୟିତ ହୋଇ ପୁଣି ବ୍ୟକ୍ତିହୀନତାର ସମୁଚ୍ଚ ଶିଖରକୁ ଉଠିଥାଏ । ବିଶ୍ୱବେଦନା ହିଁ ହୋଇଉଠେ କବିର ନିଜସ୍ୱ ବେଦନା । ବେଦନା-ପ୍ରସୂତ ଅଚିନ୍ତ୍ୟ ଆନନ୍ଦରେ ସେହି ସ୍ରଷ୍ଟା ସ୍ୱକୀୟ ଦୃଷ୍ଟିର ମଞ୍ଜୁଳଶ୍ରୀ ଦେଖି ବିମୋହିତ ହୁଏ । ପଶ୍ଚାତ୍ତରେ ଭୋକ୍ତା, ସୃଷ୍ଟି ମଧ୍ୟରୁ ଆତ୍ମପରିଚୟ ଲାଭ କରିବାପାଇଁ ଯେଉଁ ବେଦନା ଅନୁଭବ କରେ, ପରିଣତିରେ ବ୍ରହ୍ମାସ୍ୱାଦସହୋଦର ରସପ୍ରାପ୍ତିରେ ସେ ଅଲୌକିକ ଆନନ୍ଦ ଅନୁଭବ କରିଥାଏ ।

ସ୍ରଷ୍ଟାପ୍ରାଣର ଏହି ଉଭୟବିଧ ବେଦନା ମଧ୍ୟରୁ କେବଳ ବିଶ୍ୱବେଦନାର ପ୍ରତିଫଳନ ମାନସିଂହଙ୍କ କାବ୍ୟପ୍ରସୂନର ଅନ୍ତର୍ଲୋକରେ କିଭଳି ରୂପାୟିତ ହୋଇଅଛି, ତାହାର ବିଶ୍ଳେଷଣ ହିଁ ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

ମାନବବାଦୀ ମାନସିଂହଙ୍କ ସୃଷ୍ଟିସମୂହର ସମାଲୋଚନା ଆମର ଶ୍ରମକାତର ଦେଶରେ ଅତି ଅଳ୍ପ । ଏହି କ୍ଷୁଦ୍ର ପ୍ରବନ୍ଧ ମାଧ୍ୟମରେ ସେହି ସ୍ରଷ୍ଟାଙ୍କର ଆଲୋଚନାରେ ଏହି ଗୋଟିଏ ଅଭାବ, ତାଙ୍କ-ସୃଷ୍ଟ କବିତାବଳୀକୁ ଆଶ୍ରୟ କରି ଦେଖାଇଦିଆଯାଇଛି ।

ବିପୁଳ ସ୍ରଷ୍ଟା ମାନସିଂହ ଏ ଦେଶ ପାଠକ ନିକଟରେ ପ୍ରାୟଶଃ କେବଳ ପ୍ରେମର କବି ଭାବରେ ପରିଚିତ । ପ୍ରେମର ବ୍ୟାପକ ସଂଜ୍ଞା ଦୃଷ୍ଟିରୁ ମଧ୍ୟ ଏହା ଗୃହୀତ । ଇନ୍ଦ୍ରିୟଲବ୍ଧ ଦେହଜ ପ୍ରେମର ଆବେଦନପୂର୍ଣ୍ଣ ବହୁରାଗରଞ୍ଜିତ ବାଙ୍ମୟ-ବିଳାସ, ମାନସିଂହ ସୃଷ୍ଟିର ଗୋଟିଏ ସାମାନ୍ୟତମ ବିଭାବ ମାତ୍ର । କିନ୍ତୁ ମାନସିଂହ କବିତାର ସର୍ବାଧିକ ଆକର୍ଷଣୀୟ ବିଭାବ ହେଲା, ଚିରନ୍ତନ ମାନବର ଅଗଣିତ ବେଦନାବୋଧର ସାର୍ଥକ ରୂପାୟନ ଏବଂ କବି ମାନସିଂହ ଏ ଦେଶର ନିଃସ୍ୱ-ନିର୍ଜିତ ଗୋଷ୍ଠୀର ଅମାପ ବେଦନାରେ ମର୍ମାହତ ହୋଇ ଗଭୀର ସମ୍ବେଦନଶୀଳ ଅନ୍ତରର ଆଲୋଡ଼ନ କେତେବେଳେ କରୁଣ କଣ୍ଠରେ, କେତେବେଳେ ବିଦ୍ରୋହୀ ସ୍ୱରରେ ଏବଂ କେତେବେଳେ ସ୍ଥିତଧୀ ଦୃଷ୍ଟିଭଙ୍ଗୀରେ ଦୀର୍ଘଦିନ ଧରି ( ପ୍ରାୟ ୪୦ ବର୍ଷ ) ପ୍ରକାଶ କରିଆସିଛନ୍ତି ।

ମାନସିଂହ କବିତାରେ ସେହି ବେଦନାବୋଧ ତାଙ୍କ ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡକୁ ଆଶ୍ରୟ କରି ହିଁ ଏଠାରେ ପରିବେଷିତ କରାଯାଉଛି । ଆଲୋଚନାର ସୁବିଧା ଦୃଷ୍ଟିରୁ ମାନସିଂହ କବିତାବଳୀର କେତୋଟି କାଳ୍ପନିକ ବିଭାଗ ନିର୍ଦ୍ଦେଶ କରାଯାଉଛି ।

(କ) ପ୍ରେମମୂଳକ କବିତାରେ ବେଦନାବୋଧର ଦୃଷ୍ଟାନ୍ତ

(ଖ) ଭକ୍ତିସମ୍ବଳିତ ସୃଷ୍ଟି ମଧ୍ୟରେ ବେଦନାର ସ୍ୱରୂପ

(ଗ) ଦେଶପ୍ରୀତିମୂଳକ ରଚନାରେ ବେଦନାବୋଧ

(ଘ) ନିଃସ୍ୱ ଜନତାର ବ୍ୟଥିତ ଗୀତିକାର ମାନସିଂହ

(ଙ) ବର୍ଣ୍ଣନାତ୍ମକ ରଚନା ଓ କବି ମର୍ମର ବେଦନା

(ଚ) ବ୍ୟକ୍ତିକ ଗୀତିକବିତାରେ ବ୍ୟଥିତ ଅନ୍ତଃସ୍ୱର

(ଛ) ସ୍ରଷ୍ଟା ପ୍ରାଣର ଶ୍ରେଷ୍ଠ କାମନା—ନିର୍ଯାତିତର କଲ୍ୟାଣ ସାଧନ

## (କ) ପ୍ରେମମୂଳକ କବିତାରେ ବେଦନାବୋଧର ଦୃଷ୍ଟାନ୍ତ

ଏହି ପର୍ଯ୍ୟାୟରେ ଗର୍ଭିତ କବିତା ଅନ୍ୟାନ୍ୟ ପର୍ଯ୍ୟାୟ ତୁଳନାରେ ସର୍ବାଧିକ। ପ୍ରେମର ପୂଜାରୀ ସ୍ରଷ୍ଟା ମାନସିଂହ ପ୍ରେମିକ ପ୍ରେମିକାର ବିମୁଗ୍ଧ ଅନ୍ତର ମଧ୍ୟରେ ଯେଉଁ ତୀବ୍ର ବେଦନାର ବାର୍ତ୍ତା ପାଇଛନ୍ତି, ତାର ସ୍ୱରୂପ ଆବେଗପୂର୍ଣ୍ଣ କଣ୍ଠରେ ଏସବୁ କବିତା ମଧ୍ୟରେ ସେ ଗାଇଯାଇଛନ୍ତି । ନବବଧୂ ଦୀର୍ଘଦିନ ପରେ ସ୍ୱାମୀ ସହିତ ମିଳିତ ହୁଏ । ଦୀର୍ଘ ବିରହରେ ସ୍ୱାମୀ ଅସୀମ ବେଦନା ଭୋଗ କରେ । ତାର ବାଳିକାବଧୂକୁ ନିର୍ଜ୍ଜନରେ ପାଇ ପଚାରୁଛି—"......କହନା ସଖୀ ଏବେ, ମନେ କି ପଡ଼ୁଥିଲି ?" କିନ୍ତୁ କିଶୋରୀବଧୂ ସେସବୁ ବିରହ କିଣିପାରିନି । କାର୍ଯ୍ୟବ୍ୟସ୍ତତା ମଧ୍ୟରେ ସଖୀ ସଙ୍ଗାତଙ୍କ ଗହଣରେ ଦିନ ତାର କଟିଯାଇଛି । ସ୍ୱଭାବ-ଭାବପ୍ରବଣ ପ୍ରତ୍ୟେକ ପ୍ରେମିକ ପ୍ରତ୍ୟେକ ନବପରିଣୀତ ସ୍ୱାମୀ ଶୁଣିଲେ ଖୁସି ହୁଏ, ତାର ଅଭାବରେ ତାର ପ୍ରେୟସୀ, ସ୍ତ୍ରୀ ବହୁଦୁଃଖ ଭୋଗ କରିଛି । କିନ୍ତୁ ଯେଉଁ ସ୍ୱାମୀ ଶୁଣେ ଯେ ତାର ସ୍ତ୍ରୀ ବିରହ କଣ ଜାଣିପାରିନି, ତାର ଅନ୍ତର ମଥିତ ହେବା ସ୍ୱାଭାବିକ । ସେ ବିରକ୍ତିରେ ଭର୍ତ୍ସନା ବାଣୀ ଶୁଣାଏ ତାର ବିଶ୍ୱରଚୟିତା ସମାଜ ପ୍ରତି ଯେଉଁ ନିର୍ମମ ସମାଜ, ତା'ର କୋମଳ ପ୍ରେୟସୀର ମନକୁ ଗୃହକର୍ମଜାଲ ମଧ୍ୟରେ ହିଁ ବ୍ୟସ୍ତ ରଖି ପ୍ରେମିକ ଲାଗି ଚିନ୍ତାକରିବାର ମଧୁର ଆକର୍ଷଣରୁ ଦୂରେଇ ରଖେ । ଯେଉଁଠି ପ୍ରେମିକ ଓ ପ୍ରେମିକାର ହୃଦୟସ୍ଥ ବିନିମୟକୁ ସମାଜ "ପାପ ବିଚାର" ବୋଲି ନିର୍ଦ୍ଦେଶ କରେ ସେଠି ପ୍ରେମିକର ବେଦନାକ୍ତ କଣ୍ଠସ୍ୱର ସହିତ କବି ନିଜ କଣ୍ଠ ମିଳାଇ ସେହି ସମାଜକୁ ଓ ଜନତାକୁ "ମୂର୍ଖ ଓ ନିଷ୍ଠୁର" ବୋଲି ଅଭିହିତ କରିଛନ୍ତି ।

ଜନତା କି କେବେ ସୁଖଦୁଃଖ ମୋର ଜାଣିବ,
ନୟନୁ ଲୋତକ ପୋ'ଛିବାକୁ କର ଆଣିବ ?

ଆଷାଢ଼ ଆକାଶର ବଜ୍ର ବିଦ୍ୟୁତ୍-ଆସାର-ଘୋର ତମିସ୍ର ପରିବେଶରେ ପ୍ରିୟା ପଥ ଗୁହିଁ ବସିରହିଛି ଅଭିସାରରେ । କେଉଁ ଦୂର "ସହକାର ତଳେ" ପ୍ରିୟାମିଳନ-ଆଶା-ପରିତ୍ୟକ୍ତ ପ୍ରେମିକର କୋହ ଉଚ୍ଛୁଳିପଡ଼ୁଛି—

ପ୍ରିୟାକୁ ଲଭିବାର ନାହିଁ ତ ଆଶ
ପ୍ରିୟା ପାବନ ପଥେ ହୁଏ ମୁଁ ଘାସ ।

କେଉଁ ଏକ ଅଜଣା ମୂହୂର୍ତ୍ତରେ ନିଃସଙ୍ଗ ପ୍ରେମିକର ଅନ୍ତର ଭିତରେ ଆକର୍ଷଣ ଜାଗିଉଠେ ପ୍ରିୟା ପାଇଁ ବା ସାଥୀ ପାଇଁ । ଅପବାଦ ସହିବାକୁ ହୁଏ, ଯନ୍ତ୍ରଣାରେ ମଥିତ ହେବାକୁ ହୁଏ । ନିଷ୍ଠୁର ସମାଜର ନିର୍ମମ ଶାସନ ଶୃଙ୍ଖଳ

ଆଢ଼େଇବାକୁ ଯାଇ ନାନା ନିର୍ଯ୍ୟାତନା ଭୋଗିବାକୁ ହୁଏ । ବେଳେ, ଅନୁତାପ ମଧ୍ୟ ଆସେ—

ହାୟ ସଖି ! ଦୁଇ ଅଜଣା ସେଦନ
ମିଳଲେ କାହିଁ
ଜୀବନଟାଯାକ ସହିବାକୁ ହେଲ
ମିଳନ ଦାହ ।

ତଥାପି ସେହି ମିଳନ ଦାହ ସ୍ୱାଦ୍ୟ ଓ ମଧୁର । ପ୍ରୀତି-ପେଲବ ପ୍ରେମିକ ପ୍ରେମିକାର ମୁଗ୍‌ଧ ଅନ୍ତର, ଯନ୍ତ୍ରଣାରେ ଜର୍ଜରିତ ହେଲେ ହେଁ ପ୍ରୀତିର ସୀମାହୀନ ମାଧୁର୍ଯ୍ୟ ଉଭୟେ ଅନୁଭବ କରଥାନ୍ତି । ଆଖି ଲୁହରେ ହିଁ ପ୍ରୀତିର ସଫଳତା ପ୍ରମାଣିତ । ପ୍ରେୟସୀ ପାଇଁ ଅନ୍ତରରେ ଯେଉଁ ଆକର୍ଷଣର ତୀବ୍ରତା, ପ୍ରେମିକକୁ ତାହାହିଁ ଉନ୍ମତ୍ତ କରେ, ଅଧୀର କରେ । ସେ ପାଗଳ ହୋଇଉଠେ । ସମାଜର ଅର୍ଗଳ ଭାଙ୍ଗି ଅମଡ଼ା ମାଡ଼ି ଚାଲିଯିବାପାଇଁ ଚାହେଁ । ଏ ପରଂପରାରେ ପ୍ରେମ ପାଇଁ କି ପ୍ରକାର ଯନ୍ତ୍ରଣା ଭୋଗିବାକୁ ହୁଏ, ତାହା ପୁରାଣ-ସାହିତ୍ୟ-ଇତିହାସ-ସମର୍ଥିତ । ପ୍ରେମିକାର ଲାଞ୍ଛନା ପ୍ରେମିକକୁ ବିପ୍ଳବୀ କରେ । ପ୍ରେୟସୀର ଗ୍ଲାନିରେ ନିଜେ ଅପମାନିତ ହୋଇ ସେ ପ୍ରଳୟ-ତାଣ୍ଡବ ରଚେ । ପ୍ରେମ ; ଶୁଦ୍ଧ ପୂତ । ପ୍ରେମିକ ପାପୀ ନୁହେଁ । ଐହିକ ଦାବଦଗ୍‌ଧ ଜୀବନମରୁରେ ପ୍ରେମ ପବିତ୍ର ଶୀତଳ ଝୁଲା । ମନ-ମନ୍ଦିରରେ ଅଧିଷ୍ଠିତ ପ୍ରେମିକ ପାଇଁ ଲୁହର ନୈବେଦ୍ୟ ବାଢ଼ି ପ୍ରେମିକା ମୁଗ୍‌ଧ ହୁଏ । ଜୀବନପ୍ରବାହରେ ଜୀବିକାଜନିତ ଦୃଷ୍ଟିରୁ ଉଭୟେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ନ୍ତି । ସେତେବେଳେ ଦେହ ଦେହ ପାଇଁ ବ୍ୟାକୁଳ ହୁଏନି । ବରଂ ପରସ୍ପର ପରସ୍ପରର ଆଖିଲୁହକୁ ପୋଛି ନ ପାରିବା ଦୃଷ୍ଟିରୁ ନିଜ ନିଜକୁ ହିଁ ଅଭିଶପ୍ତ ମନେ କରଥାନ୍ତି । ପ୍ରେମ ପାର୍ଥିବ ଦୁନିଆରେ ଅପାର୍ଥିବ ସ୍ୱର୍ଗୀୟ ଆଶୀର୍ବାଦ । ଦେହ ଓ ଆତ୍ମାର ଏକ ପରିପୂର୍ଣ୍ଣ ସ୍ଥିତି । ଇନ୍ଦ୍ରିୟ-ଲବ୍‌ଧ ପ୍ରାଥମିକ ପ୍ରେମ-ଅନୁଭୂତି ମାର୍ମିକ ସ୍ପର୍ଶରେ ଅତୀନ୍ଦ୍ରିୟ ପାର-ଲୌକିକ ହୋଇଉଠେ । ପ୍ରାଥମିକ ଅବସ୍ଥାରେ ଦେହ ପାଇଁ ଦେହ ତୃଷିତ ହୁଏ । ଦେହ ଦେହର ମିଳନ ମାଧୁର୍ଯ୍ୟରେ ଆତ୍ମା ପ୍ରସାରିତ ହୁଏ—ଐହିକ ଆକର୍ଷଣ ସ୍ୱର୍ଗୀୟ ସୁଷମାରେ ମଣ୍ଡିତ ହୋଇଯାଏ । ବିଦାୟବେଳାର ବିଦୀର୍ଣ୍ଣ ମର୍ମ ଅନୁକ୍ତ ରହିଯାଏ । ଅସ୍ଫୁଟ କୋହ ଅଟକିଦେଇ ଝରିପଡ଼େ କେଇ ବୁନ୍ଦା ତପ୍ତ ଅଶ୍ରୁ ହୋଇ । ମଣିଷର କୋମଳ ହୃଦୟ ପ୍ରେମର ଅଧିକାରୀ ହୋଇ କେତେବେଳେ ଭାବେ ସେ ସ୍ୱର୍ଗ ସମ୍ପଦର ଅଧିକାରୀ ତ, ପୁଣି କେତେବେଳେ ମନେକରେ ସେ ନିଃସ୍ୱ-ନିର୍ଜିତ । ସାର୍ଥୀହୀନ ପ୍ରଣୟୀ ନିଜକୁ ଅପଦାର୍ଥ ମଣେ । ଚିର-ଅପେକ୍ଷିତ ଅଭିଶପ୍ତ ପ୍ରଣୟୀ ନିଃସଙ୍ଗ ଜୀବନର ଜଟିଳ-ପ୍ରୀତିର ତିକ୍ତ ସ୍ପର୍ଶରେ

ହାହାକାର କରଉଠେ । ସେ ହତଭାଗା, ଦୈବର ହ୍ରୂର ପରିହାସର ସେ ଶରବ୍ୟ । ବର୍ଷା, ବସନ୍ତର ଉଦ୍ଦୀପ୍ତ ବର୍ଣ୍ଣାଢ୍ୟ ଧରଣୀ ତା ପାଇଁ ଅସାର, ଅବାଞ୍ଛିତ ହୋଇଉଠେ । କିନ୍ତୁ ଘୋର ଦୁର୍ଦ୍ଦିନ ମଧ୍ୟ ତା ପାଇଁ ଦୁସ୍ତର ହୁଏନ ଯେତେବେଳେ ସେ ଅନ୍ୟର ଆକର୍ଷଣ ଲାଭ କରିପାରେ । ପ୍ରଣୟୀ ତାର ପ୍ରଣୟିନୀକୁ ବହୁ ରୂପରେ ଲାଭ କରେ । ପ୍ରଣୟିନୀ କେବଳ କୋଳନର୍ମଦା ନୁହେଁ—

"ସଚିବ ସେ ମୋର ଜନନୀ ଭଗିନୀ ପ୍ରିୟା,
ସବୁ ରୂପେ ସବୁ ଭାବେ ସେ କିଣିଲା ହିୟା ।"

ପ୍ରିୟା ପାଇଁ ପ୍ରେମିକ ଅନ୍ତରର ଯେଉଁ ପ୍ରେମର ମହାଦାନ ତାହା ଯଦି ପ୍ରିୟା କର୍ତ୍ତୃକ ଅବଜ୍ଞାତ ହୋଇଯାଏ, ତାହାହିଁ ପ୍ରେମିକର ସର୍ବଶେଷ ଅପମାନ । ତାହା ପ୍ରେମିକର ଅସହ୍ୟ । ସେଥିରେ ହିଁ ସେ ଭାଙ୍ଗିପଡ଼େ । ଠିକ ସେହିଭଳି ପ୍ରତିନର୍ତ୍ତର ପ୍ରେୟସୀର ପ୍ରେମ ନିବେଦନ 'ଉଦାର ପାତ୍ର' ଖୁଣ୍ଟି ନ ପାରିଲେ ସେ ବୁକୁର ବେଦନା ଝରିପଡ଼େ କେଇ ବୁନ୍ଦା ଲୁହର ରୂପରେ । ଦଗ୍ଧ ଜୀବନ ପ୍ରତି ତାର ମୋହ ତୁଟିଯାଏ । ସମସ୍ତ ଜଗତ ତା ପାଇଁ ଶୂନ୍ୟ ଓ ଅସାର । ଏପରିକି ପ୍ରିୟାର ସାମୟିକ ଅଭିମାନ ତା ଅନ୍ତରରେ ନିଃସଙ୍ଗର ତୀବ୍ର ଜ୍ୱଳନ ସୃଷ୍ଟି କରି ତାକୁ ଅଧୀର କରିଏ । ପ୍ରେମଜନିତ ବ୍ୟଥା ପାଇଁ ସଚେତନ ରହି ପ୍ରେମିକ ପ୍ରିୟାଠାରୁ ଦୂରରେ ରହିବାପାଇଁ ଇଚ୍ଛା ମନରେ ସାମୟିକ ପୋଷଣ କଲେ ମଧ୍ୟ ହୃଦୟ-ପୃଷ୍ଠରେ ତାହା ଅସମ୍ଭବ ହୋଇଉଠେ । ପ୍ରେମର ଆକର୍ଷଣ ସୁଦୂରପ୍ରସାରୀ । ପ୍ରଣୟୀ ପ୍ରଣୟିନୀର ସମ୍ପର୍କ ଜନ୍ମଜନ୍ମାନ୍ତରରେ ପ୍ରସାରିତ । ଗୋଟିଏ ଜନ୍ମରେ ପ୍ରେମ ପୂର୍ଣ୍ଣ ହୋଇପାରେନା, ସାର୍ଥକ ହୋଇପାରେନା । ତା ପାଇଁ ବହୁ ଜନ୍ମ ଗ୍ରହଣ କରିବାକୁ ପଡ଼େ । ମରଦେହ ଶ୍ମଶାନ ଭୂମିରେ ଦଗ୍ଧ ହେଲା ପରେ ଆତ୍ମାରେ ପ୍ରିୟା ପାଇଁ ଯେଉଁ ଆକର୍ଷଣ, ତାହାହିଁ ପୁନର୍ଜନ୍ମର ପଥ ଉନ୍ମୁକ୍ତ କରିଦିଏ ! ଶ୍ମଶାନ ଧୂଳି ବି ପ୍ରିୟାର ଚରଣ ସ୍ପର୍ଶ ପାଇଁ ଅପେକ୍ଷା ରଖେ, କେବଳ ପୁନର୍ଜନ୍ମରେ ମିଳନ କାମନାରେ । ଜାତି-ଧର୍ମ-ବର୍ଣ୍ଣ-ନିର୍ବିଶେଷରେ ପ୍ରେମ ପ୍ରସାରିତ । ପ୍ରେମ ପାଇଁ ପରିଚିତ ଅପରିଚିତର ପ୍ରଭେଦ ଥାଇ ନ ପାରେ । ଜ୍ୟୋତ୍ସ୍ନାସ୍ନିତ ଧରଣୀ ବୁକୁରେ, ବସନ୍ତର ବର୍ଣ୍ଣାଢ୍ୟ ସନ୍ଧ୍ୟାରେ, ଆଷାଢ଼ର ଘନଘୋର ମହ୍ଲାର ମଧ୍ୟରେ, ଶରତର ଶୁଭ୍ର ଯାମିନୀରେ ପ୍ରେମିକ ପ୍ରେମିକା ଯଦି ସାଥୀହୀନ, ତାହା ନିର୍ମମ ବିଧିର ନିଦାରୁଣ ନିର୍ଦ୍ଦେଶ ବ୍ୟତୀତ କଣ ବୋଲି ବିବେଚନା କରିଯାଇପାରେ ? ଏହା କଣ ସୃଷ୍ଟି ପ୍ରକ୍ରିୟାର ଯଥୋପଯୁକ୍ତ ଅନୁଶାସନ ? ଦାରୁଣ ସଂସାରର ଶତ ଦୁର୍ବିପାକ ମଧ୍ୟରେ ପ୍ରିୟାର ଆକର୍ଷଣ ନିର୍ଯ୍ୟାତିତକୁ ସ୍ୱପ୍ନସୋହାଗଭରା ଅତୀନ୍ଦ୍ରିୟ ରାଜ୍ୟକୁ ଉତ୍ତୋଳନ କରେ । ଅଧର ଅଧରର ମିଳନ ମୁହୂର୍ତ୍ତରେ ଦେବତାର ମହାପ୍ରାଣ, ତା'ର କ୍ଷୁଦ୍ର ପ୍ରାଣରେ

ଅନୁଭୂତ ହୁଏ । ଲେଖକର ଅନ୍ତରାଳରେ ମର୍ମର ଅନୁକ୍ତ ବେଦନା ଅନ୍ୟ ମର୍ମରେ ନୀରବରେ ପ୍ରତିଧ୍ୱନିତ ହୋଇ ଲୁହରେ ହିଁ ତାର ଉତ୍ତର ଦେଇଯାଏ । ନର-ପ୍ରାଣରେ ଯେଉଁ ନିଖିଳ ନିର୍ଯ୍ୟାତନା, ତାର ତୀବ୍ରତାକୁ ଉପଶମ କରିବାପାଇଁ ବିଶ୍ୱପିତାଙ୍କର ନାରୀସୃଷ୍ଟି ଅନନ୍ତଚମତ୍କୃ । ପ୍ରୀତିପୂର୍ଣ୍ଣ ଏ ଅନ୍ତର ପରି ସସୀମ ଏକରୂପ ସ୍ଥିତି ବାସ୍ତବିକ ଯଥେଷ୍ଟ ନୁହେଁ । ପ୍ରୀତି ଅନ୍ତରକୁ ପ୍ରସାରିତ କରେ, ଦେହୀକୁ ଅଦେହୀ ହେବାପାଇଁ ପ୍ରେରଣା ଦିଏ । ଏକକୁ ବହୁରେ ବ୍ୟାପ୍ତ ହେବାପାଇଁ ତାର ଇଙ୍ଗିତ ଅନ୍ତର ସବୁ ସମୟରେ ପାଇଥାଏ । ଏହା ନ ହୋଇ-ପାରିଲେ ପ୍ରେମିକ ହୁଏ ଅତୃପ୍ତ । ପ୍ରେମହୀନ ଅନ୍ତର ନିଷ୍କରୁଣ ବିଶ୍ୱ ପାଇଁ ଏକ ତପ୍ତ ଦୀର୍ଘଶ୍ୱାସ । ସେ କ୍ଷୀଣ, ସଙ୍କୁଚିତ, ତାର ପ୍ରବାହ ଶିଥିଳ । ବସ୍ତୁର ଶତ ଐଶ୍ୱର୍ଯ୍ୟ ତାହାକୁ ଶାନ୍ତି ଦେଇପାରେନି । ବୁକୁଫଟା ହସର ଅନ୍ତରାଳରେ ତାର ଆତ୍ମା କରୁଣ ବିଳାପ ହିଁ କରିଥାଏ । ଏ ବିଶ୍ଳେଷଣ ମାନସିଂଙ୍କ ଏ ପର୍ଯ୍ୟାୟର ପ୍ରାୟ ଚାଳିଶଟି କବିତାକୁ କେନ୍ଦ୍ର କରି ଦିଆଯାଇଛି ।

ପ୍ରେମର ଏତାଦୃଶ ପ୍ରସାରିତ ପରିଚୟ ମାନସିଂ ସୃଷ୍ଟିରେ ପାଠକ ପାଇଥାଏ । ଶାଶ୍ୱତ ପ୍ରେମିକର ମର୍ମ ମନ୍ଥନ କରି ବ୍ୟଥାର ଯେଉଁ ବୈଚିତ୍ର୍ୟପୂର୍ଣ୍ଣ ଆତ୍ମୀୟ ସ୍ୱରୂପ ତାଙ୍କ ଉଦ୍‌ଘାଟିତ କବିତାରେ ହୋଇଛି—ତାହା ଦେହଜ ପାଶବିକ ବୁଭୁକ୍ଷାମୟ ସଙ୍କୀର୍ଣ୍ଣ କାମଲାଳସାକୁ ସ୍ୱର୍ଗୀୟ ପ୍ରେମରେ ରୂପାନ୍ତରିତ କରି ପ୍ରେମିକର ମଧୁମୟ ଅନ୍ତରର ଜୟଗୀତିକୁ ଆବେଗ ଉଚ୍ଛ୍ୱାସପୂର୍ଣ୍ଣ ଭାଷା ଓ ଛନ୍ଦରେ ସାର୍ଥକ ସୁନ୍ଦର କରିଯାଇପାରିଛି । ମର୍ମ ମନ୍ଥନ, ହୃଦୟ ବେଦନା, ବ୍ୟଥିତ ଆତ୍ମାର କରୁଣ ବିଳାପ ହିଁ ଏହି ସୃଷ୍ଟିରେ ଶ୍ରେଷ୍ଠ ପ୍ରେମରେ ରୂପାୟିତ । ପାରସ୍ପରିକ ବେଦନାବୋଧରେ ହିଁ ଏଠି ପ୍ରେମର ପ୍ରତିଷ୍ଠା ।

## (ଖ) ଭକ୍ତିସମ୍ବଳିତ ସୃଷ୍ଟି ମଧ୍ୟରେ ବେଦନାର ସ୍ୱରୂପ

ଏହି ପର୍ଯ୍ୟାୟରେ ମାନସିଂହଙ୍କର ପ୍ରାୟ କୋଡ଼ିଏଟି କବିତାର ବିଶ୍ଳେଷଣ ଭିତ୍ତିରେ ବେଦନାର ସ୍ୱରୂପ ଉଦ୍‌ଘାଟନ କରାଯାଉଛି । ପ୍ରେମିକ କବି ମାନସିଂଙ୍କର ବିଶ୍ୱପିତାଙ୍କ ନିକଟରେ ଜଣାଣର ମଧ୍ୟ ଅନ୍ତ ନାହିଁ । ମାନସିଂ-କାବ୍ୟପୁରୁଷ ଏହି ପ୍ରାଚୁର୍ଯ୍ୟପୂର୍ଣ୍ଣ ଦୁନିଆ ଭିତରେ ସତତ ଅତୃପ୍ତ । ସେ କାବ୍ୟପୁରୁଷର ପ୍ରସାରିତ ଅନ୍ତର ନିର୍ମମ ଜୀବନଯନ୍ତ୍ରଣାରେ ସତତ ଯେପରି ସ୍ଥିତିହରା ସଂସାର ଚଲାପଥରେ ଅଗଣିତ ଯାତ୍ରୀ—ଯାହା ଅବାରିତ । ସଂସାରୀର ପଦଦ୍ୱୟ ସଂସାର ପଥଧୂଳିରେ ସତତ ଧୂସର । ଏଠି କେହି କାହାକୁ ଅପେକ୍ଷା କରେନି । ମୁକ୍ତ କଣିକା ଲଭିକରି ଐହିକ ଦୁଃଖ କାଟି ଆପଣାର ସଭିଏଁ ଚାଲିଯାନ୍ତି । ପଚ୍ଛାରହିଯାଏ ଏ ପଥପ୍ରାନ୍ତରେ ପଙ୍ଗୁ । ନିଃସଙ୍ଗ ପଥିକ ନିଜେ ଯିବାର ସାମର୍ଥ୍ୟ ନାହିଁ । ଆକୁଳ କାକୁତି ତାର ।

"ରଖିବ ନକ ମୋ ପାଶେ ତବ ଯାନ
ପଂଗୁରେ ଏ, ଦେବାକୁ ଟିକଏ ଥାନ ?"

ସାଂସାରିକ କର୍ମକଞ୍ଜାଳବ୍ୟସ୍ତ ନାବିକ ପାଇଁ ଏ ସଂସାର ଦୁସ୍ତର ସାଗର ଘନଘୋର ଘୂର୍ଣ୍ଣିରେ ତାର ସାଥୀସ୍ଥାନ ତରଣୀ ଲକ୍ଷ୍ୟସ୍ଥାନ ଭାବେ ଭାସିଯାଏ । ସେ ବିକଳ ଆଖିରେ ଆକାଶର ଧ୍ରୁବତାରାକୁ ଲକ୍ଷ୍ୟ କରେ । କାହିଁ ସେ ଧ୍ରୁବତାରା ! ଜୀବନର ଧ୍ରୁବତାରା ତା ପାଇଁ ଅବ୍ୟକ୍ତ । ଲକ୍ଷ୍ୟସ୍ଥାନ ଜୀବନ ଏଠି ହାସ୍ୟହତାଶମୟ । ଅକିଞ୍ଚନ ମଣିଷ ସର୍ବଶକ୍ତିମାନ ଈଶ୍ୱରଙ୍କ ସହିତ ଯେଉଁ ସମ୍ପର୍କ ପ୍ରତିଷ୍ଠା ପାଇଁ ବ୍ୟାକୁଳ, ବେଳେ ବେଳେ ତା'ର ମନରେ ସନ୍ଦେହ ଆସେ; ସଂସାରୀ ଦୃଷ୍ଟିରେ ଏଥିପାଇଁ ସେ ଆଉ ଉପହସିତ ହେବ ନାହିଁ ତ । ଭକ୍ତ ବାରମ୍ବାର ସଂସାରର ତୀବ୍ର ତାଡ଼ନାରେ କ୍ଷତବିକ୍ଷତ ହୋଇ ଆତ୍ମବିଶ୍ୱାସ ହରାଇବସେ, ଦୁଃଖକୁହିଁ ତାର ପ୍ରାପ୍ୟ ଓ ପୁଞ୍ଜି କରନ୍ତଏ । ମଣିଷର ଅହଂ, ବିପର୍ଯ୍ୟସ୍ତର ମୁକାବିଲା କରିବାକୁ ଯାଇ ଲୁପ୍ତ ହୁଏ । ଶେଷରେ ସେ ପରମପିତାଙ୍କର ଶାସନକୁ ନତଶିରରେ ମାନିନେବା ପାଇଁ ସ୍ଥିର କରେ । ସେ ଏଭଳି ଏକ ମୀମାଂସାରେ ପହଞ୍ଚେ ଯେଉଁଥିରେ ଅଛି ଆତ୍ମମୁକ୍ତି, ଓ ଆତ୍ମୋତ୍ସର୍ଗ । ଲକ୍ଷ ଜନର ମଙ୍ଗଳ ପାଇଁ ସେ ତାହାର ଦୁଃଖପିଷ୍ଟ ଜୀବନକୁ ବଳି ଦେବାରେ ଆଗ୍ରହୀ ହୋଇ ଉଠେ ।

"ନବଢ଼ ଦୁଖାନଳେ ଜଳି ମୁଁ ମରେ ପଛେ
ତୁମର ଲୀଳା ପରକାଶୁ ହେ;
ନବଢ଼ ନରଗଣର ଅନ୍ତ ଭେଦ ପ୍ରହେ
ଗଭୀର ବିଶ୍ୱାସ ଆସୁ ହେ ।"

ବିଶ୍ୱଲୀଳାର ସାର୍ଥକ ପ୍ରକାଶ ପାଇଁ ଏଠି ମାନସିଂ-କାବ୍ୟପୁରୁଷ ଭାବିଛି—

"ମୋର ଏ ହୋମାନଳ-ଦଗ୍ଧ ଚିତାଧୂଳି
ଲୀଳାରେ ତବ ହେଲେ ଆସୁ ହେ ।"

ଏହି ଆତ୍ମନିବେଦନ ଭକ୍ତ ଇତିହାସରେ ପୁନରୁକ୍ତି ମଧ୍ୟରେ ହିଁ ବୈଚିତ୍ର୍ୟ-ମଣ୍ଡିତ ତଥା ଅନୁକରଣୀୟ ହୋଇଉଠିଛି । ଯେତେ ଦଳିତ, ଲାଞ୍ଛିତ, ସେମାନଙ୍କର ଅଗଣିତ ଦୁଃଖଗାଥା ଗାଇଯିବାରେ ହିଁ ସେହି ସମ୍ବେଦନ ଶୀଳ କାବ୍ୟ-ପୁରୁଷ ନିଜକୁ ଧନ୍ୟ ମନେ କରିଛି । ସେ ସ୍ୱର୍ଗ, ମୁକ୍ତି ଚାହିଁନି; ଜୀବନହିଁ ଚାହିଁଛି । ଦୁଃଖ-ପିଷ୍ଟ ଜୀବନର ଆଖିଲୁହରେ ନିଜ ଲୁହ ମିଶାଇହିଁ ସେ ପାଇଛି ସ୍ୱର୍ଗସୁଖ । ତାହାହିଁ

ତାର ପରମ ପୁରୁଷତ୍ୱ । ଏପରିକି ବିରହ ଜନିତ ଅଶ୍ରୁସଜଳ ଅନୁଭୂତି ମଧ୍ୟରେ ଅନ୍ତର୍ଯାମୀଙ୍କ ଅଧିଷ୍ଠାନକୁ କବି ପ୍ରତ୍ୟକ୍ଷ କରିଛନ୍ତି :

"ଏ ଜଗତେ ଅଶ୍ରୁ କାହିଁ ତମ ସ୍ୱର୍ଣ ବିନା
ବିରହର ଦ୍ରଷ୍ଟା ତୁମେ ବେଦନାର ସ୍ୱାମୀ ।"

ନିଖିଳର ନିର୍ଯାତନାରେ ପରମକାରୁଣିକ ଭଗବାନଙ୍କର ମଧ୍ୟ ଦୁଃଖର ଅନ୍ତ ନାହିଁ । ମଙ୍ଗଳମୟ ଭଗବାନଙ୍କର ସେହି ଦୁଃଖର କିଛି ଅଣୁପରମାଣୁ ବହନ କରିପାରିଲେ ଭକ୍ତ ଭାବେ ଯେ ତାର ଜୀବନ ସାର୍ଥକ ହେବ । ତର୍କପର ଯୌବନ, ସ୍ୱାର୍ଥପର ପ୍ରୌଢ଼ାବସ୍ଥା ପରେ ଜୀବ ଅନୁଭବ କରେ, ସେ ପରମପିତାଙ୍କଠାରୁ ବହୁଦୂରକୁ ଚାଲିଯାଇଛି । ତାର ଅନ୍ତରର ନିର୍ମଳ ସରଳ ବିଶ୍ୱାସ ଦୂରେଇଯାଇଛି । ସେ କାତର କଣ୍ଠରେ ବିଳାପ କରୁଛି ସେହି ନିବିଡ଼ ବିଶ୍ୱାସ ଲାଭ ପାଇଁ । ସେ ତର୍କ ଚାହିଁନି, ତଥ୍ୟ ଚାହୁନି; ଜ୍ଞାନ ଗବେଷଣା ତାର ଆକାଂକ୍ଷିତ ନୁହେଁ । ଏସବୁ ତାକୁ ଭ୍ରାନ୍ତ ପଥଗାମୀ କରିଛନ୍ତି । ତାର ଦରକାର କେବଳ ନିର୍ମଳ ବିଶ୍ୱାସ ।

ନିଖିଳସୃଷ୍ଟିର ନିର୍ଜିତ ଜନଗ୍ରାମ; ଯା'ର ଯାତ୍ରା କେବଳ ନିର୍କମୁଖୀ । ଜୀବର କୋମଳ ପ୍ରାଣ ସେ ଦୁଃଖ ସହିପାରିନି । ପରମପୁରୁଷଙ୍କଠାରେ ତାର ଅସୀମ ଭରସା । ନିଜ ନିଜ କର୍ମଫଳକୁ ଭୋଗିବାକୁ ଛାଡ଼ିଦେଇ ଭକ୍ତର ଭଗବାନ ନିଶ୍ଚିନ୍ତ, ନିଦ୍ରିତ । ସହାନୁଭୂତିଶୀଳ କବି ଅନ୍ତର କରୁଣ ବ୍ୟସ୍ତ ଆହ୍ୱାନ ତୋଳିଛି—

"ଦେବଶିଶୁ ଚଳେ ନରକର ଅଭିସାରେ,
ଭଗବାନ ତୁମେ ନିଦ୍ରିତ କେଉଁଠାରେ ?"

ଭକ୍ତ ଭଗବାନଙ୍କଠାରେ ଅସରନ୍ତି ଜଣାଣ କରେ । ଭଗବାନଙ୍କର କରୁଣା ଭକ୍ତ ପରୀକ୍ଷା ସରି ନ ଥାଏ । ଦୁଃଖପିଷ୍ଟ ଭକ୍ତ ଆର୍ତ୍ତଚିତ୍କାର କରୁ କରୁ ବିଦ୍ରୋହୀ ହୋଇ ଉଠେ, ସେ ବିଦ୍ରୋହର ଜନ୍ମ ଲଜ୍ଜିନାରୁ । ସେ ବିଦ୍ରୋହ—ଆତ୍ମଶୁଦ୍ଧିପାଇଁ, ମଙ୍ଗଳର ଅଧିଷ୍ଠାନ ପାଇଁ । ବିଦ୍ରୋହୀର ଖିଆଲୀ ବିଧାତା ପ୍ରତି ଅନୁଯୋଗ ନାହିଁ, ଅଭିଯୋଗ ନାହିଁ । ଗଭୀର ଆତ୍ମବିଶ୍ୱାସ ଜାଗ୍ରତ ହୋଇଛି—

"ଖିଆଲୀ ବିଧାତା ଲାଗି ଅନୁଯୋଗ ଅବା ଅଭିଯୋଗ
ନ ରଚ; କିପରିଣେ, ଲୁହେ ନରଲାଗି ରଚିଯିବ ଯାଗ ।"

ତନ ଆସେ, ପଥଭ୍ରଷ୍ଟ ଦେବତାର ଅନ୍ୱେଷଣ କରେ । ସେ ଅନ୍ୱେଷଣ ମନ୍ଦିରରେ ନୁହେଁ; ଗୀର୍ଜାରେ କିମ୍ବା ମସଜିଦ୍‌ରେ ନୁହେଁ । ଶତ ନିକ୍ଷେପିତର

ନୈଡକରେ ଏବଂ ଲକ୍ଷ ଅବଜ୍ଞାତ ବକ୍ଷରେ ସେ ଦେବତାଙ୍କର ଅଧିଷ୍ଠାନ ହିଁ ଦେଖେ । ସମସ୍ତ ପ୍ରାଣୀର ଅପ୍ରମିତ ଦୁଃଖରେ ଭ୍ରିମାଖୋଇ ଯେଉଁପରି ଗାଇ ଉଠିଛନ୍ତି—

"ପ୍ରାଣୀର ସମସ୍ତ, ଦୁଃଖ ଅପ୍ରମିତ, ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।"

ଠିକ ସେହିପରି ମାନସିଂ କୃତାର୍ଥ ହୁଅନ୍ତି—
"ଦେହ ପଛେ ଦାବ ଦହନେ, ମୋର ଚତାରୁ ବାହାରୁ ଆଲୋକ

× × × ×

ମୋର ଜୀବନ ଧୋଇଛ ଲୁହରେ, ମୋତେ ପୋଡ଼ିଛ ରୁଦ୍ର କୋହରେ
ଅନ୍ୟ ମାଗୁଣି ନାହିଁ ନାଥ ତମ ପୟରେ; ଅର୍ଥ ଦିଅ ହେ ନରର୍ଥ ଲୁହ ଦାହରେ ।"

କୋଟିଜନତାର ଦୁଃଖରେ ସେହି ବ୍ୟଥିତ ପ୍ରାଣ ଅନ୍ୟର ମଙ୍ଗଳ ପାଇଁ ମୃତ୍ୟୁକୁ ଆଲିଙ୍ଗନ କରେ । ତାର ଶୋଣିତ ପ୍ରବାହରେ ଧରିତ୍ରୀ ଉର୍ବର ହେଉ । ତାର ଚତାର ଆଲୁଅରେ ଦୁଃଖାନ୍ଧକାର ଚରଦନ ପାଇଁ ଲୁପ୍ତ ହେଉ—ଏହାହିଁ ତା'ର ଜଣାଣ ।

ଗୀତି କବିତାର ମନୋଜ୍ଞ ଗୀତି ମାଧୁର୍ଯ୍ୟଭରା କେତୋଟି ପଂକ୍ତିରେ ଭକ୍ତଗୋଷ୍ଠୀର ପ୍ରତିନିଧିତ୍ୱ କରି, ମାନସିଂ ଜୀବନର ଶେଷ ଇଚ୍ଛା ବିଭୁପାଦପଦ୍ମରେ ଜଣାଇଛନ୍ତି । ସେ ଅକିଞ୍ଚନ, ସେ କାତର, ସେ ନିଃସ୍ୱ । ନିର୍ଯ୍ୟାତିତ ପାଇଁ ତାଙ୍କ ଆତ୍ମା ଚିରବ୍ୟାକୁଳ୍ୟମାନ । ଦେବତାଙ୍କଠାରେ ଶତ ମାଗୁଣି ସତ୍ତ୍ୱେ ସେ ଦରବାରରେ ଯଦି କବିପ୍ରାଣ ପ୍ରତିଷ୍ଠା ପାଏନି, ପରିଚିତ ହୁଏନି, ପକ୍ଷାନ୍ତରେ ଅବହେଳିତ ହୁଏ, ସେ ଦୁଃଖ ସବୁ ଦୁଃଖକୁ ବଳିଯାଏ । କବିର ଗୁହାରି ଦେବତା ନ ଶୁଣନ୍ତୁ । କବିକୁ ପଛେ ସେ ନ ଚହ୍ନନ୍ତୁ, କିନ୍ତୁ କବି ଭିକ୍ଷା କରେ ସେ ତାଙ୍କୁ ନ ଚହ୍ନିଚ ବୋଲି ପ୍ରକାଶ ନ କରନ୍ତୁ । ଏକ ଭ୍ରାନ୍ତ ଉତ୍ସାହରେ ଆଶାର ଆକାଶ ବକ୍ଷରେ କବିର ପକ୍ଷବିସ୍ତାର ଯଦି ନିଷ୍ଫଳ ହୁଏ ସେ ବଞ୍ଚିପାରେନି । ସଂସାର ରଣାଙ୍ଗନରେ ସେ ଏକ ଜାଗ୍ରତ ସୈନିକ । ଏ ରଣାଙ୍ଗନରେ ସମର୍ଥ ସେନାପତି ନିଜେ ମଙ୍ଗଳମୟ । ସୈନିକର ଶକ୍ତି କ୍ରମେ କମିଆସୁଛି । ଦୁର୍ବଳ ଭଗ୍ନକାନୁ ସୈନିକ ସେନାପତି ପଦରେ ଗୁହାରି କରୁଛି—ଶକ୍ତି ଦିଅ !

"ତୁମରି ଆଶିଷେ ତୁମରି ଯୁଦ୍ଧ ଜୟ ମୁଁ କରେ ।"

## (ଗ) ଦେଶପ୍ରୀତିମୂଳକ ରଚନାରେ ବେଦନାବୋଧ

ମାନସିଂ କାବ୍ୟ ପୁରୁଷ ଭକ୍ତର ମାଗୁଣିରେ ଯେପରି କଣ୍ଠ ମିଳାଇପାରିଚି, ସେତିକି ସେ ଆପଣାର କରିପାରିଚ୍ଛି ଜନ୍ମଭୂଇଁକୁ । ଜନ୍ମମାଟିର ଗ୍ଲାନି ସେ ସହିପାରିନି । ଅତ୍ୟାଗୁଣର ଧର୍ମବୃକ୍ଷରେ ଯେଉଁ ଅତ୍ୟାଗୁର, ତାକୁ ବରଦାସ୍ତ କରିପାରିନି । ଜନ୍ମଭୂମି ଓଡ଼ିଶାର ପ୍ରାଚୀନ କୀର୍ତ୍ତି, ପ୍ରତିଷ୍ଠିତ ଐତିହ୍ୟ, ପ୍ରସାରିତ ମାନବତାବୋଧ ଆଜି ଲୁପ୍ତ । ଏ ଭୂଇଁର ପ୍ରଥିତଯଶା ନରପତି ଆଜି ପରଲୋକରେ । ଦେଶବିଦେଶରେ ପରିଚିତ ଓଡ଼ିଆ ଆଜି କାଙ୍ଗାଳ, ନିଃସ୍ୱ । ଜନ୍ମଭୂଇଁର ଏ ଦୁରବସ୍ଥା ପାଇଁ କବି ଅନ୍ତରରେ ଦୁଃଖର ସୀମା ନାହିଁ । କବି ମାନସିଂଙ୍କ ଦେଶପ୍ରୀତି ସଙ୍କୀର୍ଣ୍ଣ ପ୍ରାଦେଶିକତାର ଗଣ୍ଡି ମଧ୍ୟରେ ଆବଦ୍ଧ ନୁହେଁ । ତାହା ମହାଭାରତୀୟ ପ୍ରୀତିରେ ରୂପାନ୍ତରିତ । ଭାରତ ଜାତି ଅର୍ଦ୍ଧନଗ୍ନ, ରୁଗ୍ଣ, କ୍ଷୀଣାଂଶ । ପରମପିତାଙ୍କ ନିକଟରେ କବିଙ୍କର ପ୍ରାର୍ଥନା—ଏ ଜାତିକୁ ଦୃଢ଼ କର, ମିଥ୍ୟାଜାଲରୁ ମୁକ୍ତ କର, ଆତ୍ମପ୍ରତିଷ୍ଠ କର । ନିଖିଳଦେଶର ସେବିକା ହେବାପାଇଁ କବିମାନସୀ ସତତ ତତ୍ପର । ଏ ଜାତିର ନମସ୍ୟ ନେତା ଗାନ୍ଧୀ ଗୋପବନ୍ଧୁଙ୍କ ପ୍ରୟାଣରେ ଜାତିପ୍ରାଣର ମୂର୍ଚ୍ଛନାର ଦାହକୁ ମାନସିଂଙ୍କ କବିଅନ୍ତର ଗଭୀର ଭାବରେ ଆଲୋଡ଼ିତ ହୋଇଉଠିଚ୍ଛି । ଏ ଜାତିର ବିଶ୍ୱବିଶ୍ରୁତ ଭାସ୍କର୍ଯ୍ୟ କୋଣାର୍କର ଦୁଃଖ ବୁଝିଚ୍ଛି ମାନସିଂ କାବ୍ୟ-ପୁରୁଷ—

> "ହେ କୋଣାର୍କ ବିଗତଯୌବନା
> ମୌନ ଦୁଃଖେ ସୈକତ ଶୟନା ।"

କ୍ଷୟିଷ୍ଣୁ କୋଣାର୍କ ଏ ଅଧଃପତିତ ଜାତିର ଭାଗ୍ୟଲିପିର ନିଦର୍ଶନ । ଏ ଅସାମାନ୍ୟ ସୌନ୍ଦର୍ଯ୍ୟର ଅବକ୍ଷୟ ବିଶ୍ୱବାସୀର କଳାପିପାସୁ ଅନ୍ତରରେ ତୀବ୍ର ବେଦନା ଜାଗ୍ରତ କରିଚ୍ଛି—

> "ବିମୁଗ୍ଧ ସଂସାର ତୋର ପାଦତଳେ ଅଦ୍ୟାପି ସୁନ୍ଦରୀ
> ସମଦୁଃଖେ କାନ୍ଦିଥାଏ ବ୍ୟାକୁଳିତ ଆପଣାର ପରି ।"

ପ୍ରକୃତିର ଶୋଭନ ଭଣ୍ଡାର ଜନ୍ମଭୂମି ଉତ୍କଳର ଦୁର୍ଦ୍ଦଶା କବି ଅନ୍ତରରେ ଯେଉଁ ଆଲୋଡ଼ନ ତୋଳିଚ୍ଛି ମହାନଦୀର ଜ୍ୟୋତ୍ସ୍ନାବିହାର କାଳରେ ତାହା ପ୍ରକାଶ ପାଇଚ୍ଛି । ବୀର ରକ୍ତପିଣ୍ଡରେ ଗଢ଼ା ଦୁର୍ଗ ବାରବାଟୀ, ଯାର ଅଶ୍ରୁଳ ପରିଣତି ଅଦ୍ୟାପି ବିଗଳିତ—ଗରିମାମୟ ପୁଷ୍କଳ ଅତୀତ ଆଜି ଯାହାର ଜୀର୍ଣ୍ଣ କଙ୍କାଳବର ମଧ୍ୟରେ ପ୍ରେତାୟିତ—ଶିଳ୍ପ ସ୍ଥାପତ୍ୟ, ସାହିତ୍ୟ ସଂସ୍କୃତି, ବାଣିଜ୍ୟ, ବ୍ୟବସାୟ ସର୍ବୋପରି ବୀରତ୍ୱ ଓ ଅଖଣ୍ଡ ଆଧିପତ୍ୟରେ କେବଳ ଭାରତ କାହିଁକି ସୁଦୂର ପ୍ରାଚ୍ୟଭୂଖଣ୍ଡରେ

ଯାର ପ୍ରତିଷ୍ଠା ଥିଲା ସୁଦୂରପ୍ରସାରୀ ତାହାର ସାମ୍ପ୍ରତିକ ଐଶ୍ୱର୍ଯ୍ୟ ମୁଠାଏ ଧୂଳି ଭଳି ଅବଜ୍ଞାତ । ସାର ଓଡ଼ିଆଜାତି ତଥାକଥିତ ଅନ୍ୟ ଭଦ୍ର ଉନ୍ନତ ଜାତି ତୁଳନାରେ ହେୟ ଓ ଅକର୍ମଣ୍ୟକର । ଉତ୍କଳର ଏତାଦୃଶ ଅବସ୍ଥାରେ ଓଡ଼ିଆ ଜାତିର ଅଧଃପତନ ନିଃସ୍ୱ ପରିଚିତିରେ ବେଦନା ବିଜଡ଼ିତ କବିକଣ୍ଠ ଗାଇଛି—

"ଏକ ଦିନ ଯେହୁ ଆତିଥ୍ୟେ ତୋର ମଣିଲେ ନିଜକୁ ଧନ୍ୟ
ଦାନ୍ତ ଦେଖାଇ ସେହି ଆଜି କହେ, ଉଡ଼େ, ଅସଭ୍ୟ, ବନ୍ୟ ।"

ଧୂଷ୍ଟଳ ଅତୀତର ଅଜସ୍ର ଗୌରବ ସଙ୍ଗେ ସମସାମୟିକ ଦୟନୀୟ ପରିସ୍ଥିତିର ତୁଳନା କରି ଯେ କେହି ଦେଶପ୍ରେମୀ ଓଡ଼ିଶାଦୁଃଖରେ ମର୍ମାହତ ହେବ । ଏ ଭୂଇଁରେ ଥିଲେ ସଚ୍ଚୋଟ ଦେଶପ୍ରେମୀ ମହାତ୍ମାଙ୍କର ଅନ୍ତେବାସୀମଣ୍ଡଳୀ । କାକଟପୁରର ସେହି ନିରଞ୍ଜନ ସ୍ୱାଇଁ ଯେ କି କବିପ୍ରାଣର ମୁଖପତ୍ର, ସ୍ୱରାଜ୍ୟାଶ୍ରମର ତତ୍କାଳୀନ ନୀତିଆଦର୍ଶର ଯେଉଁ ଉଲ୍ଲଙ୍ଘନ, ତାହା ପାଇଁ ଦୁଃଖାବେଗରେ ଅଧୀର ହୋଇ କିଛି ଦିନ ପାଇଁ ଗୁରୁତର ଅସୁସ୍ଥ ହୋଇ ଟଳିପଡ଼ିଛି, ସେହି ସ୍ୱରାଜ୍ୟାଶ୍ରମର ପ୍ରକୋଷ୍ଠ ମଧ୍ୟରେ ଅତୃପ୍ତ ଆତ୍ମା ତାର ନିର୍ବାଣ ପାଇଯାଇଛି । କବି ତା ଦୁଃଖରେ ସମଦୁଃଖୀ । କେବଳ କବି ନୁହନ୍ତି—

"ଦୁଃଖୀ ନିରଞ୍ଜନ ପାଶେ ନତଯାନୁ ତା ଆଡ଼କୁ ଚାହିଁ
ଦେଶର ପ୍ରଧାନମନ୍ତ୍ରୀ ବସିଛନ୍ତି, ନେତ୍ରୁ ବହେ ଧାର
ଅନୁତାପ ଅବା କରୁଣାର ।"

ସ୍ୱତନ୍ତ୍ର ଉତ୍କଳର ଗଠନ ପାଇଁ ଗୋପବନ୍ଧୁ ଓ ମଧୁବାବୁଙ୍କର ଯେଉଁ ଅବଦାନ, ଯେଉଁମାନେ କି ଅଶ୍ରୁ ଢାଳି ରକ୍ତ ଦେଇ ନିଜ ନିଜ ଜୀବନକୁ ଏକ ଏକ ଦୀର୍ଘଶ୍ୱାସ କରିଯାଇଛନ୍ତି, ସେହି ଜାତି ଆଜି ଉତ୍କଳର ଗୌରବ ଅବବୋଧରେ ଅକ୍ଷମ । ଶିଳ୍ପୀ ସେ, ସୈନିକ ସେ; କିନ୍ତୁ ଅନ୍ୟର ଭୂଇଁରେ ସେ ଆଜି ମାଳୀ, ବେହେରା, କୁଲି, ମଜୁରିଆର ବେଶରେ ଲାଞ୍ଛିତ । ଏସବୁର ଚର୍ଚ୍ଚା କବି 'ପ୍ରାଦେଶିକ' କବିତାରେ କରିଯାଇଛନ୍ତି ।

ଦେଶପ୍ରେମୀ ମାନସିଂ ଦେଶ ଓ ଦଶର ଦୟନୀୟ ଅବସ୍ଥାରେ ଯେଉଁ ବେଦନା ଅନୁଭବ କରିଛନ୍ତି ତାର ସାର୍ଥକ ରୂପାୟନ ତାଙ୍କ ସୃଷ୍ଟ ବହୁ କବିତାରେ ସ୍ପଷ୍ଟ ପ୍ରକଟିତ ।

**(ଘ) ନିଃସ୍ୱ ଜନତାର ବ୍ୟଥିତ ଗୀତିକାର ମାନସିଂ**

"ଦେବଭୋଗ ନିରନ୍ନରେ ଦିଅ, ଦେବସେବା ହେଉ ମାନବରେ
ହେଉ ଦେବତାର ଦରଶନ ଲଭ, ମାନବର ପ୍ରତି ଘରେ ଘରେ ।"

ନିରନ୍ନ ନିର୍ଯ୍ୟାତିତର ଅନ୍ତର ମଧ୍ୟରେ ଦେବତାର ଅନ୍ୱେଷଣ କରିବା, ଦୀନସେବାକୁ ଦେବସେବା ବୋଲି ବିଶ୍ୱାସ କରିବା, ଦରିଦ୍ରର ଅଶ୍ରୁରେ ନିଜ ଅନ୍ତରକୁ ପକ୍ଷାଳନ କରିବାରେ ମାନସିଂଙ୍କ କାବ୍ୟପୁରୁଷ ପ୍ରକୃତ ସାର୍ଥକତା ଲଭ କରିଛି । ଚଳିଆ ଜୀବନର ବିଳାପ ଅନ୍ତରାଳରେ ସେ ଜୀବନ ପ୍ରତି ସୀମାହୀନ ମମତା, ମଜଦୁର ଜୀବନର ପେଷଣ ମଧ୍ୟରେ ମାଲିକର ଐଶ୍ୱର୍ଯ୍ୟ ପ୍ରତି ଅଜସ୍ର ବିଦ୍ରୋହ କବିଅନ୍ତରରେ ଜାଗ୍ରତ ହୋଇଛି । ପଥପ୍ରାନ୍ତରେ ଯେଉଁ ପଙ୍ଗୁ ଭିକାରୀ ଦିନସାରା ଆକୁଳ ଚିତ୍କାର କରି କରି ବସିଥାଏ ମୁଠିଏ ଦାନ ପାଇଁ, ଗୋଟିଏ ପଇସା ପାଇଁ, ମଣିଷଜାତିର ବିତ୍ତଶାଳୀ ପ୍ରଭାବଶାଳୀ ଅଗଣିତ ପ୍ରତିନିଧିର ଅନ୍ତରରେ, ତା ପାଇଁ କିଏ କାଣିଚାଏ ମମତା ଦେଖାଏ ? କିନ୍ତୁ ଦୁଃଖାପ୍ଳୁତ ଆଉ ଏକ ବୁଭୁକ୍ଷୁର ତୃପ୍ତି ପାଇଁ ସେ ତାର ସାମାନ୍ୟ ପ୍ରାପ୍ତି ଅକାତରେ ତ୍ୟାଗ କରିଦେଇପାରେ ।

ଉଦର ପୂର୍ତ୍ତି ପାଇଁ, ମହାଜନର ଦେଣା ପରିଶୋଧ ପାଇଁ, ଦରିଦ୍ର ଓଡ଼ିଆ ସୁଦୂର ରେଙ୍ଗୁନ୍ ଯାଏ । କିଏ ଫେରେ ଅତିସାର ଜ୍ୱରର ତୀବ୍ର ତାଡ଼ନାରେ ଭଗ୍ନ ସ୍ୱାସ୍ଥ୍ୟ ହୋଇ, କାହାର ବା ଖବର ଦୁଇ ଧାଡ଼ି ଆସିଥାଏ ଆପଣାର ହୃଦୟ କେଇଟିରୁ କେଇବୁନ୍ଦା ଲୁହର ପ୍ରତିଦାନ ଆଶାରେ । ବୃଦ୍ଧା ଜନନୀର ସଜଳ ଚକ୍ଷୁ, ନବପରିଣୀତା ସ୍ତ୍ରୀର ବ୍ୟଥିତ ମର୍ମ, ହୁଏତ କେଇଟି ନୁଖୁରା ଶିଶୁଙ୍କର ସେନେହମିଶା ଡାକ, ଦରିଦ୍ରର ଅନ୍ତରରେ ବି ଗଭୀର ରେଖା ଟାଣିଦିଏ । ତାର ମୂଲ୍ୟବାନ ଭେକ ନ ଥାଇପାରେ । କିନ୍ତୁ ଅମୂଲ୍ୟ ଅନ୍ତରରେ ତାର ବି ସୀମାହୀନ ମମତା । ସେହି ମମତାର ଡୋରିରେ ଟାଣି ହୋଇ ଜମିଦାର ନିକଟରେ ସର୍ବସ୍ୱ ବିକି ଦେଇ ସେ ଫେରିଆସେ ତାର ଭଙ୍ଗା କୁଡ଼ିଆର ସାଦର ଅଭ୍ୟର୍ଥନାକୁ ଏଡ଼ି ନ ପାରି । ମାଟିର ମଣିଷ ମାଟିରେ ଲହୁଲୁହ ନିଗାଡ଼ିଦେଇ ଲକ୍ଷ୍ମୀପୂଜା କରେ । ଜମିଦାରର ପିଆଦା ଖବର ଦେଇଯାଏ—ଧାର ପରିଶୋଧ ପାଇଁ । ସମଗ୍ର ବର୍ଷର ସ୍ୱେଦାଶ୍ରମର ଫଳକୁ ପିଆଦା ହାତକୁ ଏତେ ସହଜରେ ସେ ଟେକି ଦେଇପାରେନି । ସେ ଭୁଲିବାପାଇଁ ଚାହେଁ ତାର ଦୁଃଖ । ପିଆଦା କଥା ମନକୁ ଆଦୌ ନେବା ପାଇଁ ଚାହେଁନି । ସେ ଚାହେଁ ତାର ମେହେନତିର ସୁନାର ଫସଲ ସେ କାଟିନେବ । ବୁଝିପାରେନା ନିର୍ବୋଧ ଚାଷୀଟା—ପରିଶ୍ରମରେ ହିଁ ତାର ଅଧିକାର, ଫସଲରେ ନୁହେଁ । ସମାଜର ମାନବିକତାହୀନ ଶାସନ ଶୃଙ୍ଖଳା ମଧ୍ୟରେ କେତେ ଯେ ଆର୍ତ୍ତପ୍ରାଣ ନିରବଧି କ୍ରନ୍ଦନରତ ତାର ହିସାବ କିଏ ରଖେ ? ମଣିଷ ସମାଜ ଚାହିଁଥାଏ ସୁଖ ସୋହାଗ ପାଇଁ । ସମାଜ ପକ୍ଷାନ୍ତରେ ତାର ଅତ୍ୟାଚାରରେ ପିଷ୍ଟ କରେ ଅଗଣିତ ଅସହାୟଙ୍କୁ । କେତେ ଜୀବନ ସମାଜ ଶୃଙ୍ଖଳା ଦାଉରେ ସଙ୍ଗହୀନ, ନିଦାରୁଣ । କେତେ ଜୀବନ ସେହି ଅତ୍ୟାଚାରରେ ପତିର ସୋହାଗ, ସନ୍ତାନ ବାତ୍ସଲ୍ୟରୁ ଚିରବଞ୍ଚିତ । ଘୋର ତମିସ୍ରାର ଆସୁରିକ ଗର୍ଜ୍ଜି, କେଉଁ କୁଟୀର ଅଭ୍ୟନ୍ତରରେ ଗୃହସ୍ୱାମୀ ହତ୍ୟା କରେ ତାର ପ୍ରାଣପ୍ରିୟ ସ୍ତ୍ରୀ ସନ୍ତାନଙ୍କୁ । ସେହି

ଛୁରିକା ପୁଣି ନିଜର ନିଦାରୁଣ ଗ୍ରୀବାରେ ବିଦ୍ଧ କରି ମୃତ୍ୟୁଯଜ୍ଞରେ ପୂର୍ଣ୍ଣାହୁତି ଦିଏ । ଜୀବନ ଯୁଦ୍ଧରେ ବାରମ୍ବାର କ୍ଷତାକ୍ତ ସଂସାରୀ, ତାର ମଧୁସ୍ୱପ୍ନ ନିଷ୍ଫଳ, ତାର ଜୀବନ ଏକ ଦୀର୍ଘଶ୍ୱାସ, ତାର ସଂସାର ଏକ ପ୍ରହସନ । ରକ୍ତସ୍ରୋତରେ ସେ ପିପାସିତ ଆତ୍ମା ମୁକ୍ତି ଲାଭ କରେ । ପୁତ୍ର କାମନାରେ ଅଧୀର ହୋଇ ନାରୀ ତୀର୍ଥଯାତ୍ରା କରେ ! ଏ ସମାଜରେ ପ୍ରିୟ ସଙ୍ଗିନୀମାନେ 'ମଣି'କୁ ନେଇଯାନ୍ତି ପୁରୀ । ଏ ଦେଶ ପ୍ରତିଷ୍ଠିତ ସଂସ୍କୃତିର ବିକଳାଙ୍ଗ, ବିଭତ୍ସ ପ୍ରତିନିଧି 'ପୁରୀପଣ୍ଡା' ତାକୁ ଗୋପନରେ ଆଶୀର୍ବାଦ ଢାଳିଦିଏ ପାଶବିକ ଲୀଳାରେ । ଅନ୍ତଃସତ୍ତ୍ୱା ମଣି ଫେରିଆସେ । ସେହି ସଙ୍ଗୀମାନଙ୍କର କୁପ୍ରସ୍ତାବରେ, ସ୍ୱାମୀର ଭର୍ତ୍ସନାରେ ଗୋଟିଏ ଶୋକାପ୍ଳୁତ ପ୍ରାଣ ଆଦ୍ୟ ପୌଷର ଶିଶିରବିନ୍ଦୁ ପରି ଝରିପଡ଼େ । ସତୀ ସୀତା ଦେଶର 'ମଣି' ତଥାପି ସ୍ୱାମୀର ମଙ୍ଗଳ କାମନା କରି ସଂସାରରୁ ବିଦାୟ ନିଏ । ସ୍ନେହକାଙ୍ଗାଳ ମଣିଷର ଟିକିଏ ସ୍ନେହ, ଟିକିଏ ଆଶ୍ୱାସନାରେ ପୁଲକିତ ହୋଇଯାଏ । କିନ୍ତୁ ନିଃସ୍ୱର ବେଦନାବିଦ୍ଧ ଅନ୍ତରକୁ କିଏ ସ୍ନେହ ଦେବ ? ସେ ବ୍ୟାଧିଗ୍ରସ୍ତ, ସେ ତ ଅଧିକତର ପରିତ୍ୟାଜ୍ୟ । ସୁପ୍ତ ସମାଜର ଅପାଙ୍କ୍ତେୟ, ନିର୍ବାଣମୁଖୀ ଦୀପଶିଖାରେ ସେ ଜୀବନକୁ ସାମାନ୍ୟ ସ୍ନେହ-ତୈଳରେ ପୁନର୍ଜୀବିତ କରାଯାଇପାରେ । କ୍ୱଚିତ ଏହି ବ୍ୟାଧିତ ସମାଜର ବିକଳାଙ୍ଗ ଗଣ୍ଡି ମଧ୍ୟରୁ ଏକ ଏକ ଦେବଶିଶୁର ଆବିର୍ଭାବ ହୋଇଥାଏ । ଯାହାର ସେବାଯତ୍ନରେ, ସ୍ନେହ, ଦରଦରେ ଅଗଣିତ ମୁମୂର୍ଷୁ ପ୍ରାଣ ବଞ୍ଚିଉଠେ, ଯାହାର ପ୍ରମାଣ ମାନସିଂହଙ୍କ "ହାଡ଼ିବାଡ଼ି" ଗାଥା-କବିତାରେ ପ୍ରାଞ୍ଜଳ ହୋଇଉଠିଛି । ସୁଦୂର ଗଣ୍ଡଗ୍ରାମର ଯଦୁ ସ୍ୱାଇଁ ଜୀବନଯୁଦ୍ଧର ପୁଞ୍ଜି ପାଇଁ ହୀରାକୁଦ ଆସେ, ବନ୍ଧ ତିଆରିରେ କୁଲିଗିରି ପାଇଁ । ଅସାବଧାନତାରେ ବନ୍ଧ ତଳକୁ ଖସିଯାଏ ଦୁର୍ବଳ ପାଦ ଦିଟା, ଦରିଦ୍ର ଜୀବନର ଯବନିକା ପଡ଼ିଆସେ । ମୁଣ୍ଡ ପିଟି ନିସ୍ସହା ନାରୀ ଆଖିଲୁହରେ, ହୃଦୟରକ୍ତ ବହିଯାଏ—ଚାହିଁରହିଥାଏ ଏକାଧିକ ସନ୍ତାନର ନିର୍ବୋଧ ବୁଭୁକ୍ଷୁ ଦୃଷ୍ଟି । କବି ଅନ୍ତର ଯଦୁ ସ୍ୱାଇଁର ମୁକ୍ତ ଆତ୍ମା ପ୍ରତି ଅଶ୍ରୁତର୍ପଣ କରି ଗାଇଉଠିଛି—

"ମୋହର ଏଇ କଠିନ ପିଣ୍ଡିତଳେ
ଅରିଉଠୁଛି ଯଦୁ ସ୍ୱାଇଁର ଦାରୁଣ ନିର୍ଯ୍ୟାତନା
ବିକଳ ଆର୍ତ୍ତି ଧ୍ୱନି ତାହାର
ଅଶାନ୍ତ ଆତ୍ମାର ।"

ଦୀନଦୁଃଖୀର ଅସରନ୍ତି ଦୁଃଖପୂର୍ଣ୍ଣ ଜୀବନ ପ୍ରତି, ସୀମାହୀନ ଯନ୍ତ୍ରଣାର ଅନୁକ୍ତ ବେଦନାକୁ ଅନ୍ତର ପ୍ରତି ମାନବବାଦୀ କାବ୍ୟପୁରୁଷ ଚିରଦିନ ନମସ୍କାର କରିଯାଇଛି । ଉତ୍ତପ୍ତ ମରୁର କାଳବୈଶାଖୀ ଘୂର୍ଣ୍ଣିରେ ଯେଉଁ ଜୀବନ ଜୀବନ୍ତ ମରଣର ତୀବ୍ର ଯନ୍ତ୍ରଣା ପ୍ରତ୍ୟହ ଭୋଗ କରେ, ତାହାର ଲୁହ-କୋହରେ କବି ଅନ୍ତର ଯଦି ସମବେଦନାରେ

ପ୍ରଶସ୍ତ ସୂଚନା, ସହାନୁଭୂତିରେ ଯେଉଁ ବିଚଳିତ ସୂଚନା, ସେ କବି ଜନତାର ପ୍ରତିନିଧି ନୁହେଁ, ସ୍ୱପ୍ନପୁରୁଷର ବାର୍ତ୍ତାବହ ହୋଇପାରେ । କବି ମାନସିଂଙ୍କ ମାନବପ୍ରୀତି ଗଭୀର ହୃଦୟସ୍ଥ ବେଦନା ରସରେ ଅଭିଷିକ୍ତ ।

"ନମସ୍କାର କରେ ମୁହିଁ ଅସହାୟ ସେହି ନରନାରୀ
ତୁମ୍ଭର ଦୈବତ ସତ୍ୟ ଏ ଧରାରେ ହେବାକୁ ସ୍ଥାପିତ
ଇତିହାସ-ପଥ ସବୁ ଆର୍ଦ୍ର କଲା ଯାଙ୍କ ଅଶ୍ରୁ ବାଣ ।"

## (ଙ) ବର୍ଣ୍ଣନାତ୍ମକ ରଚନା ଓ କବିମର୍ମର ବେଦନା

ଏ ପର୍ଯ୍ୟାୟରେ ଗୁଡ଼ିଏ କବିତାକୁ ଅନ୍ତର୍ଭୁକ୍ତ କରାଯାଇଛି । 'ବିରହୀ ଘନ' କବିତାଟିରେ କବିଙ୍କ ବିଶ୍ୱାସ—ଆକାଶର ଭାସମାନ ଅଗଣିତ ମେଘମାଳାର ଅନ୍ୱେଷଣ ଅବାରିତ । କାହା ପ୍ରତି ସେ ଅନ୍ୱେଷଣ ? କିଏ ସେହି ଅଭାଗିନୀ, ହୃଦୟହୀନା, କଠିନା ପାଷାଣୀ ! ଆକାଶରୁ ଝରିପଡ଼େ ଯେଉଁ ବାରିଧାରା, ତାହା ବିରହୀ ଘନର ବ୍ୟଥିତ ପ୍ରାଣର ଲୋତକଧାରା କି ? ମେଘ ପ୍ରତି କବି ପରମ୍ପରା ନାନାବିଧ କଳ୍ପନା ଯୋଗ କରିଛି । ମାନସିଂ କାବ୍ୟପୁରୁଷର ବେଦନାକ୍ତ ଅନ୍ତର୍ଦୃଷ୍ଟି ଘନକୁ କରିଛି ବିରହୀ—

ନୟନର ତପ୍ତ ଲୁହେ ଆକାଶ ଅବନୀ
ଯୁଗୁଁ ଯୁଗୁଁ ବୁଲୁଥାଅ କି ବ୍ୟାକୁଳେ ସମସ୍ତ ଧରଣୀ,

× × × ×

କେମନ୍ତେ ସେ ଅଭାଗିନୀ, ହୃଦହୀନା କଠିନା-ପାଷାଣୀ
କେଉଁଠାରେ ଅଛି ରହି ବୁକୁଫଟା ଏ ଡାକ ନ ମାନି ?

ପରିଶେଷରେ କବି ଅନ୍ତରର ଅଭୂତ ଯୋଗ ଯୋଗ ଏହି ଘନ ସହିତ :

'ତୁମ ପରି ବନ୍ଧୁ ଘନ ଏ ଦୀନର ହଜିଛି ରତନ
ପ୍ରଣୟର ତାରା ଗୋଟି ହୃଦାକାଶୁ ଲଭିଛି ପତନ ।'

'ହେମନ୍ତ ପ୍ରଭାତ'ର ମଞ୍ଜୁଳ ଅର୍ଥପୂର୍ଣ୍ଣ ବର୍ଣ୍ଣନା ମାଧ୍ୟମରେ କବି ସୌନ୍ଦର୍ଯ୍ୟ ସହିତ ବିରହ-ଦୁଃଖଚିତ୍ରର ଉଦ୍‌ଘାଟନ କରିଅଛନ୍ତି । ବର୍ଣ୍ଣୋଜ୍ଜ୍ୱଳମୟ ସୁନେଲି ହେମନ୍ତ ସକାଳ । ଆନନ୍ଦର ଅପୂର୍ବ ସମାବେଶ, ତଥାପି ଝରିପଡ଼ୁଛି ଆଦରର କାନନରୁ ବିରହିଣୀ କପୋତୀର କରୁଣ ବିଳାପ ।

"× × × ପ୍ରଶାନ୍ତ ଗଗନ
ଶାନ୍ତ ସୁଶୀତଳ ବାୟୁ, ଅନ୍ତର କାନନ
ଝଙ୍କାରିତ ହୁଏ ଖାଲି କରୁଣ ରୋଦନେ
ବିରହିଣୀ କପୋତୀର ×××"

ଅନ୍ୟ ଏକ ବର୍ଣ୍ଣନାମୂଳକ ଗାଥା କବିତା 'ତଅପୋଇ ବିଳାପ' । ଓଡ଼ିଆ ଜାତିର ଚିର ପରିଚିତ ଆନ୍ତରିକ ଶୋକୋଚ୍ଛ୍ୱାସ-ଭରା ଏହି ଗାଥା ଗୀତି । ଅନୂଢ଼ା ବାଳିକାର ଏହି ଦୁଃଖମୟ ଜୀବନକାହାଣୀ ପ୍ରତିଟି କଣୋଓ୍ୱା ପ୍ରାଣରେ ବେଦନାର ବାର୍ତ୍ତା ପ୍ରଚ୍ଛର କରିଆସୁଛି କେଉଁ ଅଜଣା ଅଶୁଣା କାଳରୁ ।

କବିତାରେ ପ୍ରକୃତିର ରୁଦତା ଭିତରେ ପ୍ରକୃତି କବି କପିର ମୁଖ୍ୟମୁଖରେ ପଡ଼ିଯାଇଛି ଅଜଣା ଅଶୁଣାରେ ତାହା ହିଁ ବର୍ଣ୍ଣିତ ।

## (ଚ) ବ୍ୟକ୍ତିକ ଗୀତି କବିତାରେ ବ୍ୟଥିତ ଅନ୍ତଃସ୍ୱର

ବ୍ୟକ୍ତିକ ଗୀତି-କବିତାଗୁଡ଼ିକରେ ବ୍ୟକ୍ତି ଜୀବନ ସହିତ କାବ୍ୟପୁରୁଷର ଏକ ମନୋଜ୍ଞ ମିଳନ ସଂଘଟିତ ହୋଇଥାଏ । କାବ୍ୟପୁରୁଷର ପ୍ରକାଶ ମାଧ୍ୟମରେ କବି ଜୀବନ ଜାଣିବା ସହଜ ନୁହେଁ । କାରଣ ଯାହା କବି ଜୀବନର ଜିଜ୍ଞାସା, ଆକାଙ୍କ୍ଷା, ଦର୍ଶନ ତାହାର ପ୍ରକାଶ ସଚେତନ କାବ୍ୟପୁରୁଷ କରେ । ବ୍ୟକ୍ତିଜୀବନର କଞ୍ଚୁକ ସତ୍ତାକୁ କାବ୍ୟପୁରୁଷ ରୂପ ଦେଇଥାଏ । ଏହି ବ୍ୟକ୍ତିକ ଗୀତିକବିତାଗୁଡ଼ିକରେ ବ୍ୟକ୍ତିଜୀବନର ସୁଖାନୁଭୂତି ଯେ ମାନସିଂ ପ୍ରକାଶ କରିନାହାନ୍ତି ତାହା ନୁହେଁ । କିନ୍ତୁ ବ୍ୟକ୍ତିକ ଦୁଃଖ-ଯାତନାକୁ ମଧ୍ୟ ସେ ହୃଦୟସ୍ପର୍ଶୀ ଭାବରେ ପ୍ରକାଶ କରିଛନ୍ତି ଏହି ପର୍ଯ୍ୟାୟ ଅନ୍ତର୍ଭୁକ୍ତ କବିତାବଳୀରେ । ତେଣୁ ପ୍ରେମର, ଆନନ୍ଦର କବି ମାନସିଂ ବେଦନାର କବି ମଧ୍ୟ ଏବଂ କବି ଅନ୍ତରର ଏହି ବେଦନାବୋଧ ସୁଦୂରସ୍ପର୍ଶୀ ଏବଂ ତାର ପ୍ରକାଶ ଅତୀବ ହୃଦ୍ୟ ତଥା ମନୋଜ୍ଞ ।

'ମୋ ଧନରେ', 'ଯାଇଛୁ ସେ', 'ଶିଶୁର ଦାନ', 'ରୂପାନ୍ତର' କବିତା ଗୁଡ଼ିକରେ ସନ୍ତାନ-ବିୟୋଗବିଧୁର ମାନସିଂ ହୃଦୟର ଅସୀମ କାରୁଣ୍ୟ ପ୍ରକାଶ କରିଛନ୍ତି । ଫୁଟିଲି ଫୁଲ ପରି ଗୁଡ଼ିଏ ହିଁ ଥିଟିଏ । ମାନ ଦୁଇଟି ଶରତର କଢ଼ିଟା ଲୀଳା, କେତୋଟି ଦିନଟି ହସରେ ଭୁଲାଇଦେଇ ଗୁଲିଯାଇଛି ତାର ବାପମାଙ୍କୁ— ସେହି ଅଜଣା ରାଇଜକୁ, ଯେଉଁଠୁ କେହି କେବେ ଫେରିଆସିନି, ସେଇ ରୂପରେ ହଜିଲା ରତନ ପାଇଁ ଦୁଇ ପ୍ରାଣୀର ବୁକୁ ଫାଟିଯାଉଛି । ମିଛ ମାୟାର ସଂସାରର ସୁଖ ପରଶ ଆଉ ଭଲ ଲାଗିନି । ଫୁଲର ପାଖୁଡ଼ା ଝରିଯାଏ । ଫୁଲ କିନ୍ତୁ ମରେନି ।

"ସେ କିନ୍ତୁ ମରି ଯେ ନାହିଁ—ମିଥ୍ୟା ସେ ବଚନ
ବର୍ଷେ ନାହିଁ ରୂପ ଆଉ ସ୍ନେହର ମରଣ ।"

ସୋହାଗର ଗଭୀର ବିଶ୍ୱାସ ଭିତରେ ସେ ଜୀଇଁ ରହେ ଚିରଦିନ ।

'ବନ୍ଧୁ ବିୟୋଗ', 'ହେ ବନ୍ଧୁ' କବିତା ଦୁଇଟି—ସ୍ୱର୍ଗତ କମ୍ରେଡ୍ ଭଗବତୀ ଚରଣ ପାଣିଗ୍ରାହୀଙ୍କର ଅମର ଆତ୍ମା ପ୍ରତି କବି ଅନ୍ତରର ସ୍ନେହ ନୈବେଦ୍ୟ ।

"ସ୍ମୃତିର ସ୍ଫଟିକ-ପାତ୍ରରୁ ହେ ବନ୍ଧୁ ପରମ
ଝଲମଲ ହୁଏ ଏକ ଅଶ୍ରୁବିନ୍ଦୁ ମମ,
କେ ତାର ବୁଝିବ ମର୍ମ ! କା ଆଗେ ଢାଳିବ ସେ ବିଧୂତି"

ସାଧାରଣ ଲୌକିକ ବନ୍ଧୁତାଠାରୁ ବହୁ ଊର୍ଦ୍ଧ୍ୱରେ ଥିଲେ ଉଭୟେ । ଯେଉଁ ପ୍ରାଣ ଦେଶ ଓ ଦଶର ସେବା ପାଇଁ, ସେ ପ୍ରାଣ ଥିଲା କମ୍ରେଡ୍ ଭଗବତୀଙ୍କର । ଯାହା ଥିଲା ଅତ୍ୟାଚାର, ଅନ୍ଧବିଶ୍ୱାସ, କୁସଂସ୍କାର ତାହା ପ୍ରତି ଥିଲା ସେ ଶକ୍ତିର ଅଖଣ୍ଡ ଜୟଯାତ୍ରା । କାଳଚକ୍ରର ଘୂର୍ଣ୍ଣନରେ ଖସିପଡ଼ିଲା ସେ ମହାଜ୍ୟୋତିଷ୍କ । ସ୍ନେହମୟ ମମତାପିଷ୍ଟ ବନ୍ଧୁପ୍ରାଣ ପୂର୍ବସ୍ମୃତିକୁ ସଙ୍ଗୀତ କରି ବିଳାପର ରାଗିଣୀ ତୋଳିଦେଇଛନ୍ତି ପ୍ରୋକ୍ତ କବିତା ଦୁଇଟିରେ ।

'ସାଆଁନ୍ତ ମାଆ' କବିତାଟିରେ ଦୀନଦୁଃଖୀ ପାଇଁ ଆର୍ତ୍ତପ୍ରାଣ, ସେହି କରୁଣାବତୀ ଅଶ୍ରୁଳ ବୃଦ୍ଧା ସାଆନ୍ତ ମା ପାଇଁ କବିଙ୍କ ପ୍ରାଣ ଅଶ୍ରୁତର୍ପଣ କରୁଛି । ସଭିଙ୍କ ଜଞ୍ଜାଳ ବୁଝେ ସେ, ସବୁ ଦୀନଦୁଃଖୀର ଆର୍ତ୍ତି ଶୁଣେ । କିନ୍ତୁ ନିଜେ ସେ—

"ନିଜେ ସେ କାଂଗାଳ ମୂର୍ତ୍ତି ଦୈନ୍ୟ,
ପ୍ରସବି ଅନେକ, ନିଃସନ୍ତାନ
ସ୍ୱାମୀ ଗହ୍ୱରରେ ଜାଣି ନ ଜାଣିଛି
ବିଧବା କରିଛି ବିଧାତା ବାଣ ।"

ଏହି କରୁଣାମୟୀ ନାରୀର ପଦଧୂଳି ପାଇଁ କବି ମାନସିଂ ଚିରପିପାସିତ ।

'ଅର୍ଦ୍ଧଶତାବ୍ଦୀ' କବିତାଟି ମଧ୍ୟରେ କବି ନିଜ ଜୀବନର ଯେଉଁ ସମୀକ୍ଷା ଦେଇଛନ୍ତି, ଜୀବନ ପ୍ରତି ଯେଉଁ ଜିଜ୍ଞାସା ପ୍ରକାଶ କରିଛନ୍ତି, ଅବଶିଷ୍ଟ ଜୀବନ ପାଇଁ ଯେଉଁ ଲକ୍ଷ୍ୟ ବାଛିନେଇଛନ୍ତି, ତାହା ପ୍ରତିଟି ମାନବ ଜୀବନ ପାଇଁ ପ୍ରଯୁକ୍ତ । ତଥାପି ତାହା ଏକ ବରେଣ୍ୟ କାବ୍ୟପୁରୁଷର ବ୍ୟକ୍ତିଜୀବନର ଇସ୍ତାହାର ।

ଜୀବନ-ପଥରେ ଅନ୍ଧକାରାଚ୍ଛନ୍ନ ରାସ୍ତା ବଢିଯାଇଛି । ଜୀବନ ସଂଗ୍ରାମରେ ସର୍ବାଙ୍ଗ କ୍ଷତ, ବିକ୍ଷତ । ଦୁଃଖ ନୈରାଶ୍ୟର ତାଡନାରେ ହାହାକାରମୟ । ଲକ୍ଷ ଜୀବନ ମଧ୍ୟରେ ସେ ନିଃସଙ୍ଗ । ରାସ୍ତା ସରିନାହିଁ, ପ୍ରଶ୍ନର ଉତ୍ତର ବି ମିଳିନାହିଁ ।

"କିଏ ସେ ଉତ୍ତର ଦେବ ? କିଏ ସେ କହିବ ?
କାହିଁକି ମୁଁ ଆସିଥିଲି, କିବା ଦେଇଗଲି, ନେଇଗଲି କିବା"
ପରିବେ ଧରଣୀ-ମାତା ତୋ ମାଟିରେ ଦେଲୁ
ପଚିଶ ବରଷ ତଳେ ଏଇ ସ୍ଥାନ ସାମାନ୍ୟ ଜୀବରେ

× × ×

କିଛି ତାର ନାହିଁ ମୂଲ୍ୟ, ସେ କେବଳ ସୂତ୍ରଧର ପାଇଁ
ଏ ବିରାଟ ରଙ୍ଗମଂଚେ ? ଅଭିନୟ ମାତ୍ର ହୃଦୟର ?

ନିର୍ଜିତ ସେ ପ୍ରାଣ କିନ୍ତୁ ଅବଶିଷ୍ଟ ଜୀବନର ଶ୍ରେଷ୍ଠ ଅଭୀପ୍ସା ପ୍ରକାଶ କରିଛି—

"ମୋର ଅଶ୍ରୁ, ମୋ ଶୋଣିତ, ମୋର ଭସ୍ମ ନୋହୁ ଅଭିନୟ,
ହେଉ ଦୃଢ଼ ସତ୍ୟ—
କରି ଧରା-ମରୁ କଂଚରରେ ହେଲେ
ଉର୍ବରିତ, ଶ୍ୟାମଳିତ, ସୁଖଶାନ୍ତିମୟ !

'ନୂତନ ପ୍ରଣୟ' କବିତାରେ ପ୍ରଣୟର ଅର୍ଥ କବିଦୃଷ୍ଟିରେ ଭିନ୍ନଭାବେ ରୂପାୟିତ ।

"ଆଜି ଦେହ ଖୋଜେ ଦୁର୍ଲଭ ବି-ଦେହୀ
ଚିତ୍ତ ଖୋଜେ ଏକ ତେଜ ବିରାଟ ନିଖିଳେ
ଖୋଜେ ମୁଁ ଅରୂପେ ରୂପ-କ୍ଲାନ୍ତ ନେତ୍ର ଦେଇ
ସ୍ନାତ ହୋଇଉଠେ ଗଣ୍ଡ ଅନାସକ୍ତ ନୀରେ ।"

ମାନସିଂଙ୍କ ନିଃସଙ୍ଗ ସଂସାରୀ ଜୀବନ ସର୍ବଦା ଏକ ଶାଶ୍ୱତ ସଙ୍ଗୀ ଅନ୍ୱେଷଣ କରିଛି । ତା'ର ପୁଞ୍ଜି ନାହିଁ । ଧରା ପାଇଁ ତାର ଦେୟ ବହୁତ, କିନ୍ତୁ ଅର୍ଜନ ନାହିଁ । ସେ ନିଃସ୍ୱ । ଧରା ଦୁଃଖ ପାଇଁ ତା ନୟନରେ ଛଳଛଳ କରୁଛି ଏକମାତ୍ର ଶୁଭ୍ର ଅଶ୍ରୁକଣା । ବିଶ୍ୱ ବେଦନାରେ ହାହାକାର କରି ଆସିଛି ଦୀର୍ଘ ଜୀବନ ପଥରେ ସେହି ସହାନୁଭୂତିଶୀଳ କବିର କୋମଳ ଅନ୍ତର । ସେ ବେଦନାର ହିସାବ ନାହିଁ, ସେ ଦୁଃଖର ଅନ୍ତ ନାହିଁ । ମାନସିଂ ନିଜକୁ ପ୍ରକାଶ କରିଛନ୍ତି ଏକ ଅସାର୍ଥକ ସଂସାରୀ

ରୂପେ । ତାହାଙ୍କର ଅଗଣିତ ସ୍ୱପ୍ନର ସାମାନ୍ୟ ଅଂଶ ହିଁ ସଫଳ ହୋଇନ । ତାହାଙ୍କର ଅଜସ୍ର କଳ୍ପନା ରୂପାୟିତ ହୋଇପାରିନ । ସେ ଦରିଦ୍ର, ବିଶ୍ୱ ଦରବାରରେ ହେୟ, ଅକିଞ୍ଚନ । ତାହାଙ୍କର ସକଳ ଅଭିଳାଷ ବନ୍ଧ୍ୟ । "ବନ୍ଧ୍ୟ ଅଭିଳାଷଠାରୁ ଅକ୍ଷମର ପ୍ରାଣେ, ଜଡ଼ତ୍ୱ ଅଧିକ ସୁଖକର ଅନୁମାନେ"—ଏହା ହିଁ ତାଙ୍କର ମନ୍ତବ୍ୟ । ସେ ନିଜର ଦୁଃଖପିଷ୍ଟ ଜୀବନକୁ, ଅପମାନିତ ବ୍ୟକ୍ତିତ୍ୱକୁ ବିଶ୍ୱପ୍ରବାହରେ ମାନବର ଦୁଃଖ, ଦୈନ୍ୟ, ଅପମାନର ପ୍ରତିଫଳନ ରୂପେ ଗ୍ରହଣ କରୁଛନ୍ତି । ବିଶ୍ୱର ଅଗଣିତ ଦୁଃଖୀ ମଧ୍ୟରୁ ସେ ଜଣେ, ଲକ୍ଷ ନିଃସ୍ୱ ଜନତାର ସେ ପ୍ରତିନିଧି ।

ନିଃସଙ୍ଗ କାବ୍ୟପୁରୁଷର ଅନ୍ତରାଳରେ ମାନସିଂଙ୍କ ବ୍ୟକ୍ତିଜୀବନର ଏ ଯେଉଁ କରୁଣ ଇତିହାସ ସଂପୃକ୍ତ, ସେଥିରୁ ଏହା ସହଜଲଭ୍ୟ ଯେ, ବିଶ୍ୱବେଦନାକୁ ରୂପାୟିତ କରିବାପାଇଁ ସେ ବ୍ୟକ୍ତିତ୍ୱ ସତତ ସଂକଳ୍ପ । ଦୁଃଖଜର୍ଜରିତ ଜୀବନ କାହାଣୀ ରଚନା କରିବାରେ ହିଁ ତାର ପରମ ପୁରୁଷାର୍ଥ ନିହିତ ।

## (ଛ) ସ୍ରଷ୍ଟା ପ୍ରାଣର ଶ୍ରେଷ୍ଠ କାମନା—ନିର୍ଯ୍ୟାତିତର କଲ୍ୟାଣସାଧନ

ନିଜ ବ୍ୟକ୍ତିକ ଜୀବନର ଲକ୍ଷ୍ୟ ମାନସିଂ ପୂର୍ବ ପର୍ଯ୍ୟାୟରେ ପ୍ରଦାନ କରିଯାଇଛନ୍ତି । ବ୍ୟକ୍ତି ଜୀବନର ଅବଶିଷ୍ଟ ପର୍ଯ୍ୟାୟର ଲକ୍ଷ୍ୟ ସହିତ କାବ୍ୟପୁରୁଷର ଶ୍ରେଷ୍ଠ ଲକ୍ଷ୍ୟ ଚମତ୍କାର ଭାବେ ମିଳିଯାଉଛି ଏହି କବିଙ୍କର । ଆଦ୍ୟ ଯୌବନର ପ୍ରେମାଶ୍ରିତ ବିଳାସ ମଧ୍ୟରେ ସୁଦ୍ଧା "ଜଗତର କୋଟି ହୁଆ ଡାକ ଶୁଣେ·····ସନ୍ତୁନିବା ଆଣେ" ଏହା ପ୍ରକାଶ କରିଛନ୍ତି । ସେହି କାଳରେ ମଧ୍ୟ ସେ କବିପ୍ରାଣ ବିଦ୍ରୋହୀ ଆହ୍ୱାନ ତୋଳିଛି । ଯେଉଁ କୃଷକ ଏହି ବୁଭୁକ୍ଷୁ ନାତିଟାର ଉଦର ପୋଷଣ କରଏ, ସେ କିନ୍ତୁ ଉପବାସରେ ଜୀବନ କଟାଏ । ଦୁନିଆର ନାନା କଷଣକୁ ନିଜ ପିଠିରେ ବହି ସୁଦ୍ଧା ସେ ଦୁନିଆର ସୁଖ କ'ଣ କେବେ ଜାଣିନି । ସେ ଜାତିଟାର ସୁପ୍ତ, ଶିଥିଳ ପ୍ରାଣରେ କବି ଆହ୍ୱାନୀ ମନ୍ତ୍ର ତୋଳିଛନ୍ତି—

ମଥାପୋତି ରେ ରହିବୁ ଯେତେ
　　　　　ନଇ ଲଗିବେ ହୃଦସ୍ୱାମୀନେ
ଉପରେ ମଥା ଟେକ ତ ଭାଇ
　　　　　ଖସିବ ବୋଝ ହନେ ନା ହନେ ।

'ଲିଲିଯାଅ ଇତିହାସ' କବିତାରେ କବି କ୍ଷୁବ୍ଧିତ କଣ୍ଠରେ କହିଛନ୍ତି—ସେ ଇତିହାସରେ କିବା ପ୍ରୟୋଜନ—ଯାହା କେବଳ ଧନୀର, ରାଜାର, ଅମୀର-ବାଦଶାହାର ଭୋଗ-ପ୍ରାଚୁର୍ଯ୍ୟ, ଅଭିମାନ-ଐଶ୍ୱର୍ଯ୍ୟର କାହାଣୀ । ସେ ଇତିହାସରେ—

"ଦରିଦ୍ରର ନାହିଁ ଅଧିକାର, ଭୋଗିବାକୁ କରିବ କଳ୍ପନା
ପୁଞ୍ଜିପତି ଶ୍ୱାନ ଯାହା ପାଏ ସେ ଆଶା ହିଁ ତାର ପ୍ରବଞ୍ଚନା ।"

ଏତାଦୃଶ ସମାଜ କବିର କାମ୍ୟ ନୁହେଁ, ଅଭିଳଷିତ ନୁହେଁ । ସେ ଚାହେଁ ଏଭଳି ଏକ ସମାଜ—

'ଯେ ସମାଜେ ନାହିଁ ଅନାହାର
ଜନମାତ୍ର ଶଙ୍କାହୀନ ଯହିଁ

ନାହିଁ ଯହିଁ ଧନ-ବର୍ବରତା,
ମାନବତ୍ୱ ଅବାଧେ ଫୁଟଇ ।'

ସେ କବି ଆଶା କରିଛନ୍ତି ମଣିଷର ତ୍ରାସ ଦୂର କରି ଧରଣୀ-ବାସକୁ ମଧୁର କରି ତୋଳିବ । "ବସନ୍ତୋତ୍ସବ" କବିତାଟିରେ ବସନ୍ତ ପ୍ରତି କବିପ୍ରାଣର ତେଣୁ ବିନୀତ ଅନୁରୋଧ :

"ଦିନକ ଲଜରେ ଆମୋଦେ ହସାଅ ଚରି
ରୁକ୍ଷରୁଗ୍ଣ ଜୀବନ ସେ ମହାବନ୍ତ ।"

କବିଦୃଷ୍ଟିରେ ସୃଷ୍ଟି ଦୁଃଖମୟ । ପରମାତ୍ମାଙ୍କ ନିକଟରେ ଗଭୀର ବିଶ୍ୱାସୀ କବି ବେଳେ ବେଳେ ସୃଷ୍ଟିର ଅସୀମ ନିର୍ଯାତିତଙ୍କୁ ପ୍ରତ୍ୟକ୍ଷ କରି ନୈରାଶ୍ୟରେ ଭଗ୍ନାଂଶ ହୋଇଛନ୍ତି । ପ୍ରାଣର ସଖୀଙ୍କୁ ମଧ୍ୟ କବିପ୍ରାଣ ତେଣୁ ଅନୁରୋଧ କରିଛନ୍ତି, ଏ ଦୁଃଖମୟ ସଂସାରରେ—

"ପଙ୍କରୁ ପଙ୍କଜ ଏଥି ଫୁଟାଇବା ଆସ,
ଦୁଃଖମୟ ଏ ଜୀବନ ହେଉ ହର୍ଷରସ ।"

ପ୍ରେମହୀନ ଏ ସଂସାରରେ ପ୍ରଣୟ ବିତରଣ କରି, ଆଘାତକାରୀଙ୍କୁ ଆଶୀର୍ବାଦ ଦାନ କରି, ଏ ଦୁଃଖମୟ ସୃଷ୍ଟିକୁ ଆପଣାର ଆନନ୍ଦର କରିବା ନିମିତ୍ତ ସେ ପ୍ରସ୍ତାବ ଦେଇଛନ୍ତି—ଅନ୍ତରଙ୍ଗ ସଖୀ ନିକଟରେ । ପରସ୍ପର ମଧ୍ୟରେ ସ୍ନେହ, ପ୍ରୀତି, ସୌହାର୍ଦ୍ଦ୍ୟ ପ୍ରତିଷ୍ଠିତ ହୋଇପାରିଲେ ଏ ମଧୁମୟ ସଂସାରରେ ସ୍ୱର୍ଗ ଅବତରଣ କରିବ । ଅନନ୍ତ ବ୍ୟର୍ଥତା ମଧ୍ୟରେ ଅସୀମର ତାଣ୍ଡବ ଲୀଳା ମଧ୍ୟରେ ଏ ଧରଣୀ ତଥାପି ମଧୁର । ସେହି ମଧୁରତା କେବଳ "ମାନବେ ମାନବେ ପ୍ରୀତି" ପାଇଁ । 'ଶେଷକଥା'ରେ କବି ତେଣୁ ପରମ ପିତାଙ୍କୁ ଶୁଣାଇ ଦେଇଛନ୍ତି—

"ଆଜ ମୁଁ ବିଶ୍ୱରେ ମନେ ପୋଛିଦେଇ ସକଳ ଅତୀତ
ରଚିବି ମୋ ଜୀବନରୁ ନବ ଏକ ମହାନ ସଙ୍ଗୀତ,
ପାପ ଯାହା, କୁତ୍ସିତ ଯା, ଲାଞ୍ଛନା ଯା, ଫିଙ୍ଗି ତା' ବନ୍ଧନ
ସତ୍ୟେ ଶିବେ ଶବଳିତ କରିଦିଏ ବିକଳ ଜୀବନ
ଖିଆଲି ବିଧାତା ଲାଗି ଅନୁଯୋଗ ଅବା ଅଭିଯୋଗ
ନ ରଚି, କପଟେ, ଲୁବ୍ଧେ, ନର ଲାଗି ରଚିଯିବି ଯାଗ ।"

ସୁସ୍ଥ ସମାଜବାଦର ଆଦର୍ଶରେ ସମାଜର ଏକ ପରିକଳ୍ପନା ମଧ୍ୟ ମାନସିଂ କରିଯାଇଛନ୍ତି—

"ପ୍ରାଚୀନରେ ଚୂର୍ଣ୍ଣ କରି ଗଢ଼ ତବ ନୂତନ ସଂସାର
ନିଜର ଶକ୍ତିରେ ଚାହ୍ନ, ଶେଷ ହେଉ ଆଶିଷ ଭିକ୍ଷାର;
ଆଭିଜାତ୍ୟ ଚୂର୍ଣ୍ଣ ହେଉ, ଧନ ହେଉ ସମାନ ବଣ୍ଟିତ
ଜୀବନର ସର୍ବ ସୁଖୁଁ ଦୀନ ଦୁଃଖୀ ନୁହନ୍ତୁ ବଞ୍ଚିତ ।"

ମଣିଷ ଜୀବନ ପ୍ରତି ଅନୁଭୂତିରସାଣିତ, ତୀବ୍ର ନୈରାଶ୍ୟଚେତନା କବିଙ୍କର ପରିଣତ ବୟସରେ ଜାଗ୍ରତ ହୋଇଛି । ଶକ୍ତିଶାଳୀ ମଣିଷ ମଧ୍ୟ ଭାଗ୍ୟର କ୍ରୀଡ଼ନକ । ଐହିକ ଜୀବନର ତିକ୍ତ ଅଭିଜ୍ଞତା ପରେ କବିର ଆକାଙ୍‌କ୍ଷା ପାରଲୌକିକ ଜୀବନର ଅନୁଭୂତି ପରୀକ୍ଷା ନିମିତ୍ତ । ମଣିଷ ସମାଜର ଅପାର ଦୁଃଖ ଦେଖି କବିମନ ସନ୍ଦେହୀ ହୋଇଉଠିଛି—ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରତି । ଈଶ୍ୱର-ବିଶ୍ୱାସ, ମଣିଷର ଦୁଃଖ ଦୂର କରିବାରେ ଈଶ୍ୱରଙ୍କର ଅଲୌକିକ ଶକ୍ତି—ଏସବୁ କେବଳ କବିକଳ୍ପନା । କବି ନିଜେ ଗ୍ରାସ ଛାଦନର ଅଭାବ-ଅନଟନର ତୀବ୍ର ଜ୍ୱାଳା ଅନୁଭବ କରି ନ ଥିଲେ ମଧ୍ୟ ତାଙ୍କ ଚାରିପାଖରେ ଥିବା ଦୁଃଖୀ ସମାଜ ପାଇଁ ତାଙ୍କ ଅନ୍ତରର ଅସମ୍ଭବ ମମତା—

"ମତେ ସିନା ସୁଖୀ କଲ, ଚତୁର୍ଦ୍ଦିଗେ ମୋର
ସ୍ରଷ୍ଟା ହେ, ଦୁଃଖର ଏ କି ବିଭୀଷିକା ଘୋର ।"

× × ×

ଏ ଦୁଃଖ ସମୁଦ୍ରେ ମୋର କ୍ଷୁଦ୍ର ସୁଖ ଲାଗେ
ପରିହାସ ସମ ମୋତେ ×××

× × ×

ଦିଅ ମୋତେ; ଶକ୍ତି ଦିଅ ଦୀନଦୁଃଖୀ ଜନେ
ସୁଖୀ ମୁଁ କରିଏଁ ହସି, ×××

ମାନସିଂଙ୍କର ସମଗ୍ର "ଜୀବନ ଚିତା" କବିତା ସଂକଳନଟିରେ ମଣିଷର ସଂଘାତିକ ଦୁଃଖ, ଜଞ୍ଜାଳ, ଦୈନ୍ୟ, ଦୁର୍ବିପାକର କରୁଣ ଚିତ୍ର ଦେଇ ସମ୍ବେଦନଶୀଳ କବିଅନ୍ତର ସେ ନିର୍ଯାତନା ସବୁକୁ ଦୂର କରିବାର ସଂକଳ୍ପ କରିଛି । ଏଥିପାଇଁ ବହ୍ନିକୃପା ହିଁ ତାର ଏକମାତ୍ର ସମ୍ବଳ । ମାନସିଂ କାବ୍ୟପୁରୁଷ ନିଜ ଜୀବନକୁ ପରର ଦୁଃଖ ଦୂର କରିବାରେ ଜଳାଞ୍ଜଳି ଦେବାପାଇଁ ଆଗ୍ରହୀ; ପରୋପକାରରେ ହିଁ ସେ ଜୀବନର ପରମ ସାର୍ଥକତା ।

"ମୋ ପରି ପରାସ୍ତ ଯେତେ ଜୀବନ ସଂଗ୍ରାମେ
ବାଜିପାରେ ମୋ ସଙ୍ଗୀତ କାଲେ ତାଙ୍କ ପ୍ରାଣେ
ହେଉ ତା ଏତିକି ସିଦ୍ଧି ଏ ବ୍ୟର୍ଥ ଜୀବନେ
ଭଗ୍ନ ବୃକ୍ଷ ଲଗୁ ହେଲେ କାହାର ଇନ୍ଧନେ ।"

ଜଞ୍ଜାଳମୟ ଦୁଃଖଘେରା ପ୍ରୌଢ଼ ଜୀବନରେ ରୋମାଣ୍ଟିକ୍ କବି ବେଳେ ବେଳେ ମଧ୍ୟ ଚାହିଁଛି ପ୍ରେମମୟ ତରୁଣ ଜୀବନକୁ ଫେରିଯିବା ପାଇଁ । ସେ ପ୍ରାଣ ପ୍ରେମ ଚାହେଁ, ସୁଖ ଚାହେଁ, ସମୃଦ୍ଧି ହିଁ ତାର କାମନା । ବିଶ୍ରୀ, ବିପର୍ଯ୍ୟୟ, ବିପାକ ସବୁ ସେ କୋମଳ ଅନ୍ତରକୁ ତୀବ୍ର ତାଡନାରେ ବ୍ୟଥିତ କରେ ।

'ନିଖିଳର ଦୁଃଖ' କବିତାଟିରେ ବ୍ୟକ୍ତିଜୀବନରେ ବିଶ୍ୱଜୀବନର ଏହି ପ୍ରକାର ରୂପାୟନ ଦେଖିବାକୁ ମିଳିଥାଏ । ବିଶ୍ୱଇତିହାସର ମଣିଷ ଜାତି ଯେଉଁସବୁ ଦୁଃଖ ଦୁର୍ବିପାକ ଭୋଗ କରିଛି ବା କରୁଛି ତା ପାଇଁ ମାନସିଂଙ୍କ ଅନ୍ତର ସଜଳ ସହାନୁଭୂତି ପ୍ରକାଶ କରୁଛି :

"ମୁଁ ପୁଣି ହୋଇଛି ଅବା ଚିତା-ଦଗ୍ଧ ସତୀ
କନ୍ଧର ହଳଦୀ କ୍ଷେତେ ନିଷ୍ଠୁର ନରବଳି ।
ଗୃହୀକର ପୁରସ୍କାରେ କପାକ୍ଷେତ ଚଷି
ନିଗ୍ରୋ ମୁଁ ଅପୋଗ୍ର ଲୁହେ ଯାଇଅଛି ଜଳି ।"

ବିଶ୍ୱର ଜନତା ପାଇଁ ବେଦନାର ଏ ଗଭୀର ମମତା ମାନସିଂ କାବ୍ୟ ପୁରୁଷକୁ ପ୍ରକୃତରେ ଅନିର୍ବାଣ ଅମରତ୍ୱ ଦେଇଯାଇଛି ସମଗ୍ର ଓଡ଼ିଆ ସାହିତ୍ୟରେ । ଶୋଭାମୟ ଧରଣୀରେ ପ୍ରକୃତିର ପ୍ରତିଟି ଅଙ୍ଗ କବିମତରେ ଆନନ୍ଦନିର୍ଝର । କିନ୍ତୁ ବୁଦ୍ଧିମନ୍ତ ଶ୍ରେଷ୍ଠ ଜୀବ ନରର ହିଁ ଦୁଃଖର ସୀମା ନାହିଁ ।

"ବିଧାତାର ଏ ବିରାଟ ଆନନ୍ଦ ବଜାରେ
ଜୀବନେ ଉତ୍ସାହ ନାହିଁ କେବଳ ତା'ଠାରେ ।"

ମାନସିଂ କହନ୍ତି ଏହି ଉଗ୍ର, ନିର୍ଗୁଣ ଧନତାର ପ୍ରିୟ କବି । ଅତି ଆପଣାର ସେ । ଆମ ପ୍ରାଣର ଅସୀମ ଦୁଃଖକୁ ସେ ଚାହାନ୍ତି ତାଙ୍କ ଆପଣାଇଛନ୍ତି ଆମକୁ ସୁଖୀ କରିବା ପାଇଁ । ତାଙ୍କ ପ୍ରାଣରେ ଅସୀମ ମମତା, ଅନନ୍ତ ତ୍ୟାଗ ଏଥିପାଇଁ ବରଣ କରିନେବାକୁ ପ୍ରସ୍ତୁତ । ମାନସିଂ ତେଣୁ ନିଷ୍ଠିତ ଭାବରେ ଗଣିର କବି । ନିଖିଳର ଦୁଃଖରେ ଦୁଃଖୀ ସେହି ଅମର କାବ୍ୟପୁରୁଷ ବିଶ୍ୱବରେଣ୍ୟ ।

ଏହି ବିଶ୍ୱରେଣ୍ୟ ବେଦନାବିଦ୍ଧ କାବ୍ୟପୁରୁଷର ସୀମାହୀନ ଦୁଃଖ କେବଳ ଯେ ମଣିଷ ପାଇଁ ତାହା ନୁହେଁ । ଜୀବଜଗତର ପ୍ରତି ଜୀବ—ଯେ କି ମର୍ମଦାହକ ଅନୁଭବ କରେ, ତାର ଗୋପନବାର୍ତ୍ତା କବି ଅନ୍ତରରେ ଅଜଣା କମ୍ପନ ସୃଷ୍ଟି କରିଥାଏ । ଅବଶ୍ୟ ମାନବେତର ସକଳ ଜୀବ ଅପେକ୍ଷା ମାନବବାଦୀ କବି ମଣିଷ ପାଇଁ ତାଙ୍କର ଅସୀମ ମମତା ଢାଳି ଦେଇଛନ୍ତି ନିଷ୍ଟୟ, କିନ୍ତୁ 'ହଂସୀ ହତ୍ୟା'ରେ ହଂସୀର ବେଦନାବୋଧରେ କିମ୍ବା 'କପୋତ କପୋତୀ'ର ଚିର କରୁଣ ବିଳାପରେ ଅସହ୍ୟ ଯନ୍ତ୍ରଣାବୋଧରେ ସେ କବିଅନ୍ତର ସକଳ ପ୍ରାଣୀର ଦୁଃଖ ପାଇଁ କି ଭଳି ଶୋକାକୁଳ ତାହା ବେଶ୍ ସହଜରେ ହିଁ ଉପଲବ୍ଧ ହୁଏ ।

ସମଗ୍ର 'ମାନସିଂ ଗ୍ରନ୍ଥାବଳୀ'ର ପ୍ରଥମ ଖଣ୍ଡରେ ବୈଦେଶିକ ବସ୍ତୁଜାତୀ ଦୁଇଟି ମାତ୍ର ଦେଖାଦେଇଛୁ । ତାହା ହେଉଛୁ 'ସାଫୋର ବ୍ୟଥା' ଓ 'ସେଲୀ-ମୃତ୍ୟୁ ।' ଏହା କହିବାର ତାତ୍ପର୍ଯ୍ୟ ଏହି ଯେ କବିର ବେଦନାକ୍ତ ଅନ୍ତର ପୃଥିବୀର ଯେଉଁଠି ଘଟୁନା କାହିଁକି ଏଭଳି କରୁଣ ନିର୍ଯ୍ୟାସ ପ୍ରତି ଅସମ୍ଭବ ମମତା ପୋଷଣ କରିଛୁ ଯେ, ନିଜ ଭାଷାରେ ତାହାର ଭାବାବେଗକୁ ପରିବେଷଣ କରିବା ପାଇଁ ସେ ଉତ୍ସାହୀ ହୋଇପଡ଼ିଛୁ । 'ସାଫୋର ବ୍ୟଥା'ରେ ପ୍ରସିଦ୍ଧ ଗ୍ରୀକ୍ ନାୟିକବି 'ସାଫୋ' ପ୍ରେମବହ୍ନିର ଶକ୍ତ ଅନ୍ତରର ଅସହ୍ୟ ଜ୍ୱଳନରେ ଅସ୍ଥିର ହୋଇ ଯେଉଁ ଆତ୍ମହତ୍ୟାର ଏକମାତ୍ର ପଥ ବାଛିନେଇଥିଲେ, ତାହାର ବୃତ୍ତାନ୍ତ ବିବୃତ । ଇଂରେଜ ବିପ୍ଳବୀ କବି ଶେଲୀଙ୍କର କରୁଣ ସଲିଳ-ସମାଧିର କଥା ସମସ୍ତେ ଜାଣନ୍ତି । ନିଜ ଭାଷାରେ ନିଜ ପ୍ରିୟ ପାଠକପାଠିକା ଗହଣରେ ଏ ପ୍ରକାର କରୁଣ ଇତିହାସକୁ ପରିବେଷଣ କରି ନ ଥିଲେ ସତେ ଯେପରି କବିର କର୍ତ୍ତବ୍ୟରେ ତ୍ରୁଟି ରହିଯାଇଥାନ୍ତା ।

ଭିନ୍ନ ଭିନ୍ନ କବିତା ଗୁଚ୍ଛରୁ, କେତୋଟି ମାତ୍ର ନିର୍ବାଚିତ ଚିତ୍ରକଳ୍ପର ବିଶ୍ଳେଷଣ ମାଧ୍ୟମରେ ମଧ୍ୟ ମାନସିଂ କବି ଅନ୍ତରର ଗଭୀର ବେଦନାବୋଧକୁ ସୁପ୍ରତିଷ୍ଠିତ କରିହେବ ।

"ମାତୃହୀନ ପକ୍ଷୀଶିଶୁ ପରି ମୁଁ ହେ ନାଥ"—141 ପୃଷ୍ଠା

"ଫୁଟନ୍ତା ଗୋଲାପ ଗୋଛୁ ଖାଦ୍ୟ କଲି ନିର୍ବୋଧ ପ୍ରକୃତି"—160 ପୃଷ୍ଠା

"ଶୋକାକୁଳ ଜନନୀର ଆକୁଳ ରୋଦନ ଶୁଣାଉଛି" —232 ପୃଷ୍ଠା

"ବୃଦ୍ଧ ଶୀର୍ଣ୍ଣ ଧଣ,
ଘଟଣାର ପଶୁ ପଣ
ଏଇଠି ଯହୁଁ କଟାଇଲାଣି ବୁଦ୍ଧର ଭାଗ୍ୟ ବଣ'— 615 ପୃଷ୍ଠା
ପ୍ରଥମସ୍ଥ ଏ ଜୀବନ ନର୍ମ୍ମାଦ୍ଧତ ଶୁଷ୍କପୃଷ୍ଠ ପତ୍ର'—388 ପୃଷ୍ଠା

ଏହିଭଳି ଅନେକ ଚିତ୍ରକଳ୍ପ ପ୍ରୟୋଗ ମଧ୍ୟରେ ଜବୃର ସଚେତନ କାବ୍ୟପୁରୁଷ ଯେଉଁ ମୌଳିକ କଳାର ମାଧ୍ୟମରେ ଅନ୍ତରର ଦୁଃଖ-କୋହକୁ ପ୍ରକାଶ କରିଛୁ ତାହାର ପ୍ରଚୁର ଦୃଷ୍ଟାନ୍ତ ଲାଭ କରିହୁଏ । ଉଲ୍ଲିଖିତ ପ୍ରତିଟି ଚିତ୍ରକଳ୍ପ ପାଠକ ହୃଦୟରେ ଦୁଃଖରେଖା ଟାଣିବାରେ ବେଶ ସମର୍ଥ । ବସ୍ତୁ ବା ଦୃଶ୍ୟର ପ୍ରକୃତ ଚିତ୍ର ପାଠକପ୍ରାଣରେ କବି ଆଙ୍କିବା ପାଇଁ ଏ ପ୍ରକାର ଚିତ୍ରକଳ୍ପର ସାହାଯ୍ୟ ନେଇଥାଏ । କବି ଅନ୍ତରର ତୀବ୍ର ବେଦନାବୋଧକୁ ପ୍ରତିଟି ଚିତ୍ରକଳ୍ପ ଆମର ଆଗରେ ଅଧିକ ସୁସ୍ପଷ୍ଟ କରିଦେଉଛି ।

ମାନବର ତଥା ମାନବେତର ଅଗଣିତ ପ୍ରାଣୀର ଦୁଃଖ ପ୍ରତି କବି କେବଳ ସମ୍ବେଦନାର ବାଣୀ ଶୁଣାଇଯାଇନାହାଁନ୍ତି । କିମ୍ବା ସେହି ସେହି ଦୁଃଖଚିତ୍ରକୁ କେବଳ କବିତାଶିଳ୍ପରେ ଆଙ୍କିଦେଇଯାଇନାହାଁନ୍ତି । ସେହି ଦୁଃଖ ଦୂରୀକରଣ ପାଇଁ, ଦୁଃଖୀର ଅମୀମାଂସିତ କୋହର ପ୍ରଶମନ ପାଇଁ ସୁଚିନ୍ତିତ ପନ୍ଥା ମଧ୍ୟଦେଇ ଯାଇଛୁ କବି ମାନସିଂଙ୍କ ସଚେତନ କାବ୍ୟପୁରୁଷ; ଅମୀମାଂସିତ ଚିରନ୍ତନ ସମସ୍ୟାର ସମାଧାନ ଟାଣିଛୁ ମାନବବାଦୀ କବି ।

'ଅଛି କିନ୍ତୁ ପ୍ରତିକାର ମନୁଷ୍ୟ ଅନ୍ତରେ—
ଜୀବନର ଜୟକାର, ତାର ଆବିଷ୍କାରେ ।'

ଅନ୍ୟର ଉପକାର ସାଧନ କରି ମଣିଷ ଯଦି ନିଜକୁ ଧନ୍ୟ ମଣିପାରେ, ସମଗ୍ର ଜୀବନକାଳ ମଧ୍ୟରେ ଅନ୍ତତଃ ଗୋଟିଏ ବ୍ୟକ୍ତିର ଯଦି କିଛି ଉପକାର ସେ କରିପାରିଥାଏ ଏବଂ ନିଜର ଅଗ୍ନିଦଗ୍ଧ ଜୀବନରେ ଯଦି ଈଶ୍ୱରଙ୍କର କାନ୍ତ ମୂର୍ତ୍ତିକୁ ପ୍ରତ୍ୟକ୍ଷ କରିପାରେ, ତେବେ ଜୀବନରେ ଦୁଃଖ କାହିଁ ? ସ୍ୱାର୍ଥରେ ଚିତ୍ତକୁ ସଙ୍କୁଚିତ କଲେ ଜୀବିତାବସ୍ଥାରେ ମରଣର ତୀବ୍ର ଯନ୍ତ୍ରଣା ମିଳେ । ଜୀବନ ଜୀବନ୍ମରଣ ହୋଇଯାଏ । ନିଜକୁ ପ୍ରସାରିତ କଲେ, ଜଗତକୁ ଗଣରେ ବିକ୍ଷିପ୍ତ କଲେ ଏକପ୍ରାଣରେ ଭୂମାକୁ ଅନୁଭବ କଲେ, ସକଳର ସୁଖରେ ନିଜର ସୁଖ ଦେଖିପାରିଲେ ଜୀବନରେ ଶାଶ୍ୱତ ଶାନ୍ତି ମିଳିଥାଏ । ଜୀବନ ଏକ ନଷ୍ଟ ଗହ୍ୱର ଶିକାର ନ ହୋଇ ଦେବତାଙ୍କ ପରମ ଆଶୀର୍ବାଦ ହୋଇଥାଏ ।

## ଉପସଂହାର

ମାନସିଂ ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡକୁ ଅବଲମ୍ବନ କରି କବି ଅନ୍ତରର ଯେଉଁ ବେଦନାବୋଧକୁ ବିଶ୍ଳେଷଣ କରାଯାଇଛି, ତାହା କବି ତାଙ୍କର ପ୍ରତିଟି କବିତା-ସଂକଳନର ଭୂମିକାରେ ପ୍ରକାରାନ୍ତରେ ପ୍ରକାଶ କରିଛନ୍ତି । ସେଇ ଅଭିମତ କେଇଟିର ପ୍ରତିଷ୍ଠା ହିଁ ପ୍ରବନ୍ଧରେ କରାଯାଇଛି; କୁହାଯାଇପାରେ ।

"ଦଳିତ ଅବହେଳିତ ଜୀବନରେ ସୁଖ ଓ ଦୁଃଖକୁ ଏପରି ଭାବରେ ଭାଷାରେ ପ୍ରକାଶ କରିବା ଏକ ପ୍ରଧାନ ବିଳାସ"—'ଧୂପ' ଭୂମିକା ।

"ବହୁ ଦୁର୍ଦ୍ଦିନ-ସଙ୍କଟ-ସଙ୍କୁଳ ଏକ ଜୀବନରେ ଏହି କବିତାଗୁଡ଼ିକ ଆଶାଦାୟୀ ରବିରଶ୍ମି ବା ଦାହ-ଶୀତଳକାରିଣୀ ଜ୍ୟୋତ୍ସ୍ନାର ଏକ ଏକ କ୍ଷଣସ୍ଥାୟୀ ଝଲକ ପରି ବୁଝିବାକୁ ହେବ । ମନୁଷ୍ୟ ଯାହା ପାଇବାର ସ୍ୱପ୍ନ ଦେଖେ, ତାହାର ହିଁ ବର୍ଣ୍ଣନା ହୁଏତ କବିତା"—'ହେମଶସ୍ୟ'ର ଭୂମିକା ।

"ସାଧାରଣ ସହଯାତ୍ରୀମାନଙ୍କ ପରି ତାର ଶରୀର ଜୀବନସଂଗ୍ରାମରେ ଅକ୍ଷତରେ ବଞ୍ଚିଲା, ତାର ଗଣ୍ଡ ଅଶ୍ରୁ ସ୍ନାତ, ତାର ଅନ୍ତର ଅସନ୍ତୋଷ ଓ ଅଭିମାନରେ ଭରି"—

'ଅକ୍ଷତ' ଭୂମିକା ।

"ପ୍ରତ୍ୟେକଟି ସନେଟ ସ୍ୱୟଂ ସମ୍ପୂର୍ଣ୍ଣ ହେଲେହେଁ ସବୁଗୁଡ଼ିକୁ ସମ୍ମିଳିତ କରି ଏକ ଶୋକବିକ୍ଷୁବ୍ଧ ଅଶ୍ରୁଦଗ୍ଧ ପ୍ରାଣର କାତର ବାଣୀ ଓ ତତ୍ତ୍ୱଜିଜ୍ଞାସା ଓତପ୍ରୋତ ଭାବରେ କାର୍ଯ୍ୟ କରୁଥିବାର ସହୃଦୟ ପାଠକ ଅନୁଭବ କରିପାରିବେ ବୋଲି ମୋର ବିଶ୍ୱାସ । ହୁଏତ କେହି କେହି କ୍ଷତପଦ, ନିଗଣ ପଥିକ ଏଥିରୁ ସାମାନ୍ୟ ଆଶା ଓ ଆଶ୍ୱାସନା ବି ପାଇପାରନ୍ତି"—'କୃଷ୍ଣ' କାବ୍ୟ ସୂଚନା ।

ଏସବୁ ଭୂମିକା ମଧ୍ୟରେ କବିଙ୍କର ସ୍ୱଗତୋକ୍ତିର ମର୍ମ ଅନୁଭବ କରି କବିତାର ଅନ୍ତଃସ୍ୱରରେ କାରୁଣ୍ୟର ଆବାହନୀ ଶୁଣି, ପୁଣି ଆଶା ଆଶ୍ୱାସନାରେ ତୃପ୍ତି ଅନୁଭବ କରି ମାନବ ପ୍ରତି କବିପ୍ରାଣର ଯେଉଁ ଅଖଣ୍ଡ ମମତା ଏବଂ ବେଦନା-ବୋଧରେ ସେ ଅନ୍ତରର ପ୍ରଶସ୍ତିରୂପ ପ୍ରତ୍ୟେକ ପାଠକ ଅନୁଭବ କରି ବୁଝିପାରୁ-ଥିବେ ନିଶ୍ଚୟ । ଏଥିପାଇଁ ସେହି ପରଦୁଃଖକାତର କବିକୁ ( ଏ ଜାତିର ବନ୍ଧୁ ବୁଦ୍ଧିଜୀବୀ ଯାହା ଦେଇପାରନ୍ତି ) ଏ ଜାତିର ଅଗଣିତ ଜୀବନ-ଯୁଦ୍ଧରେ କ୍ଷତାକ୍ତ ପାଠକ କଣ ବା ପୁରସ୍କାର ଦେଇପାରିବ ? କବି ଏହି ମହାର୍ଘ ଦାନର ପ୍ରତିଦାନ ବା କଣ ଆଶା କରିଛନ୍ତି ?

'ବସନ୍ତର ପୁଷ୍ପେ ସ୍ତବେ, ଶାରଦ ଜ୍ୟୋସ୍ନାରେ
ସ୍ମର କେବେ ମୋ ଦେଶର ଯୁବକ ଯୁବତୀ
ଆସି ମୋ ସମାଧି ପରେ
ପୁଷ୍ପ ଢାଳି ପ୍ରୀତିଭରେ
କବରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି,
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର
ସେହି ମୋର ମାନଦଣ୍ଡ ଜୀବନଯାତ୍ରାର'

'ସମାଧି'

ସମଗ୍ର ଜୀବନଦଶାରେ ସମସ୍ତ ମନୀଷୀ ପାଇଁ ଯେ ଅକୁଣ୍ଠ ସ୍ନେହ, ଶ୍ରଦ୍ଧା, ସୌହାର୍ଦ୍ଦ୍ୟ ଓ ସମ୍ବେଦନା ଢାଳିଯାଇଛନ୍ତି ଅଥଚ କୌଣସି ପ୍ରତିଦାନ ଲୋଡ଼ିନାହାନ୍ତି, କାତରକଣ୍ଠରେ ଭିକ୍ଷା କରୁଛୁ ସେହି କୋମଳାନ୍ତର କବିଙ୍କର ଅସୀମ ଦୟାରୁ କାଣିଚାଏ କେବଳ ।



# ପ୍ରେମ କବିତା ପରଂପରାରେ

# କବି ମାନସିଂହ

ଅଧ୍ୟାପକ—ବନମାଳୀ ମିଶ୍ର

ଗଙ୍ଗାଧର ମେହେର ମହାବିଦ୍ୟାଳୟ, ସମ୍ବଲପୁର

ଯାହାର ପୂର୍ଣ୍ଣାଙ୍ଗ ଅବବୋଧ ସମ୍ଭବ ନୁହେଁ ତା'ର ଏକ ସନ୍ତୋଷଜନକ ସଂଜ୍ଞା ମଧ୍ୟ ନିର୍ଣ୍ଣୟ କରାଯାଇପାରେନା । ଆସକ୍ତିରୁ ପ୍ରେମର ଉନ୍ମେଷ ହେଲେ ମଧ୍ୟ ଏହାର ଉତ୍ତରଣ ପର୍ଯ୍ୟାୟରେ ମମତାର ଭୂମିକା ମୁଖ୍ୟ । ସ୍ଥୂଳରୁ ସୂକ୍ଷ୍ମ ଆଡ଼କୁ, ଦେହରୁ ବିଦେହ ଆଡ଼କୁ ଓ ରୂପରୁ ଅରୂପ ଆଡ଼କୁ ଏହାର ସ୍ୱାଭାବିକ ଗତି । ପ୍ରେମର ଦୁଇଟି ପକ୍ଷ-ତ୍ୟାଗ ଓ ଆତ୍ମସମର୍ପଣ । ଏଇ ଦୁଇ ପକ୍ଷ ସାହାଯ୍ୟରେ ମମତାର ମେଘ ଡେଇଁ ପ୍ରେମ ଏକ ରହସ୍ୟମୟୀ ଅନନ୍ତ ଅସୀମ ସତ୍ତା ମଧ୍ୟରେ ନିଜକୁ ହଜାଇଦିଏ । ପ୍ରେମର ଜନ୍ମ ନାହିଁ, ମୃତ୍ୟୁ ନାହିଁ—ନାହିଁ ବୟସ, ବର୍ଣ୍ଣ, ରୂପ ଓ ପଦମର୍ଯ୍ୟାଦାର ଭେଦ ବିଚାର । ସବୁ ଯୁଗରେ ଏହାର ଦୃଷ୍ଟାନ୍ତ ଥିଲା; ଆଜି ମଧ୍ୟ ବିରଳ ନୁହେଁ । ପ୍ରେମିକ ସମ୍ରାଟ୍ ଏଡ଼ୱାର୍ଡ଼ ପ୍ରଣୟିନୀ ଓ୍ୱାଲିସଙ୍କୁ ବିବାହ କରିବା ପାଇଁ ବିଶାଳ ଇଂରେଜ ସାମ୍ରାଜ୍ୟର ଏକଛତ୍ର ସମ୍ରାଟ ପଦକୁ ତୁଚ୍ଛ କରିଦେଇଛନ୍ତି । କବି ରବର୍ଟ ବ୍ରାଉନିଂ ବିବାହ କରିଛନ୍ତି ବର୍ଷୀୟସୀ ପଙ୍ଗୁ ଏଲିଜାବେଥଙ୍କୁ । ବ୍ରାହ୍ମଣ ପଣ୍ଡିତ ଚଣ୍ଡୀଦାସ ରଜକିନୀ ରାମୀ ପାଇଁ ସମାଜ ଓ ଧର୍ମର ରକ୍ତଚକ୍ଷୁ ପ୍ରତି ଭ୍ରୂକ୍ଷେପ କରିନାହାନ୍ତି । ଏଇ ଐତିହାସିକ ପ୍ରେମିକମାନଙ୍କ ବ୍ୟତୀତ ପୁରାଣ ଓ ଲୋକକଥାରେ ଏକନିଷ୍ଠ ପ୍ରେମର ଅଜସ୍ର କୀର୍ତ୍ତି କାହାଣୀ ରହିଛି । ଏ ସବୁର ଊର୍ଦ୍ଧ୍ୱରେ ପୁଣି କେଦାରଗୌରୀ, ଲାଇଲି-ମଜନୁ, ଓ ରୋମିଓ-ଜୁଲିଏଟ୍‌ଙ୍କର ପ୍ରଣୟ କାହାଣୀ ଲୋକସ୍ମୃତିରେ ରଖିଯାଇଛି ଏକ ଅଲିଭା ଅଙ୍କନ ।

ସାଧାରଣ, ସବୁବେଳେ ଅସାଧାରଣକୁ ଅନୁସରଣ କରିବା ସମ୍ଭବ ନ ହେଲେ ମଧ୍ୟ ଅସାଧାରଣହିଁ ତାର ଆଦର୍ଶ । ପଶୁତ୍ୱର ଅର୍ଗଳ ଭାଙ୍ଗି ଏକ ଉଚ୍ଚତର ଓ ମହତ୍ତର ରାଜ୍ୟରେ ଅବସ୍ଥାନ କରିବାପାଇଁ ସାଧାରଣର ଆକାଂକ୍ଷା ହୁଏତ ସାମୟିକ । କିନ୍ତୁ ସେହି ସାମୟିକ ମୁହୂର୍ତ୍ତିମାନଙ୍କୁ ରୂପ, ରସ ଓ ଗନ୍ଧରେ ଅପା-

ଯୋଗ୍ୟ କରିପାରେ କବିତା, ଚିତ୍ରକରର ରେଖା ଓ ରଙ୍ଗ, ପୁଣି ସଙ୍ଗୀତଜ୍ଞଙ୍କର ସ୍ୱର ମୂର୍ଚ୍ଛନା । ବସ୍ତୁତଃ ସାଧାରଣ ମଧ୍ୟରେ ଆତଯାତ ହେଉଥିଲେ ମଧ୍ୟ ଏହି ଦୃଷ୍ଟିରୁ କବି ଅସାଧାରଣ । କବିର ଅସାଧାରଣତ୍ୱହିଁ କବିତାର ଚିରନ୍ତନ ଆବେଦନ ମଧ୍ୟରେ ଆତ୍ମଗୋପନ କରି ରହିଥାଏ—ନିଖିଳମାନବ-ଚେତନାକୁ ଯିଏ ଅସୀମର ଆସ୍ୱାଦନ ଦେଇପାରେ ।

ପ୍ରେମକବିତା ମଧ୍ୟ, କବିତାର ଏହି ଆବେଦନଗତ ଚିରନ୍ତନତାର ଆଲୋକରେ ମଣ୍ଡିତ ରସଘନ-ରୂପ ପରିଗ୍ରହଣ କରିପାରେ । ବ୍ୟାସ, ବାଲ୍ମୀକି, କାଳିଦାସ ଓ ରବୀନ୍ଦ୍ରନାଥଙ୍କର ରଚନା ମଧ୍ୟରେ ଏହାର ଦୃଷ୍ଟାନ୍ତ ଯେପରି ପ୍ରଚୁର, ସେକ୍‌ସପିୟର, ମିଲ୍‌ଟନ, ମାରେଲ ବଦ୍‌ଲେୟାର, ଇୟ୍‌ଟସ୍ ଓ ମର୍ଲୋ ପ୍ରଭୃତିଙ୍କ ସୃଷ୍ଟି ମଧ୍ୟରେ ମଧ୍ୟ ସେହିପରି । ପୁନଶ୍ଚ ଭାରତୀୟ ବୈଷ୍ଣବ ପଦାବଳୀ ରଚୟିତା-ମାନଙ୍କ ମଧ୍ୟରୁ ଚଣ୍ଡୀଦାସ, ବିଦ୍ୟାପତି ଓ ଜୟଦେବଙ୍କ ଦ୍ୱାରା ପ୍ରେମର ଅପୂର୍ବ କଳାମଣ୍ଡିତ ଅଭିବ୍ୟକ୍ତିମାନ ଘଟିଛି, ପାଠକର ମନରେ ଯାହା ଯୁଗପତ୍ ଆହ୍ଲାଦ ଓ ବିସ୍ମୟ ସୃଷ୍ଟି କରିପାରେ । ଶେଷୋକ୍ତ ବୈଷ୍ଣବ କବିତ୍ରୟୀ ପାଠକର ଚେତନାର ଊର୍ଦ୍ଧ୍ୱାୟନ ( Sublimation ) ପାଇଁ କବିତାରେ ଯେଉଁ କଳାନୈପୁଣ୍ୟ ଓ ସାର୍ବଜନୀନ ଅନୁଭୂତି ପ୍ରକାଶ କରିଯାଇଛନ୍ତି ନିରବଧି କାଳବକ୍ଷରେ ସବୁଦିନ ପାଇଁ ତାହା ଉତ୍‌କୀର୍ଣ୍ଣ ରହିଥିବ ।

ଓଡ଼ିଆ ସାହିତ୍ୟରେ ପ୍ରେମ କବିତାର ପରମ୍ପରା ବହୁ ପ୍ରାଚୀନ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପ୍ରେମ ସହିତ ଧର୍ମର ମିଶ୍ରଣ ଚିଳଚିହ୍ନିତ । ଆଦି ଯୁଗରେ ଧର୍ମ ଥିଲା ସାହିତ୍ୟର ଭିତ୍ତିଭୂମି । ଆଦି ଯୁଗରୁ ପଞ୍ଚସଖାଙ୍କ ପର୍ଯ୍ୟନ୍ତ ପୁରାଣ, କାବ୍ୟ ଓ କୋଇଲି, ଭଜନ, ଚଉତିଶାମାନଙ୍କରେ ଆଂଶିକ ବୈଚିତ୍ର୍ୟ ଅବଶ୍ୟ ଲକ୍ଷଣୀୟ । କିନ୍ତୁ ରସଚେତନା ଦୃଷ୍ଟିରୁ କବିମାନେ ଆତ୍ମିକ ଓ ଆଧ୍ୟାତ୍ମିକ ପରିମଣ୍ଡଳକୁ ମୁଖ୍ୟତଃ କଳନାର ଚାରଣଭୂମିରେ ପରିଣତ କରିଥିଲେ । ମଧ୍ୟଯୁଗରେ ସେହି ଧାରା ସ୍ପଷ୍ଟ ଭାବରେ ଦ୍ୱିଧା ବିଭକ୍ତ ହୋଇଗଲା । ରାଧାକୃଷ୍ଣ ଓ ରାମସୀତା ପ୍ରଭୃତି ଦେବ ଦେବୀଙ୍କୁ ଅବଲମ୍ବନ କରି ଧର୍ମ ଓ ନୈତିକତାଦ୍ୟୋତକ ଏକ କାବ୍ୟଧାରା ସହିତ ସମାନ୍ତର ଭାବରେ ଗଢ଼ିଉଠିଥିଲା କାଳ୍ପନିକ ନାୟକ ନାୟିକାଙ୍କର ପ୍ରଣୟ-ବର୍ଣ୍ଣନ ବହୁଳ ଓ ଶୃଙ୍ଗାରପ୍ରଧାନ ରୀତିବଦ୍ଧ ଅନ୍ୟ ଏକ ଅଭିନବ କାବ୍ୟଧାରା । ଏ ଯୁଗରେ ଦୈହିକ ପ୍ରେମର ପ୍ରତିଭାଶାଳୀ କବି ଉପେନ୍ଦ୍ର ଭଞ୍ଜଙ୍କର ରଚନାରେ ସ୍ଥଳବିଶେଷରେ ବ୍ୟକ୍ତିଗତ ପ୍ରେମାନୁଭୂତିର ଚିତ୍ର ଅଭିବ୍ୟକ୍ତିତ ହୋଇଥିଲେ ମଧ୍ୟ ତାହାର ବ୍ୟକ୍ତିନିଷ୍ଠ ମନ୍ମୟ ପ୍ରକାଶ ଯୁଗରୁଚି ଓ କାବ୍ୟ-ରୀତି ଦୃଷ୍ଟିରୁ ସମ୍ଭବ ହୋଇପାରିନାହିଁ । ରୀତିଯୁଗର ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଓଡ଼ିଆ କାବ୍ୟ-ପରମ୍ପରାରେ ବହୁ ଭିନ୍ନ ସ୍ୱାଦର ପ୍ରେମକବିତା ରଚିତ ହୋଇଥିବାର ଦେଖାଯାଏ । ଅଭିମନ୍ୟୁ ଓ

ଗୋପାଳକୃଷ୍ଣଙ୍କ ଏହି ଯୁଗର କାବ୍ୟ କବିତାରେ ପ୍ରତିନିଧିସ୍ଥାନୀୟ ସାର୍ଥକ ପ୍ରେମ-ଚିତ୍ରକରରୂପେ ଗ୍ରହଣ କରାଯାଇପାରେ । ବିଦଗ୍ଧଚିନ୍ତାମଣି କାବ୍ୟରେ ଅଭିମନ୍ୟୁ ପ୍ରେମର ତାତ୍ତ୍ୱିକ ବ୍ୟାଖ୍ୟା କରିଛନ୍ତି । ବିପ୍ରଲମ୍ଭ-ଶୃଙ୍ଗାରର ଯେଉଁ ମାର୍ମିକ ଚିତ୍ର ସେ ଅଙ୍କନ କରିଯାଇଛନ୍ତି, ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟକବିତାରେ ତାହା ଅଦ୍ୱିତୀୟ କୀର୍ତ୍ତି । ଗୋପାଳକୃଷ୍ଣ କୌଣସି ମହାକାବ୍ୟ କିମ୍ବା କାବ୍ୟ ପ୍ରଣୟନ କରି ନ ଥିଲେ ମଧ୍ୟ କ୍ଷୁଦ୍ର ଗୀତିକବିତାମାନଙ୍କରେ ପ୍ରେମର ପ୍ରାୟ ସବୁ ଅବସ୍ଥାର ସ୍ୱାଭାବିକ ସ୍ୱରୂପ ପ୍ରଦର୍ଶନ କରିପାରିଛନ୍ତି । ପ୍ରେମର ବୈଚିତ୍ର୍ୟମୟୀ ବର୍ଣ୍ଣନା କ୍ଷେତ୍ରରେ ଅଭିମନ୍ୟୁଙ୍କ ଅଭାବକୁ ଗୋପାଳକୃଷ୍ଣ ଅନେକାଂଶରେ ପୂର୍ଣ୍ଣ କରିଦେଇଛନ୍ତି । ଗୋପାଳକୃଷ୍ଣଙ୍କର ଏହି ଶ୍ରେଣୀର କବିତାମାନଙ୍କରେ ଭକ୍ତି ଓ ଧର୍ମଭାବ ଅପେକ୍ଷା ବାସ୍ତବ ଅନୁଭୂତିର ସ୍ୱର ଅଧିକ ଉତ୍କୀର୍ଣ୍ଣ ହୋଇଥିବାର ଯେକୌଣସି ଅନୁସନ୍ଧିତ୍ସୁ ପାଠକ ଲକ୍ଷ୍ୟ କରିପାରିବେ । କିନ୍ତୁ ସ୍ୱାଭାବିକ ପ୍ରେମବର୍ଣ୍ଣନାକୁ ବୈଷ୍ଣବ ଦର୍ଶନର ପ୍ରଚ୍ଛଦପଟରେ ଚିତ୍ରିତ କରିଥିବା ମଧ୍ୟଯୁଗୀୟ ଅନ୍ୟ ଅନେକ କବିଙ୍କ ପରି ଅଭିମନ୍ୟୁ ଓ ଗୋପାଳକୃଷ୍ଣ ମଧ୍ୟ ପାଠକର ସ୍ୱାଭାବିକ ରସଗ୍ରହଣ ପିପାସାକୁ କେତେକାଂଶରେ ପୂର୍ଣ୍ଣ କରିଦେଇଛନ୍ତି । ଏହି ଉଭୟ କବିଙ୍କ ବ୍ୟକ୍ତିଗତ ଜୀବନର ପ୍ରେମାନୁଭୂତି ବୈଷ୍ଣବୀୟ ପରିଭାଷା ଗ୍ରହଣ କରିଥିବାରୁ କବିଚିତ୍ତର ବ୍ୟକ୍ତିନିଷ୍ଠ ପ୍ରକାଶ ସମ୍ଭବ ହୋଇପାରିନାହିଁ ।

ଆଧୁନିକ ଯୁଗରେ କବି ରାଧାନାଥ ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ନେଇ ପ୍ରେମର ଆବେଗ ଉଚ୍ଛ୍ୱାସମୟୀ ରୂପକୁ ମୂର୍ତ୍ତି କରିବା ସଙ୍ଗେ ସଙ୍ଗେ କାବ୍ୟମାନଙ୍କର ପରିଣତିକୁ ଟ୍ରାଜେଡ଼ିର କରୁଣ-ମଧୁର ମୂର୍ଚ୍ଛନାରେ ପୂର୍ଣ୍ଣତା ଦେଇଛନ୍ତି । ରାଧାନାଥ ମୁଖ୍ୟତଃ ଥିଲେ ରୂପପ୍ରାଣ ରୋମାଣ୍ଟିକ କବି । ତାଙ୍କର କାବ୍ୟମାନଙ୍କରେ ପ୍ରେମବର୍ଣ୍ଣନାଗତ ବୈଚିତ୍ର୍ୟ ପାଠକର ଦୃଷ୍ଟି ଆକର୍ଷଣ କରେ । ପ୍ରେମଚିତ୍ର ପ୍ରଦର୍ଶନ କରିବାରେ କବି ରାଧାନାଥଙ୍କର ନୂତନତ୍ୱ ଅନସ୍ୱୀକାର୍ଯ୍ୟ । 'ପାର୍ବତୀ' କାବ୍ୟରେ ଆମର ସମାଜ ସମ୍ପ୍ରୀତି-ବିରୋଧୀ ପ୍ରେମରେ ଯେପରି ଆବିଳତା ପଦର୍ଶିତ, ନନ୍ଦିକେଶ୍ୱରୀରେ ସେହିପରି ଆବେଗ-ଉଚ୍ଛ୍ୱାସସର୍ବସ୍ୱ ପ୍ରେମର ଅପରିଣାମଦର୍ଶୀ ସ୍ୱରୂପ ବର୍ଣ୍ଣିତ । 'କେଦାର-ଗୌରୀ'ରେ ପୁଣି ପ୍ରେମର ପ୍ଲାଟୋନିକ୍ ଦିଗଟିକୁ କବି ଅଧିକ ସ୍ପଷ୍ଟ ଓ ଜୀବନ୍ତ କରିଦେଇଛନ୍ତି । ତାଙ୍କର 'ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି' କବିତାରେ କବିଙ୍କର ବ୍ୟକ୍ତିଗତ ଜୀବନର ପ୍ରେମାନୁଭୂତି ଅବଶ୍ୟ ପ୍ରକାଶ ପାଇଛି, କିନ୍ତୁ ପରକୀୟା ପ୍ରୀତି-ଜନିତ କବିଙ୍କର ଅନୁତାପ କଥାଟିକୁ କଳାତ୍ମକ ଅଭିବ୍ୟକ୍ତି ଦେଇପାରିନାହିଁ । ପୂନଶ୍ଚ ଆତ୍ମପ୍ରସାଦ ମଧ୍ୟରେ କେବଳ ତାଙ୍କର ଚିନ୍ତା ଓ ଭାବନା ଏଠାରେ ଅଭିବ୍ୟଞ୍ଜିତ ।

ସତ୍ୟବାଦୀ ଯୁଗର କବିମାନେ ଥିଲେ ମୁଖ୍ୟତଃ ଆଦର୍ଶ ଓ ଇତିହାସର କାରିଗର । ପ୍ରେମବର୍ଣ୍ଣନା ଏ ଯୁଗର ସାହିତ୍ୟକୃତିମାନଙ୍କରେ ଅପ୍ରତୁଳ ନୁହେଁ ।

ସତ୍ୟବାଦୀ ଯୁଗର କାବ୍ୟକବିତା'ରେ ପ୍ରେମ ଯେପରି ଆଦର୍ଶର ଉଚ୍ଚ ଆସନକୁ ଉତ୍ତୀର୍ଣ୍ଣ ହୋଇପାରିଛି, ସବୁଜଗୋଷ୍ଠୀର କବିମାନଙ୍କ ଦ୍ୱାରା ସେହିପରି ପ୍ରେମ ପ୍ରାଣହୀନ ପ୍ରତିମାରେ ପରିଣତ ହୋଇଛି ।

ସବୁଜଗୋଷ୍ଠୀର ସମସାମୟିକ କବି ଶ୍ରୀ ମାନସିଂହଙ୍କର ନାୟିକା ସବୁଜ-କବିମାନଙ୍କର କାବ୍ୟନାୟିକା ପରି ବାୟବୀୟ ଭାବମୂର୍ତ୍ତିର ନାୟିକା ନୁହେଁ କିମ୍ବା କଳ୍ପଲୋକର ମାନସୀ ନୁହେଁ । କବି ମାନସିଂହଙ୍କର କାବ୍ୟନାୟିକା ବାସ୍ତବ ସଂସାରର ରକ୍ତମାଂସର ରମଣୀ । ସେହି ବାସ୍ତବିକତା ସହିତ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର-ସ୍ପୃହାର ଯେଉଁ ମାର୍ଜିତ ଚିତ୍ର କବି ଅଙ୍କନ କରି ସମାଜ ସମ୍ମୁଖରେ ପ୍ରଥମ ଥର ପାଇଁ ଉପସ୍ଥାପିତ କଲେ ସେଥିପାଇଁ ପାଠକମାନଙ୍କଠାରୁ ତାଙ୍କୁ କଣ୍ଟକ ଓ କୁସୁମର ମାଳା ଗ୍ରହଣ କରିବାକୁ ପଡ଼ିଥିଲା । ସ୍ପଷ୍ଟ ଭାବରେ ନିଜର ପ୍ରଣୟାନୁଭୂତିକୁ 'ଧୂପ'-ଧୂଆଁ ମାଧ୍ୟମରେ ପାଠକ ସମାଜରେ ବାଣ୍ଟିଦେବାର ଯେଉଁ ନିର୍ଭୀକ ପଦକ୍ଷେପ ଓଡ଼ିଆ ସାହିତ୍ୟକ୍ଷେତ୍ରରେ କବି ମାନସିଂହ ପ୍ରଥମ ଥର ପାଇଁ ନେଲେ, ତାହା ଅନମନୀୟ ସାହିତ୍ୟିକ ବ୍ୟକ୍ତିତ୍ୱର ଏକ ଉଜ୍ଜ୍ୱଳତମ ଦୃଷ୍ଟାନ୍ତକୁ ଉନ୍ମୋଚିତ କରିଦେଲା ।

ଉଭୟ ଗଦ୍ୟ ଓ ପଦ୍ୟ ରଚନା ମଧ୍ୟରେ ମାନସିଂହଙ୍କର ନିର୍ଭୀକ ସାହିତ୍ୟିକ ବ୍ୟକ୍ତିତ୍ୱର ସ୍ୱାକ୍ଷର ଉତ୍କୀର୍ଣ୍ଣ ହୋଇ ରହିଛି । ଜଣେ ନିରପେକ୍ଷ ନିର୍ଭୀକ ସମାଲୋଚକ ଓ କବିଜନସୁଲଭ ଛନ୍ଦଜ୍ଞାନସମ୍ପନ୍ନ କବିତାରଚୟିତା ଭାବରେ ଅଦ୍ୟାପି ଓଡ଼ିଆ ସାହିତ୍ୟରାଜ୍ୟରେ ମାନସିଂହଙ୍କର ସ୍ଥାନ ଅଦ୍ୱିତୀୟ । ଭାଷାବିନ୍ୟାସ ଓ ଛନ୍ଦ ପ୍ରୟୋଗରେ ମଧ୍ୟ ତାଙ୍କର ସେହି ସାହିତ୍ୟିକ ବ୍ୟକ୍ତିତ୍ୱର ଅନମନୀୟତା ପ୍ରକାଶିତ । କବିତା ରଚନା କାଳରେ ଶବ୍ଦକୁ ଘଷିମାଜି ଲତାର କୋମଳତା ପ୍ରଦାନ କରିବାର ଛନ୍ଦଜ୍ଞାନକୁ ମାନସିଂହ କୌଣସିଠାରେ ପ୍ରଶ୍ରୟ ଦେଇନାହାନ୍ତି । ଅଥଚ, ତାଙ୍କର ସମସାମୟିକ ସବୁଜକବିମାନଙ୍କର ଭାଷା ବ୍ୟବହାରରେ ଏ ଧରଣର କୃତ୍ରିମତା ବହୁଳ ଲକ୍ଷ୍ୟ କରାଯାଏ । ସବୁଜ କବିମାନେ କବିତା ରଚନାକାଳରେ ସାଧାରଣ ଭାଷାଠାରୁ ଭିନ୍ନ କାବ୍ୟିକ ଭାଷାକୁ ଗ୍ରହଣ କରିଛନ୍ତି । ଏହି କାବ୍ୟିକ ଭାଷା ଲଳିତ, ମୃଦୁ, ନମନୀୟ ଓ ସଂପ୍ରସାରଣଶୀଳ । ଏମାନେ ସଂଯୁକ୍ତ ବର୍ଣ୍ଣ ଯେତେଦୂର ସମ୍ଭବ ପରିହାର କରିଛନ୍ତି । ସଂଯୁକ୍ତ ବର୍ଣ୍ଣର ପ୍ରତିଶବ୍ଦ ଯେଉଁଠାରେ ନାହିଁ, ସେ କ୍ଷେତ୍ରରେ ସେହି ସଂଯୁକ୍ତ ବର୍ଣ୍ଣର ସଂପ୍ରସାରଣ କରାଯାଇଛି । ଶବ୍ଦକୁ ଏମାନେ ଲତାର ଯେଉଁ କୋମଳତା ଦେଇଛନ୍ତି, ତାହା ଚେଷ୍ଟାକୃତ । ଏହି ଛନ୍ଦତା ମଧ୍ୟରେ ତେଣୁ ସ୍ୱାଭାବିକତାର ସ୍ୱତଃସ୍ଫୂର୍ତ୍ତ ବିକାଶ ଘଟିନାହିଁ । ସବୁଜ କବିତାରେ ଯେଭଳି 'ପ୍ରଥମ'କୁ 'ପରଥମ', 'ମଗ୍ନ'କୁ 'ମଗନ' ଭାବରେ ବ୍ୟବହାର କରାଯାଇଛି, କବି ମାନସିଂହ ସେ ପ୍ରକାର ଶବ୍ଦବିନ୍ୟାସ କରିନାହାନ୍ତି । ସବୁଜ କବିମାନଙ୍କର ଭାଷାବିନ୍ୟାସ-ଭାବ

ଓ ମାନସିଂହଙ୍କର ଭାଷାବିନ୍ୟାସ ଗାଢ଼ ପରମ୍ପରାର ସମ୍ପୂର୍ଣ୍ଣ ବିପରୀତ । ନିଜର ସେମାନୁଭୂତିକୁ ମାନସିଂହ ସୋଜ୍‌ସୋଜ୍‌ ଭାବରେ ଯେପରି ପ୍ରକାଶ କରିଛନ୍ତି, କବିତାରେ ଭାଷାର ବ୍ୟବହାର ମଧ୍ୟ ସେ ସେହିପରି ସିଧାସଳଖ କରିଛନ୍ତି । ତାଙ୍କର ଭାଷାରେ କୌଣସି ପ୍ରକାର ହେଲେ କୃତ୍ରିମତା ଲକ୍ଷ୍ୟ କରାଯାଏ ନାହିଁ । ମାନସିଂହଙ୍କର ଅଧିକାଂଶ କବିତାରୁ ତାଙ୍କର ଭାଷାବିନ୍ୟାସଗତ ସ୍ୱାଭାବିକତା ଓ ଛନ୍ଦପ୍ରୟୋଗରେ ସଚେତନତା, ଉଭୟ ହିଁ ଲକ୍ଷ୍ୟ କରାଯାଇପାରେ । ଛନ୍ଦପ୍ରୟୋଗ ଦୃଷ୍ଟିରୁ ମଧ୍ୟ ମାନସିଂହ କୃତ୍ରିମତାକୁ ପ୍ରଶ୍ରୟ ଦେଇନାହାନ୍ତି । କବିମାନଙ୍କୁ 'ନାରୀଭାବସମ୍ପନ୍ନ' ବୋଲି କୁହାଯାଏ । ଛନ୍ଦପ୍ରୟୋଗରେ ଉପଧାର ଅନୁଶାସନ ନାରୀଭାବକୁ ଆହୁରି ସ୍ପଷ୍ଟ କରିଦିଏ । ଉପଧା ମିଳନର ଇଂରେଜୀ ପରିଭାଷା ହେଉଛି Feminine Rhyme । କବି ମାନସିଂହ ଉପଧା ମିଳନର ବିରୋଧୀ । ମାନସିଂହଙ୍କ କବିତାରେ ଛନ୍ଦ ଅକ୍ଷରମାତ୍ରିକ ନୁହେଁ । ଅକ୍ଷର ଗଣି ତଳ ଉପର ଧାଡ଼ିର ଅକ୍ଷର ସଂଖ୍ୟା ସମାନ ରଖିବାର ଉଦ୍ୟମ ସେ କରିନାହାନ୍ତି । ସ୍ଥାନେ ସ୍ଥାନେ ଉପର ଧାଡ଼ିରେ ଅକ୍ଷର ସଂଖ୍ୟା ୧୫, ଅଥଚ ତଳ ଧାଡ଼ିରେ ୧୪ । ତାଙ୍କର ଛନ୍ଦ ଧ୍ୱନିମାତ୍ରିକ ଓ ସ୍ୱରମାତ୍ରିକ ।

ଆଲୋଚ୍ୟ ପ୍ରବନ୍ଧରେ ମୁଖ୍ୟତଃ କବି ମାନସିଂହଙ୍କ ପ୍ରେମକବିତା ସମ୍ପର୍କରେ ଆଲୋଚନା କରାଯାଉଛି । ମାନସିଂହ ରୂପର ଆରାଧନା କରିଛନ୍ତି ଠିକ୍ ରାଧାନାଥଙ୍କ ପରି । ରାଧାନାଥଙ୍କ ପରି ସେ ରୂପପ୍ରାଣ, ରସିକ ଓ ରୋମାଣ୍ଟିକ କବି । ଏକଦା ଏକ ଇରାନକିଶୋରୀର ତାରୁଣ୍ୟଭରାଳ ସୌନ୍ଦର୍ଯ୍ୟ କବିଙ୍କୁ ମୁଗ୍ଧ କରିଛି; ପ୍ରଲୁବ୍ଧ ମଧ୍ୟ କରିଛି । କର୍ମମୟ ଜୀବନର ଜଞ୍ଜାଳ ମଧ୍ୟରେ ସେ ରୂପ ହୁଏତ ବିସ୍ମୃତିର ଅନ୍ଧକାରତଳେ ଲୁପ୍ତିହୋଇଯାଇଛି । କିନ୍ତୁ ସାଧାରଣ ବ୍ୟକ୍ତିର ରୂପତୃଷ୍ଣା ଓ ରସିକର ରୂପତୃଷ୍ଣା ମଧ୍ୟରେ ପାର୍ଥକ୍ୟ ଆକାଶ ଓ ଅବନୀର । ଅନ୍ତରର ମାୟାବିନୀ ପୃଥିବୀକୁ ଫେରିଚାହିଁବା ଅବକାଶରେ ଅକସ୍ମାତ୍ ସେହି 'ଇରାନୀ କିଶୋରୀ'ର 'ଗୁଲ୍‌ବଦନ' କବିଙ୍କ ମନନୟନରେ ବିଜୁଳି ପରି ଚମକି ଉଠିଛି, ଯଦ୍ୱାରା ନିର୍ଜନତାର ଆନନ୍ଦ ପ୍ରାଣଭରି ସେ ଉପଭୋଗ କରିଛନ୍ତି । ରୂପ ପ୍ରତି ଗଭୀର ଆସକ୍ତିର ଉତ୍ସରୁ ଏହି ଆନନ୍ଦର ନିର୍ଝର ଝରିପଡ଼ିଛି । ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ଭାଷାରେ ଏହା ହିଁ "bliss of solitude" । ପୁନଶ୍ଚ କବି ପାଷାଣୀ କୋଣାର୍କକୁ ମୌନ ଦୁଃଖରେ ସୈକତ-ଶୟନା ଏକ ବିଗତ-ଯୌବନା ତନ୍ୱୀ ଭାବରେ କଳ୍ପନା କଲାବେଳେ ରୂପପ୍ରାଣ ଏକ ରସିକ କବିମନର ଉତ୍ତାପ ପାଠକ ଅନୁଭବ କରିପାରେ । 'ମହାନଦୀରେ ଜ୍ୟୋତ୍ସ୍ନାବିହାର' ଅବକାଶରେ କବି ଯେତେବେଳେ ଅତୀତ ଉତ୍କଳର ସ୍ମୃତିଚାରଣ କରନ୍ତି, ସେଇ ରସିକତା-ରସାଣିତ ରୂପ-ଚେତନାର ପୁଣି ପ୍ରକାଶ ଘଟେ :

"ସେ ଧନ ଏ ଶିଳାମରେ ଅବଗାହେ ଆସି
ସୁକୁମାରୀ ରାଜବାଳା ଆଙ୍କଥିବ ତା'ର
ଲକ୍ଷାରକ୍ତ ପଦଛବି କରି ମଣିକାଶୀ
କଠିନ ପାଷାଣ ଦେହେ ଆନନ୍ଦ-ସଞ୍ଚାର ।"

ଏହିପରି ବହୁ କବିତାରେ କବି ମାନସିଂହଙ୍କର ଇନ୍ଦ୍ରିୟଗ୍ରାହ୍ୟ ରୂପ ଲାଗି ଯେଉଁଭଳି ଉଚ୍ଛ୍ୱାସ ଓ ଆନ୍ତରିକତା ପ୍ରକାଶ ପାଇଛି, ନିଃସନ୍ଦେହରେ ତାହା ତାଙ୍କୁ ଜଣେ ରୂପପ୍ରାଣ ରସିକର ଆଖ୍ୟା ପ୍ରଦାନ କରିପାରେ ।

ପ୍ରେମ ପ୍ରଣୟର ରୂପକାର କବି ମାନସିଂହଙ୍କର କବିଜୀବନର ଉନ୍ମେଷ, ବିକାଶ ଓ ପରିଣତି ସ୍ୱାଭାବିକ ଭାବରେ ଘଟିଛି । ପ୍ରେମର ଯେଉଁ ସଂଜ୍ଞା ଓ ସ୍ୱରୂପ କବି ନିଜେ ନିର୍ଣ୍ଣୟ କରିଛନ୍ତି ତାହାରି କଷଟୀରେ ତାଙ୍କ ପ୍ରେମଚିନ୍ତାର ପରୀକ୍ଷା କରାଯାଉଛି । "ଗଭୀର ସୁଖଦୁଃଖ ମଧ୍ୟଦେଇ ନବ ନବ ଅନୁଭୂତି ମଧ୍ୟଦେଇ ମାନବାତ୍ମାର ଯେଉଁ ଜନ୍ମାନ୍ତର ହୁଏ ତାହାହିଁ ପ୍ରେମ" । ସହକାର କୁଞ୍ଜର ଛାୟାରେ ସମ୍ଭବତଃ କବି ପାଇଛନ୍ତି ଗଭୀର ସୁଖ । ନିମ୍ନୋକ୍ତ କବିତାଂଶ ମଧ୍ୟରେ କବିଙ୍କର ଗଭୀର ସୁଖାନୁଭୂତି ବର୍ଣ୍ଣିତ ସହକାରତଳେ କଣ୍ଠଲଗ୍ନା ପ୍ରଣୟିନୀର ମିଳନସ୍ମୃତି ସ୍ମରଣ କରି କବି ଲେଖିଛନ୍ତି,

"ସକଳ ଜଗତ ଦୂର ନିକଟ
ପାସୋରି ସେ ମହାକ୍ଷଣେ
ଶୁଣୁଥାଇ ମହା-ସଙ୍ଗୀତ, ପ୍ରିୟା-
କଙ୍କଣ କଣକଣେ ।"

ପୁଣି ନାୟିକାର ସାନ୍ନିଧ୍ୟ ଓ ସମ୍ଭୋଗ ବିନା ତରୁଣ ପ୍ରାଣର ଯେଉଁ ହତାଶା ଓ ହାହାକାର ତାହା ସହିତ ଲୋକନିନ୍ଦା ମିଶି ଗଭୀର ଦୁଃଖରେ କବିଙ୍କୁ କରିଛି କିଂକର୍ତ୍ତବ୍ୟବିମୂଢ଼ । ବିଶେଷ କରି ଏହି ଲୋକନିନ୍ଦା ହିଁ ଗଭୀର ଦୁଃଖର ଏକ ଜ୍ୱାଳାମୟୀ ହେତୁ । ନିମ୍ନୋକ୍ତ ଉଦ୍ଧୃତାଂଶରୁ ତା'ର କିଞ୍ଚିତ୍ ଆଭାସ ମିଳେ ।

"ଜନତାର ଏହି ରୁଢ଼ ପରିହାସ
କଥା କହିବାର ଧରି ଦରହାସ
ବଡ଼ ବ୍ୟଥା ଦିଏ, କି କରିବି କହ ସତେ,
ଜଗତ ଯାଏନା ପ୍ରତେ ।"

ଏହିପରି ଭାବରେ ଗଭୀର ସୁଖଦୁଃଖ ଅଙ୍ଗେ ଲିଭେଇବା ସଙ୍ଗେ ସଙ୍ଗେ କବି ମନରେ ଯେଉଁ ନବ ନବ ଅନୁଭୂତିର ସଞ୍ଚାର ହୋଇଛି, କବିଲବ୍ଧ ସେହି

ଅନୁଭୂତିକୁ ତିନୋଟି ସ୍ତରରେ ଲକ୍ଷ୍ୟ କରାଯାଇପାରେ । 'ଧୂପ', 'ହେମଶସ୍ୟ' ଓ 'ଋଣ' କବିତା ଚୟନିକାର ତ୍ରୟୀ ମଧ୍ୟରେ ଅନୁଭୂତିର ତ୍ରିବିଧ ସ୍ୱାତନ୍ତ୍ର୍ୟ ପ୍ରଦର୍ଶିତ । 'ଧୂପ'ରେ ପ୍ରେମ ପରକୀୟା, 'ହେମଶସ୍ୟ'ରେ ସ୍ୱକୀୟା, ପୁଣି 'ଋଣ'ରେ ଇନ୍ଦ୍ରିୟୋତ୍ତର ଓ ରୂପୋତ୍ତର । ପରକୀୟା ନାୟିକାର ରୂପତୃଷ୍ଣା କବିଙ୍କୁ ଯେପରି କାଦମ୍ବରୀ-ପାନ-ପ୍ରମତ୍ତ ବିହ୍ୱଳ-ପରିଣାମ-ପରାଙ୍ମୁଖ ଓ ଦୁଃସାହସୀ କରିଛି, ସ୍ୱକୀୟାର ସ୍ନିଗ୍ଧ ଶୀତଳଶ୍ରୀ ସେହିପରି କବିଙ୍କର ନିଖିଳ କ୍ଷୁଧାକୁ କରିଛି ଶାନ୍ତ ଓ ସଂଯତ । 'ସୁରା ଓ ସୁଧା' କବିତାରେ କବି ତେଣୁ କହୁଛନ୍ତି—

"ସେ ମୋହ ପରମ
ହୋଇଅଛି ଶେଷ ଆଜି ! ଆଜି ହେ ସୁନ୍ଦରି !
ପବିତ୍ର ଜାହ୍ନବୀ ସ୍ରୋତେ ଦାଣ୍ଡ ମୋର ଭରି
ଆସିଛି ମନ୍ଦିରେ ମମ ! ସେହି ସୁଧା ପାନେ
ଶାନ୍ତ ମୋ ନିଖିଳ-କ୍ଷୁଧା, ମୋହ ଅବସାନେ
ଘଟିଛି ମୋ ଜନ୍ମାନ୍ତର; ସୁରାପାନ ପରେ
ପ୍ରେମ ତବ ସୁଧାସମ ପ୍ରାଣେ କାର୍ଯ୍ୟ କରେ ।"

କବି ସୁରାପାନ କରିଛନ୍ତି; ସୁଧା ମଧ୍ୟ । ସୁଧାପାନ ପରେ ସୁରା ପ୍ରତି ଆସକ୍ତି ମନରୁ ଲିଭିଆସୁଛି । ତଥାପି ଅଶାନ୍ତ, ତଥାପି ଅନ୍ୱେଷଣ···ସ୍ୱକୀୟା-ପ୍ରୀତି ସୁଧା ଆକଣ୍ଠ ପାନ କରି ମଧ୍ୟ କବି ଅତୃପ୍ତ ଯୌବନର ଖେଳରେ ଯେତେବେଳେ କ୍ଳାନ୍ତ, ଅବସନ୍ନ, ସେତେବେଳେ କବିଙ୍କ ଦୃଷ୍ଟିର ଦିଗନ୍ତରେ ପରକୀୟା କିମ୍ବା ସ୍ୱକୀୟା କୌଣସି ନାୟିକାର ଛବିମୂର୍ତ୍ତି ଆଉ ଇନ୍ଦ୍ରଧନୁର ବର୍ଣ୍ଣଚ୍ଛଟା ତୋଳି ଧରିବାକୁ ଅକ୍ଷମ, ଯେତେବେଳେ କବି ମନର ଅତଳାୟତନ ନବ ନବ ଅନ୍ୱେଷା ହେତୁ ଶତଧା ବିଦୀର୍ଣ୍ଣ ହୋଇଯାଉଛି ଠିକ୍ ସେତିକିବେଳେ ପ୍ରେମିକ-କବି ନବ ବୃନ୍ଦାବନର ସ୍ୱପ୍ନ ଦେଖିଛନ୍ତି । ଅନନ୍ତ ସୃଷ୍ଟି ସୌନ୍ଦର୍ଯ୍ୟର ବିଚିତ୍ର ଚିତ୍ରକରଙ୍କୁ ସମ୍ବୋଧନ କରି ନୂତନ ପ୍ରଣୟର ମନ୍ତ୍ର ଉଚ୍ଚାରଣ କରିଛନ୍ତି । 'ନୂତନ ପ୍ରଣୟ' କବିତାରେ ତେଣୁ କହୁଛନ୍ତି—

"ଯାଇଛନ୍ତି ସେ ସମସ୍ତ, ସେ ବନ୍ଧୁ ବାନ୍ଧବୀ
ପ୍ରଣୟର ଅର୍ଘ୍ୟ ଆଜି ଭିନ୍ନ ମୋ ନୟନେ,
ଭିନ୍ନ ସଙ୍ଗେ ନିୟୋଜିତ ଆଜି ଅଶ୍ରୁ-ହବି
ଜନ୍ମାନ୍ତରେ ଦେଲି ଯେସ୍ତେ ଏକଇ ଜୀବନେ ।"

ସଂସାରର ସୁଖଦୁଃଖ କବି ମନରେ ନବ ନବ ଅନୁଭୂତିର ସଞ୍ଚାର କରିଛି, ଯାହା ଫଳରେ କବିଙ୍କ ପ୍ରେମଜୀବନର ଜନ୍ମାନ୍ତର ସ୍ୱାଭାବିକ ଭାବରେ ସଂଘଟିତ ହୋଇଛି ।

ରୂପ ପ୍ରତି ମଧ୍ୟ କବିଙ୍କର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଲକ୍ଷ୍ୟ କରିବାର କଥା । ଏହାକୁ କବିଙ୍କର ରୂପ-ଚେତନାର ରୂପାନ୍ତର ଭାବରେ ମଧ୍ୟ ଗ୍ରହଣ କରାଯାଇ-ପାରେ । ସମଗ୍ର ବିଶ୍ୱର ରସିକା ରୂପସୀମାନଙ୍କୁ କେନ୍ଦ୍ର କରି ପ୍ରଥମ ଯୌବନରେ ଯେତେବେଳେ ତରୁଣ କବିଙ୍କର ଚପଳ ରୂପତୃଷ୍ଣା ପଲ୍ଲବିତ ହୋଇଥିଲା, ସେତେ-ବେଳେ ନିଖିଳ ନାରୀ ମଧ୍ୟରେ ସେ କେବଳ ଦେଖିଥିଲେ ତାଙ୍କର ଈପ୍ସିତ ପ୍ରିୟାକୁ । କିନ୍ତୁ ନାରୀର ଅନ୍ୟ ଏକ ସହଜାତ ସ୍ୱାଭାବିକ ଭୂମିକା ସମ୍ପର୍କରେ ପରବର୍ତ୍ତୀକାଳରେ କବି ସଚେତନ ହେବା ସଙ୍ଗେ ସଙ୍ଗେ ନାରୀକୁ ନମ୍ର ଭାବରେ ନମସ୍କାର କରି 'ନବ ଜନନୀ' କବିତାରେ କହିଛନ୍ତି—

"ହେ ନାରୀ ତୁ କାଳେ କାଳେ
ତୋର ସେହ ବକ୍ଷସ୍ଥଳେ
ପ୍ରେୟସୀ, ଜନନୀ ବେଶେ
ସ୍ନେହ ଢାଳି ନିର୍ବିଶେଷେ
ମାନବରେ ଆଣିଛୁ ବଢ଼ାଇ

× × ×

ଜନୟିତ୍ରୀ ମାନବ ଜାତିର
ହେ ନାରୀ କରଇ ନମସ୍କାର ।"

ପ୍ରିୟା ଓ ଜନନୀ—ନାରୀର ଏହି ଦ୍ୱୈତ ରୂପ ଦର୍ଶନ କରିସାରିବା ପରେ କବିମନରେ ମୋଡ଼ ବାଙ୍କି ଯାଇଛି ଅନ୍ୟ ଆଡ଼କୁ । ରୂପମାଧୁରୀ ପାନ କରିସାରିବା ପରେ ଅରୂପ ଉଦ୍ଦେଶ୍ୟରେ ପୁନଶ୍ଚ କବି ଅଭିସାର କରିଛନ୍ତି । 'ଗୁପ୍ତ ପ୍ରଣୟ' କବିତାରେ ଭଗବାନଙ୍କୁ ଗୋପନରେ ପାଇବାର କାମନାକୁ କବି ଯେଭଳି ବାସକ-ଶଯ୍ୟାରେ ପ୍ରତୀକ୍ଷା କରିଛନ୍ତି । ସେଇ କବିତାରେ ତେଣୁ କହିଛନ୍ତି—

"ତୁମ ସାଥେ ସ୍ୱହେଁ ଏହି ଗୋପନ ପ୍ରଣୟ
ପ୍ରକାଶ୍ୟରେ ତମ ସଙ୍ଗ ବାଞ୍ଛିତ ନୁହଁ ।"

କବି ମାନସିଂହଙ୍କ ପ୍ରେମଜୀବନର ଉନ୍ମେଷ, ବିକାଶ ଓ ପରିଣତି ଏହିପରି ଭାବରେ ଲକ୍ଷ୍ୟ କରାଯାଇପାରେ ।

ମାନସିଂହ ପ୍ରେମର କବି; ବିପ୍ଳବର ନୁହନ୍ତି । କିନ୍ତୁ ପ୍ରେମ ଭିତର ଦେଇ ବିଦ୍ରୋହ କରିବାର ପ୍ରବୃତ୍ତି ତାଙ୍କର କେତେକ କବିତାରେ ପ୍ରକାଶ ପାଇଛି । 'ପାପ ଓ ପ୍ରେମ' କବିତାରେ ବିପ୍ଳବର ସେଇ ସ୍ୱର ସ୍ପଷ୍ଟ ଶୁଣାଯାଏ । ରକ୍ଷଣଶୀଳ

ସମାଜ ପ୍ରଚଳନ ପ୍ରତି ଗଭୀର ଅନୁରକ୍ତି ଓ ଅହେତୁକ ଶ୍ରଦ୍ଧା ହେତୁ କବିଙ୍କ ପ୍ରେମର ମୂଲ୍ୟ ନିରୂପଣ କରିପାରି ନାହିଁ । ତେଣୁ ପାପ-ପୁଣ୍ୟ ପ୍ରତି ବିମୁଖତା ପ୍ରକାଶ କରି ପ୍ରଣୟୀକୁ ହକ୍ ଅଧିକାର ଦେବା ପାଇଁ ସମାଜକୁ ବୈପ୍ଳବିକ ବାଣୀ ଶୁଣାଇ କବି କହିଛନ୍ତି—

"ନୟନ୍ତି ଯାହାର ଲୋତକ ମୋ ପାଇଁ ବହିଲା
ମୋ ନୟନେ ସେ ତ ପରମପୂଜ୍ୟା ମହିଳା ।

× × ×

ମୂର୍ଖ ଜନତା କରେ ତା ବିଗ୍ଭର
ପ୍ରଣୟୀକୁ ଦିଅ ତାର ଅଧିକାର
ନ କହ ପୁରୁଣା ପୋଥି ଏଥେ କିବା କହିଲା,
ମୋ ନୟନେ ସେ ତ ପରମପୂଜ୍ୟା ମହିଳା ।"

ସମାଜ ପ୍ରତି କବିଙ୍କଠାରୁ ପୁଣି ପ୍ରକାଶ ପାଇଛୁ ଶ୍ଳେଷୋକ୍ତି । ଯେଉଁ ସମାଜ ବ୍ୟକ୍ତିର ଦୁଃଖାଶ୍ରୁ ପୋଛିଦେବାପାଇଁ ହାତ ବଢେଇଦିଏ ନାହିଁ, ବ୍ୟକ୍ତିର ପାପ-ପୁଣ୍ୟ ସହ ତା'ର ବା ସମ୍ପର୍କ କ'ଣ ? ସେଇ ଅବିବେକ ସାମାଜିକମାନଙ୍କୁ ମୂର୍ଖ ବୋଲି ସମ୍ବୋଧନ କରୁଛନ୍ତି—ଈର୍ଷାପରାୟଣ ହୋଇ ସେମାନେ କବିଙ୍କର ପ୍ରେମକୁ ପାପ ବୋଲି କହୁଥିବାରୁ ଚିରଉପବାସୀ କହି କବି ଥଟ୍ଟା ମଧ୍ୟ କରିଛନ୍ତି । ଶେଷରେ ମନର ମଣିଷକୁ ମନ ଦେଲେ ଘରଣୀ ଘୃଣ୍ୟ ହେବାର କୌଣସି କାରଣ ନ ଦେଖି କବି ଜନତାକୁ ନିର୍ବୋଧ, ଦେହସର୍ବସ୍ୱ, ସ୍ନେହହୀନ ପ୍ରଭୃତି କହି ତାଙ୍କ ଯୁଗଳ ମିଳନର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

ଏ ବିଦ୍ରୋହର ପଦଧ୍ୱନି ସହିତ ପାଠକ ପୂର୍ବରୁ ପରିଚିତ ନୁହେଁ । ତେଣୁ ତରୁଣ ମନର ଅପ୍ରକାଶ୍ୟ ସ୍ୱାଭାବିକ ଏକ ବିଦ୍ରୋହର ଉଚ୍ଛ୍ୱାସପୂର୍ଣ୍ଣ ପ୍ରକାଶ ଲକ୍ଷ୍ୟ କରି ସ୍ୱପ୍ନଜୀବୀ ଯୁବକ ଏକକ ଓ ଅସାମାଜିକ ଉଲ୍ଲାସରେ ସ୍ୱପ୍ନର ଜାଲ ବୁଣିପାରେ । କିନ୍ତୁ ପରିଣତ ମନ ନିକଟରେ ଏ ବିଦ୍ରୋହର ସ୍ୱର ଅବୋଧ ଶିଶୁର ଅଟ୍ଟହପଣିଆ ପରି ମନେହୁଏ ।

'ଧୂପ'ରେ ନାୟିକା ପରକୀୟା । ମୁଖ୍ୟ ରସ ଶୃଙ୍ଗାର (ବିପ୍ରଲମ୍ଭ) । କିନ୍ତୁ ସମ୍ଭୋଗ ଶୃଙ୍ଗାରର ବର୍ଣ୍ଣନା ବିଳାସ ବିପ୍ରଲମ୍ଭ ଶୃଙ୍ଗାରକୁ ମହିମାମଣ୍ଡିତ କରିପାରି-ନାହିଁ । କାରଣ କବିଙ୍କର ପ୍ରଣୟ ଛଳଛଳ ଅତୀତର ପ୍ରତିଟି ପୃଷ୍ଠା ବାସନାର ବର୍ଣ୍ଣମାଳାରେ ପରିପୂର୍ଣ୍ଣ । ଅଥଚ ଅତୀତ ବର୍ତ୍ତମାନକୁ ଏଠାରେ ଏକ କରୁଣ-ମଧୁର

ଅଶ୍ରୁବିଧୌତ ଶ୍ରୀ ପ୍ରଦାନ କରିପାରିନାହିଁ । ଅତୀତ ବର୍ତ୍ତମାନ ନିକଟରେ ଏକ ଉଦ୍ଦୀପନ ବିଭବ ମାତ୍ର । ବର୍ତ୍ତମାନର ସାଗରବକ୍ଷକୁ ଆନ୍ଦୋଳିତ କରିବା ପାଇଁ ତାହା ଯେପରି ଲକ୍ଷକୋଟି ଅମାବାସ୍ୟାର ପୁଞ୍ଜୀଭୂତ ପ୍ରତିବିମ୍ବ । ତେଣୁ 'ପରୋକ୍ଷ ପ୍ରଣୟ' କବିତାରେ ପ୍ରଣୟିନୀଙ୍କୁ ପାସୋରି ଅନ୍ୟ ପ୍ରଣୟିନୀ ପ୍ରତି ହୃଦୟର ଆକର୍ଷଣ ସମ୍ପର୍କରେ କବି ଲେଖିଛନ୍ତି—

"ଭ୍ରମର ଦୀପଶିଖା ଲିଭିଛି ପ୍ରାଣେ,
ବିରାଗେ ପ୍ରାଣବନ୍ଧୁ,
ନ ପିଏ ଭବ ମଧୁ
ଝରଇ ଆନ ଫୁଲେ ଯିବାର ଟାଣେ;
ଭ୍ରମର ଦୀପ-ଶିଖା ଲିଭିଛି ପ୍ରାଣେ ।"

ଏଇ ପ୍ରସଙ୍ଗରେ ଉର୍ଦ୍ଦୁ କବିଙ୍କର ଗୋଟିଏ କ୍ଷୁଦ୍ର କବିତା ସ୍ୱତଃ ମନକୁ ଆସୁଛି । ପ୍ରେମର ସ୍ଥାୟିତ୍ୱ ସମ୍ପର୍କରେ ସେ ପ୍ରଶ୍ନ କରିଛନ୍ତି—

"ସବନମ୍ ଗିରେ ପାହାଡ଼ୋଁପର୍
ମୋତି ବନେ ଔର୍ ଟୁଟେ,
ଐସାଭି କ୍ୟା ମୋହବତ୍
ଯୋ ଦିଲ୍ ଲଗେ ଔର ଟୁଟେ ?"

ପ୍ରେମ କାନ୍ଥ କାଚର ଏକ କଣ୍ଢେଇ ନୁହେଁ, ସାମାନ୍ୟ ଅସାବଧାନତାବଶତଃ ଯାହା ଭାଙ୍ଗି ଚୂରମାର ହୋଇଯିବ । ତେଣୁ ପ୍ରେମର ସ୍ଥିରତା ଓ ଶୁଚିତା ପ୍ରଦର୍ଶନ କରି ସେକସ୍‌ପୀୟର ତାଙ୍କର ଗୋଟିଏ ସନେଟ୍‌ରେ ଲେଖିଛନ୍ତି—

"Love is not love,
Which alters when it alteration finds,
Or, bends with the remover to remove.
O, no, it is an ever fixed mark."

ମାନସିଂହଙ୍କର ପ୍ରେମ ଅଧିକାଂଶ କ୍ଷେତ୍ରରେ ରୂପଜ ଓ ଏହାର ଅଭିବ୍ୟକ୍ତି ଉଚ୍ଛୃଙ୍ଖଳ । ତେଣୁ ବାସନା (passion)ର ବହ୍ନିବଳୟ ମଧ୍ୟରେ ପ୍ରେମ ଲଘୁପକ୍ଷ ପତଙ୍ଗ ପରି ପୋଡ଼ି ମରିଛି । ପୁନଶ୍ଚ ବାସନାର ଯେଉଁ ଆବେଗମୟୀ ସ୍ୱର ତାଙ୍କର ପ୍ରେମ-କବିତାରୁ ଶୁଣାଯାଏ, ତାହା ଯେମିତି ଏକକ ତନ୍ତ୍ରୀ ଏକତାରାର ସ୍ୱର; ବହୁ ବିଚିତ୍ର ରାଗିଣୀର ଅର୍କେଷ୍ଟ୍ରା ନୁହେଁ । 'ତରୁଣ କବିର ଆଶା', 'ଦୂରେ ରହ', 'ଏଇ

ସ୍ୱପ୍ନକାରତଳେ' ଓ 'ଇସ୍ତମୀ କଣୋଗ୍ନ' ପ୍ରଭୃତି କବିତାରେ ବାସନାର ଶ୍ରୀବୃଦ୍ଧି ଲକ୍ଷ୍ୟ କରାଯାଏ । କିନ୍ତୁ ତାହା ବୈଚିତ୍ର୍ୟ ଶମଣ୍ଡିତ ନୁହେଁ ।

''ସ୍ୱର୍ଣ୍ଣ ଶସ୍ୟଶ୍ରେ ନବ ଧାନ୍ୟ ଲତା ସମା
ମୁକ୍ତବେଣୀ ହୋଇ ଉଭା ହେଲେ ରେ ଉତ୍ତମା

ମୁଗଧ, ଏ ରୂପ-ପୂଜାରୀ
ଚୁମ୍ବିଯାଏ, ଆନ ପୂଜା ଜାଣିନାହିଁ ପାରି ।
ଚୁମ୍ବେ ଚକ୍ଷୁ, ଚୁମ୍ବେ ଓଷ୍ଠ, ଚୁମ୍ବଇ କପୋଳ
ଚୁମ୍ବେ କଣ୍ଠ, ବାହୁ, ଊରୁ କୁସୁମଯୁଗଳ,

ଚୁମ୍ବେ କୁଞ୍ଚିତ କୁନ୍ତଳ
କେ କସ କହିବ ? ନର, ଦାସ ବା ରୂପର ?''

ଏହି କବିତା ସହିତ 'ତରୁଣ କବିର ଆଶା'ରୁ ଉଦ୍ଧୃତ ନିମ୍ନୋକ୍ତ କବିତାଂଶଟି ମିଳାଇ ପଢ଼ିଲେ ବାସନାର ଶ୍ରୀବୃଦ୍ଧି ସମ୍ପର୍କରେ ପାଠକେ ଯଥାର୍ଥ ଭାବରେ ଅବହିତ ହୋଇପାରିବେ ।

''ଅସର ଗୁଧିମା ଯାମିନୀ ତଳେ
ସେ ଶୁଧ କୋମଳ ଜଘନ ପରେ
ଜୀବନ ମରଣ ଯାଆନ୍ତୁ ଭୁଲି
ସପନ ପରି ।''

ଉଦ୍ଧୃତ କବିତାଂଶମାନଙ୍କରୁ ବାସନାର ଉତ୍ତାପ ଅନୁଭୂତ ହୁଏ । କିନ୍ତୁ ବାସନାର ସେଇ ବଳୟ ମଧ୍ୟରେ ପାଠକର ମନ ବନ୍ଦୀ ହୋଇ ରହିଯାଏ । ଚେତନାର ଊର୍ଦ୍ଧ୍ୱାୟନ (sublimation) ପାଇଁ ସେଠାରେ ଉପାଦାନର ଏକାନ୍ତ ଅଭାବ । ପାଠକମାନଙ୍କର ଅବଗତି ନିମନ୍ତେ ଶ୍ରୀ ପାଣ୍ଡୋଙ୍କ କବିତାର ଅଂଶବିଶେଷ ଉଦ୍ଧାର କରିବାର ଲୋଭ ସମ୍ବରଣ କରିପାରିଲି ନାହିଁ । ବସ୍ତୁତଃ ସେଗୁଡ଼ିକର ପ୍ରାସଙ୍ଗିକ ଭୂମିକା ମଧ୍ୟ ବିଦ୍ୟମାନ । ନିମ୍ନୋକ୍ତ କବିତାଂଶଗୁଡ଼ିକ ଉପରେ ଉଦ୍ଧାର କରାଯାଇଥିବା କବିତାର ସମଗୋତ୍ରୀୟ ହେଲେ ମଧ୍ୟ ଉପରର

କବିତାଗୁଡ଼ିକରେ ଥିବା ଆଲୋଚ୍ୟ ଅଭାବ ପାଠକମାନେ ନିମ୍ନୋକ୍ତ କବିତାଂଶ-ଗୁଡ଼ିକରୁ ପାଇପାରନ୍ତି । *

"ସକଳ ଜଗତ          ଦୂର ଓ ନିକଟ
ପାସୋରି ସେ ମହା-କ୍ଷଣେ
ଶୁଣୁଥାଇ ମହା-          ସଙ୍ଗୀତ ପ୍ରିୟା
କଙ୍କଣ କଣକଣେ ।"

ମାନସିଂହଙ୍କର ଉକ୍ତ କବିତାଂଶ ଓ ଅନ୍ୟ କେତେକ କବିତାଂଶରେ ବାସନାର କମନୀୟ କାନ୍ତି ପ୍ରକାଶ ପାଇଥିଲେ ମଧ୍ୟ ସେଗୁଡ଼ିକ ସମ୍ପୂର୍ଣ୍ଣ କବିତା-

---

* (୧) "ଚମ୍ପାଫୁଲ ମହକରେ ଏଡ଼େ ସେ ଯେ ଦାରୁଣ କୁହୁକ
ରକ୍ତେ ଯାଏ ନିଆଁ ଲଗି, ଓଠ ଆଉ ନିଶ୍ୱାସରେ ନିଆଁ
ଓଠ ଆଉ ନିଶ୍ୱାସରେ ନିଆଁ ସେ ଯେ ଦେହେ ଦେହେ
ବିଜୁଳି ଚମକ
ବିଜୁଳି ଚମକ ସେ ଯେ ବଣ ନିଆଁ ସବୁ ଯାଏ ଛିନ୍ନ ଭିନ୍ନ ହୋଇ
ପୃଥିବୀ ଓଠରେ ଲୋଟି ପୋଡ଼ିଯାଏ ଜଳିଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।"
ଚମ୍ପାଫୁଲ—ଶ୍ରୀ ବୀରପ୍ରସାଦ ମହାନ୍ତି

(୨) "ଆକାଶ,
ଆଲିଙ୍ଗନ କର ମୋତେ,
ଧରଣୀ !
ଚୁମ୍ବନ କର ମୋର ଶିର ।
ତା'ର କେଶର ଆକାଶରେ
ମୁଁ ଆଜି ଫୁଟାଏ ସହସ୍ର ତାରା
ଚୁମ୍ବନର !
ତା'ର ବୁକୁର ବୀଣାରେ
ମୁଁ ଫୁଟାଏ ସହସ୍ର ସ୍ୱର
ସ୍ପର୍ଶର ।
ତା'ର ଅଚଳ ମନ୍ଦିରରେ
ମୁଁ ଦିଏ ପୁଷ୍ପାଞ୍ଜଳି
ସହସ୍ର ବର
କାମନାର—"
( 'ଇନ୍ଦ୍ରାୟୁଧ' ପୁସ୍ତକରୁ—ଦୁର୍ଗାଚରଣ ପରିଡ଼ା )

ମାନଙ୍କର କ୍ଷୁଦ୍ର ଅଂଶବିଶେଷ ମାତ୍ର । ତେଣୁ କବିତାର ସାମଗ୍ରିକ ଆବେଦନ-କ୍ଷେତ୍ରରେ ଏହି କବିତାଂଶମାନଙ୍କର ଭୂମିକା ଗୌଣ । ସୁତରାଂ ଚେତନାର ଊର୍ଦ୍ଧ୍ୱାୟନ ସଂଘଟନ କରିବାରେ କବିତାଗୁଡ଼ିକ ସଫଳ ହୋଇପାରି ନାହିଁ । କିନ୍ତୁ ସର୍ବଶ୍ରୀ ଗୁରୁପ୍ରସାଦ ମହାନ୍ତି, ଦୁର୍ଗାଚରଣ ପରିଡ଼ା, ହରପ୍ରସାଦ ମିଶ୍ର ଓ ପ୍ରମୋଦ ମୁଖୋପାଧ୍ୟାୟ ପ୍ରଭୃତିଙ୍କ କବିତାଂଶମାନଙ୍କରେ ବାସନାର ସ୍ୱରୂପ ଚମତ୍କାର ଭାବରେ ଯେପରି ପ୍ରକାଶିତ, ମନରେ ଏକ ଶାନ୍ତ ଭାବନାର ସଞ୍ଚାର କରି ଚେତନାର ଊର୍ଦ୍ଧ୍ୱାୟନରେ ସାହାଯ୍ୟ କରିବାରେ ସେଗୁଡ଼ିକର ଭୂମିକା ସେହିପରି ଅନସ୍ୱୀକାର୍ଯ୍ୟ । ସେହିପରି 'Doctor Fandus' ନାଟକରେ ମାର୍ଲୋ ବହୁପରିଚିତ ଏକ ପ୍ରେମୋପାଖ୍ୟାନ ମଧ୍ୟରେ ବାସନାର ଏକ ମନୋରମ ଚିତ୍ର ପ୍ରକାଶ କରି ଲେଖିଛନ୍ତି—

Was this the face that launched
Thousand sheeps, And borned
The topless tower of Illume
O' sweet Helen make me
Immortal with a kiss."

ମାନସିଂହଙ୍କ କବିତାର ଆଙ୍ଗିକ ସମ୍ପର୍କରେ ପୂର୍ବରୁ ଯତ୍‌ସାମାନ୍ୟ ଆଲୋଚନା କରାଯାଇଛି । ଆଙ୍ଗିକ ମୂଲ୍ୟ ବିଚାର ବେଳେ କବିତାର ସାମଗ୍ରିକ ଆବେଦନ ସମ୍ପର୍କରେ ସଚେତନ ହେବାକୁ ପଡ଼େ । କାରଣ ଆଙ୍ଗିକ ବିଭବର ଉତ୍କର୍ଷ ହେତୁ କଳା କାଳୋତ୍ତୀର୍ଣ୍ଣ ହୋଇପାରେ; ଆଙ୍ଗିକ ବୈଚିତ୍ର୍ୟ ଲଘୁ ନୁହେଁ । କବି ମାନସିଂହଙ୍କ ପ୍ରେମ-କବିତାରେ ଗୋଟିଏ ଗୋଟିଏ ଆବେଗମୟୀ ମୁହୂର୍ତ୍ତର

---

(୩) "ଏ ଜୀବନେ, ସତ୍ୟ ଏଇ ନାନାମୁଖୀ
ବାସନା-ବିଦ୍ୟୁତ୍ !
କିନ୍ତୁ ପ୍ରେମ ସତ୍ୟ ତର
ରୂପ-ଅପରୂପ ।"
( ପ୍ରେମେର କଯେକ୍‌ଟି ଅନୁଭୂତ—ହରପ୍ରସାଦ ମିଶ୍ର )

(୪) "ମଧୁରିବାତକା ହାତେ ତୁଲେ ଦିକ୍ ମଧୁର କାଲେର୍
ଦେହ-ମନ ଲେକ ସୁଵ ଆନନ୍ଦେର ଶୁଧୁ ଆନନ୍ଦେର୍
× × ×
ପ୍ରେମେର ମନ୍ଦିରେ ତରଙ୍ଗାୟିତ ହେ ମିଥୁନ-ମହିମା
ବନନାୟ ଊର୍ଦ୍ଧ୍ୱଗାମୀ ହେଲେ

ସଙ୍ଗୀତମୟୀ ଉଚ୍ଛ୍ୱାସ ପ୍ରକାଶ ପାଇଛୁ । କିନ୍ତୁ ଉଚ୍ଛ୍ୱାସ, sentiment ପ୍ରଭୃତି କବିତାରେ ବଡ଼ କଥା ନୁହେଁ । 'ଧୂପ'ରେ ପରକୀୟା ପ୍ରୀତି ଚିତ୍ର ପ୍ରଦର୍ଶିତ । ଅଥଚ ପରକୀୟା ପ୍ରୀତି ଏଠାରେ ଆବେଗ, ଉଚ୍ଛ୍ୱାସ ଓ ଶୃଙ୍ଗାର ଅନୁଚିନ୍ତା ମଧ୍ୟରେ ଆବଦ୍ଧ ରହିଯାଇଛୁ ।

ବିଦ୍ୟାପତି, ଚଣ୍ଡୀଦାସ ଓ ଜୟଦେବ ପ୍ରଭୃତି କବିମାନେ ବୈଷ୍ଣବ ପଦାବଳୀ ମଧ୍ୟରେ ପରକୀୟା ପ୍ରୀତି ଚିତ୍ର ପ୍ରଦର୍ଶନ କରିଯାଇଛନ୍ତି । ସେମାନଙ୍କ କବିତାରେ ମଧ୍ୟ ପରକୀୟା ପ୍ରୀତିର ଆବେଗ, ଉଚ୍ଛ୍ୱାସ ପ୍ରଭୃତି ରହିଛି । ତାହା ସହିତ ପ୍ରେମର ଅନ୍ୟାନ୍ୟ ଦିଗଗୁଡ଼ିକୁ ସେମାନେ ଆଲୋକିତ କରିଯାଇଛନ୍ତି । ପରକୀୟା ପ୍ରୀତି ବର୍ଣ୍ଣନା ମାଧ୍ୟମ ମଧ୍ୟରେ ପାଠକର ଚେତନାକୁ ସେମାନେ ଅଥର୍ବ କରିଦେଇ-ନାହାନ୍ତି ବରଂ ଚେତନାର ଊର୍ଦ୍ଧ୍ୱାୟନ ପାଇଁ ଯେ ଗାଇଛନ୍ତି ଉପାଦାନ । ରଜକିନୀ ରାମୀର ରୂପ ବର୍ଣ୍ଣନା କରିବାକୁ ଯାଇ ଚଣ୍ଡୀ ଦାସ ଲେଖିଛନ୍ତି—'ରଜକିନୀ ରାମୀର ରୂପ ଏକ କିଶୋରୀର ରୂପ ପରି, ଯେଉଁ ରୂପରେ କାମର ଗନ୍ଧ ପର୍ଯ୍ୟନ୍ତ ନାହିଁ । ପୁଣି ରାମୀର ପ୍ରେମ ନିକଷିତ ହେମ ସଦୃଶ ।' (୧) ବସ୍ତୁତଃ ରାମୀ ରୂପ ବର୍ଣ୍ଣନା ମଧ୍ୟରେ କିଶୋରୀ ରାଧାଙ୍କର ରୂପବିଭବର ବ୍ୟଞ୍ଜନା ଏଠାରେ ପ୍ରକାଶ ପାଇଛୁ । ପ୍ରେମ ସମ୍ପର୍କରେ ଚଣ୍ଡୀ ଦାସ ଅନ୍ୟ ଏକ କବିତାରେ ରାଧାଙ୍କୁ ସମ୍ବୋଧନ କରି କହିଛନ୍ତି—'ସୁଖ ଓ ଦୁଃଖ ଆଲୋକ ଓ ଅନ୍ଧକାର ପରି ଦୁଇ ଭାଇ । ହେ ବିନୋଦିନୀ ! ସୁଖ ଲାଗି ଯେ ପ୍ରୀତି କରେ ସେ ଏକା ଦୁଃଖ ଭୋଗ କରେ ।' (୨) ସେହିପରି ବିଦ୍ୟାପତି ନିଖିଳ ପ୍ରେମ ଅନୁଭୂତିର ଏକ ବାସ୍ତବ ଚିତ୍ର ପାଠକ ସମ୍ମୁଖରେ ତୋଳିଧରି ଏକ ବହୁପଠିତ କବିତାରେ କହିଛନ୍ତି—"ଆଜନ୍ମରୁ ମୁଁ ରୂପ ଦେଖୁଛୁ, ତଥାପି ନୟନ ତୃପ୍ତ ହେଲା ନାହିଁ । ସେହି ମଧୁର ସ୍ୱର-ମୂର୍ଚ୍ଛନା କାନ ଆଜନ୍ମରୁ ଶୁଣୁଛୁ, ତଥାପି ତୃଷା ମେଣ୍ଟିଲା ନାହିଁ । (୩) ଏହିସବୁ ପଦାବଳୀକାର-

---

(୧) "ରଜକିନୀ-ରୂପ କିଶୋରୀ ସ୍ୱରୂପ କାମ ଗନ୍ଧ ନାହିଁ ତାୟ
ରଜକିନୀ-ପ୍ରେମ ନିକଷିତ ହେମ ବଡ଼ୁ ଚଣ୍ଡୀ ଦାସ ଗାୟ ।"

(୨) "ଚଣ୍ଡୀ ଦାସ ବାଣୀ ଶୁନ ବିନୋଦିନୀ
ସୁଖ ଦୁଃଖ ଦୁଇ ଭାଇ
ସୁଖ ଲାଗି ଯଖୀ ପୀରିତି ଯେ କରେ
ଦୁଃଖ ଭୋଗଇଟି ସେଇ ।"

(୩) "ଜନମ ଅବଧି ହାମ ରୂପ ନେହାରନୁ
ନୟନ ନ ତିରପିତ ଭେଲ,
ଶୋଇ ମଧୁର ବୋଲ ଶ୍ରବନ ହୁଁ ଶୁନନୁ
ଶ୍ରୁତିପଥେ ପରଶ ନା ଗେଲ ।"

ମାନଙ୍କର ଭାବଲୋକୀର୍ଣ୍ଣ କଳା ସଂସ୍ପର୍ଶରେ ଆସିଲେ ପାଠକ ମନରେ ସୃଷ୍ଟି ହୁଏ ଭାବାନୁଭବ । ଚେତନା ହୁଏ ଅନ୍ତର୍ମୁଖୀ ଓ ପ୍ରାଣ ଅପାର୍ଥିବ ପୁଲକରେ ପୂର୍ଣ୍ଣ ହୋଇଯାଏ । କଳାଦୃଷ୍ଟିରୁ କବିତାର ସାର୍ଥକତା ଏଇଠାରେ ହିଁ ନିହିତ ।

ମାନସିଂହଙ୍କର ପ୍ରେମ-କବିତାରେ ଅନୁଭୂତିର ସ୍ବାକ୍ଷର ଉତ୍କୀର୍ଣ୍ଣ ହୋଇଛି, ସନ୍ଦେହ ନାହିଁ । କିନ୍ତୁ ସେହି ଅନୁଭୂତି ଚରିତ୍ରତାର ସ୍ତରକୁ ଉତ୍ତୀର୍ଣ୍ଣ ହୋଇପାରି-ନାହିଁ । କାରଣ ମାନସିଂହ ପ୍ରେମ କବିତାରେ ଅନୁଭୂତିର ଜଟିଳତା (complexity) ଓ ଗଭୀରତା ନାହିଁ । ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ନେଇ ଆବେଗର ଆତିଶଯ୍ୟ ମଧ୍ୟରେ ପ୍ରେମକୁ ସେ ଅଭିବ୍ୟକ୍ତ ଦେଇଛନ୍ତି, ସେ ଆବେଗ ମଧ୍ୟରେ କିନ୍ତୁ ମୌଳିକତା ନାହିଁ । ତେଣୁ ଅଧିକ ପରିମାଣରେ sentiment ଏ କ୍ଷେତ୍ରରେ ପ୍ରକାଶ ପାଇଛି । ସେଇ ହେତୁ ତରୁଣ ମନ ନିକଟରେ ତାଙ୍କ ପ୍ରେମ କବିତାର ଆବେଦନ ଏତେ ତୀବ୍ର । ଅନ୍ୟ ପକ୍ଷରେ ପରିଣତ ମନ ନିକଟରେ ଏ ଶ୍ରେଣୀର କବିତାର ଆବେଦନ ଅତି କ୍ଷୀଣ । ବିଭିନ୍ନ ବୟସ, ବିଭିନ୍ନ ମାନସିକ ଅବସ୍ଥା ଓ ଭିନ୍ନ ଭିନ୍ନ ଅନୁଭୂତିକୁ କବିତା ଯଦି ଖୋରାକ ଯୋଗାଇପାରେ, ନିର୍ବିବାଦରେ ତାହା ହିଁ ଉଚ୍ଚାଙ୍ଗ କଳାମଣ୍ଡିତ କବିତା । ମାନସିଂହଙ୍କର ପ୍ରେମ-କବିତା ଏ ଗୌରବର ଅଧିକାରୀ ନୁହେଁ ।

କବିତାର ସମୀକ୍ଷା ସମୟରେ ଦର୍ଶନ ସମ୍ପର୍କିତ ଦୃଷ୍ଟିଭଙ୍ଗୀ ନେଇ ଆଲୋଚନା ନ କଲେ କବିତାର ଯଥାର୍ଥ ସ୍ବରୂପ ଉଦ୍‌ଘାଟିତ ହୋଇପାରେ ନାହିଁ । ତଥାପି ମନରେ ସ୍ବାଭାବିକ ଭାବରେ ଗୋଟିଏ ପ୍ରଶ୍ନ ଉଠେ—ଦର୍ଶନ ଓ ରହସ୍ୟବାଦ କବିତା ମଧ୍ୟରେ ଗର୍ଭିତ କରିବାର କି ଆବଶ୍ୟକତା ଅଛି ? ସ୍ବେଚ୍ଛାକୃତ କୃତ୍ରିମ କରିବାରେ କେଉଁ କବିତ୍ବ ଶକ୍ତି ବା ପ୍ରକାଶ ପାଏ ? ସଚେତନ ଭାବରେ ଟାଣିଓଟାରି କବିତା ମଧ୍ୟରେ ଦର୍ଶନ ଓ ରହସ୍ୟବାଦକୁ ପ୍ରବେଶ କରାଇବା ଫଳରେ କବିତାର ଆବେଦନ କ୍ଷୀଣ, ଦୁର୍ବଳ ଓ ଉଦ୍ଭଟ ମଧ୍ୟ ହୋଇଯିବାର ଆଶଙ୍କା ରହିଛି । କିନ୍ତୁ ପ୍ରତିଭାଧର କବି ପକ୍ଷରେ ସେ ଆଶଙ୍କା ନିରର୍ଥକ । ବସ୍ତୁତଃ ଦର୍ଶନ ଦୃଷ୍ଟି ନ ଥାଇ କୌଣସି କବି ଶ୍ରେଷ୍ଠ କବିର ସମ୍ମାନ ଯେପରି ପାଇପାରନ୍ତି ନାହିଁ, ଦର୍ଶନଭାବ-ବର୍ଜିତ କବିତା ସେହିପରି ଶ୍ରେଷ୍ଠ କବିତାର କୋଠୀକୁ ଉତ୍ତୀର୍ଣ୍ଣ ହୋଇଥିବାର ଦେଖାଯାଏ ନାହିଁ । ଯଥାର୍ଥରେ କବି କଲେରିଜ କହିଛନ୍ତି—

> "He prayth best
> Who loveth best."

ପ୍ରେମ-କବିତାର ରହସ୍ୟବାଦ ଓ ଦର୍ଶନ କବିତାକୁ ସାର୍ବଜନୀନତାର ସିଂହାସନରେ ଅଭିଷିକ୍ତ କରିପାରେ । ଫଳରେ ସବୁ ଶ୍ରେଣୀର ଓ ସବୁ ବୟସର

ପାଠକ ମନରେ ସର୍ବକାଳୀନ ଆବେଦନ ସୃଷ୍ଟି କରିବାର ଯୋଗ୍ୟତା ଅର୍ଜନ କରେ । ମାନସିଂହଙ୍କର ପ୍ରେମ-କବିତାରେ ରହସ୍ୟବାଦ ଓ ଦର୍ଶନଦୃଷ୍ଟି — ଉଭୟର ଅଭାବ । ଦର୍ଶନଦୃଷ୍ଟିସମ୍ବଳିତ ବହୁ କବିତା କବି ମାନସିଂହଙ୍କ ଦ୍ୱାରା ସ୍ୱତନ୍ତ୍ର ଭାବରେ ଅବଶ୍ୟ ରଚିତ । ତାଙ୍କର 'ନମସ୍କାର' କବିତା ଗ୍ରହଟି ତ ବିଶ୍ୱବ୍ରହ୍ମାଣ୍ଡର ସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ନିବେଦିତ, କବିଙ୍କ ଜୀବନର କରୁଣ ଅଶ୍ରୁ-ଅର୍ଘ୍ୟ । କିନ୍ତୁ ତାଙ୍କର ପ୍ରେମ-କବିତା ଅନ୍ତରାଳରେ ଦର୍ଶନ ଓ ରହସ୍ୟବାଦର ପ୍ରଚ୍ଛନ୍ନ ଫଲ୍‌ଗୁଧାରା ପ୍ରବାହିତ ହୋଇଥିବାର ସନ୍ଧାନ ଏ ଲେଖକ ପାଇନାହିଁ । ସେ ଚିଏ କବିତାରେ ପ୍ରିୟତମଙ୍କୁ ସମ୍ବୋଧନ କରି ରବୀନ୍ଦ୍ରନାଥ କହୁଛନ୍ତି :—

"ନାଇଁ ବା ବୁଝିଲେ ତୁମି ମୋରେ
ଚିରକାଲ ଚୋଖେ ଚୋଖେ ନୂତନ-ନୂତନାଲୋକେ
ପାଠ କରୋ ରାତ୍ରିଦିନ ଧରେ,
ବୁଝାଯାୟ ଆଧୋପ୍ରେମ, ଅର୍ଦ୍ଧଖାନା ମନ—
ସମସ୍ତକେ ବୁଝେଛେ କଜନ ॥" ( ଦୁର୍ବୋଧ—ରବୀନ୍ଦ୍ରନାଥ )

ଉଦ୍ଧୃତାଂଶ ମଧ୍ୟରେ ପ୍ରେମ-ସମ୍ପର୍କିତ ଏକ ଚିରନ୍ତନୀ ପ୍ରଶ୍ନବାଚୀ ଲକ୍ଷ୍ୟ କରିବାର କଥା । ଉଦ୍ଧୃତାଂଶର ଶେଷ ପଂକ୍ତି ଦୁଇଟିରେ ଚିରରହସ୍ୟମୟ ମନର ସନ୍ଦେହ ସମ୍ପର୍କିତ ଏକ ସ୍ପଷ୍ଟୀକରଣ କରାଯାଇଛି । ପ୍ରେମିକ-ପ୍ରେମିକାଙ୍କ ମଧ୍ୟରେ ପରସ୍ପରର ମନ ପାଇବା ପାଇଁ ବୁଝାମଣାର ପ୍ରୟୋଜନ ଅନସ୍ୱୀକାର୍ଯ୍ୟ । ଅଥଚ ସଂସାରର ସବୁଠାରୁ ଦୁଃସାଧ୍ୟ ଘଟଣାମାନଙ୍କ ମଧ୍ୟରେ ମନକୁ ବୁଝିବା ଏକ ଦୁଃସାଧ୍ୟତମ ବ୍ୟାପାର । ତେଣୁ ଆମେ ଯେତେବେଳେ ଜାଣୁ ଯେ ପ୍ରେମରୁ ଅର୍ଦ୍ଧେକ ବୁଝିହୁଏ, ମନର ଅର୍ଦ୍ଧାଂଶ ବୁଝିବା ସମ୍ଭବ, ପୁଣି କେହି କେବେ ସମ୍ପୂର୍ଣ୍ଣ ମନକୁ ବୁଝିନାହିଁ, ଆମକୁ ସାନ୍ତ୍ୱନା ମିଳେ । କିନ୍ତୁ କବି ମାନସିଂହ ବହୁ ପ୍ରେମ କବିତାର ସ୍ରଷ୍ଟା ହେଲେ ମଧ୍ୟ ତାଙ୍କର ଏଇ ଶ୍ରେଣୀର ସୃଷ୍ଟି ସମ୍ଭାର ରହସ୍ୟବାଦ ଓ ଦର୍ଶନର ଅଲୌକିକ ଆଲୋକସ୍ପର୍ଶ ପାଇନାହିଁ । ସେଗୁଡ଼ିକରେ ଲୌକିକ ଅନୁଭୂତିର ବର୍ଣ୍ଣାଢ୍ୟ କାରୁକାର୍ଯ୍ୟ ତେଣୁ ସବୁ ଶ୍ରେଣୀର ବିଭିନ୍ନ ବୟସର ଓ ଭିନ୍ନ ଭିନ୍ନ ରୁଚିର ରସଗ୍ରାହୀ ପାଠକଙ୍କୁ ତୃପ୍ତି ଦେବାରେ ସଫଳ ହୋଇଛି ।

ପଶୁ ଓ ମନୁଷ୍ୟର ମୌଳିକ ପ୍ରବୃତ୍ତିମାନଙ୍କ ମଧ୍ୟରେ ତିନୋଟି ମୁଖ୍ୟ ଆହାର, ନିଦ୍ରା ଓ ମୈଥୁନ । କିନ୍ତୁ ଏଇ ମୌଳିକ ପ୍ରବୃତ୍ତିମାନଙ୍କୁ ନିୟନ୍ତ୍ରଣ କରିବାର ସ୍ୱାଭାବିକ ଅଧିକାର ସୃଷ୍ଟିକର୍ତ୍ତାଙ୍କଠାରୁ ପାଇଛି କେବଳ ମନୁଷ୍ୟ । ଅନେକ ସମୟରେ, ତ ଅସଂଯତ ବ୍ୟକ୍ତିବିଶେଷଙ୍କୁ ସେହି ହେତୁ ଆମେ ପଶୁ ବୋଲି କହି ଭର୍ତ୍ସନା କରିଥାଉ । ସୁତରାଂ ମନୁଙ୍କ ପୂର୍ବ ଅପେକ୍ଷା ମନର ଛବି ଭାବରେ ମନୁଷ୍ୟ ଶବ୍ଦର ତାତ୍ପର୍ଯ୍ୟ ଏଇ ଲେଖକର ବିଚାରରେ ଅଧିକ ।

ଯୌନକ୍ଷୁଧା ନେଇ ପଶୁର ମୁଣ୍ଡବ୍ୟଥା ହୁଏନା; କାରଣ ପଶୁର ଏ କ୍ଷୁଧା ଦୈହିକ । ମନୁଷ୍ୟ କିନ୍ତୁ ଏଥିପାଇଁ ପାଗଳ ହୁଏ । କେବେ କେମିତି ପଶୁ ପାଲଟିଯାଏ ଓ ବେଳେ ବେଳେ ଦେବତା ମଧ୍ୟ ହୋଇପାରେ । ଏସବୁର ଉତ୍ସ ଆମର ମନ । ମନ ପୁଣି ଅଦ୍ଭୁତ—ଯାହାର ଅର୍ଦ୍ଧାଂଶ ବୁଝିହୁଏ । ଅଥଚ ମେଟେ ଦେଖିହୁଏ ନାହିଁ । ଫଳରେ ମନୁଷ୍ୟ ପକ୍ଷରେ ଯୌନ କ୍ଷୁଧା ଏକ ଗୋପନୀୟ, ଦୁର୍ବାର ଓ ଅପରିହାର୍ଯ୍ୟ ସମସ୍ୟା ହୋଇ ଦେଖା ଦିଏ । ମନୁଷ୍ୟର ଏଇ କ୍ଷୁଧା ଉଭୟ ଦୈହିକ ଓ ମାନସିକ ହେଲେ ମଧ୍ୟ ମାନସିକ କ୍ଷୁଧାର ମାତ୍ରା ଅଧିକ । ସେଇଥିପାଇଁ ମାନବିକ ପ୍ରେମ ଏତେ ବୈଚିତ୍ର୍ୟମଣ୍ଡିତ, ସେଇଥିପାଇଁ ମାନବିକ ପ୍ରେମକୁ କେନ୍ଦ୍ର କରି ଅସଂଖ୍ୟ ପ୍ରେମ କାବ୍ୟ ଓ କବିତାର ସୃଷ୍ଟି ।

ନାରୀ ଓ ପୁରୁଷ—ଉଭୟ ଏକ ଏକ ଅସମ୍ପୂର୍ଣ୍ଣ ସୃଷ୍ଟି । ପୂର୍ଣ୍ଣତାର ଉପଲବ୍ଧି ଲାଗି ପୁରୁଷ ନାରୀର ସାନ୍ନିଧ୍ୟ ଓ ସମ୍ଭୋଗ କାମନା କରେ । ଏଇ କାମନା ବା ତୃଷ୍ଣାହିଁ ଜୀବନର ଯାବତୀୟ ବୈଚିତ୍ର୍ୟ ଓ ଭାବପ୍ରବଣତାର ପ୍ରସୂତି । ଏଇ ତୃଷ୍ଣା କେତେବେଳେ ରୂପ ଚର୍ଯ୍ୟାରେ, କେତେବେଳେ ଜ୍ଞାନ-ଚର୍ଯ୍ୟାରେ ପୁଣି କେତେବେଳେ ବା ଭଗବତ୍-ଚର୍ଯ୍ୟାରେ ଭିନ୍ନ ଭିନ୍ନ ଭୂମିକା ଗ୍ରହଣ କରିଥାଏ । ଜୀବନ-ଗ୍ରନ୍ଥର ଏକ ମୁଖ୍ୟ ଓ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ହେଉଛି ପ୍ରେମ—ବିଶେଷକରି ଜଣେ କବିଙ୍କ ପକ୍ଷରେ । ପ୍ରେମାନୁଭବନାରୁ କବି-କଣ୍ଠରୁ ପ୍ରଥମେ କବିତା ସୃଷ୍ଟି ହୋଇଥିବାର ବହୁ ଦୃଷ୍ଟାନ୍ତ ରହିଛି । ମନୋବିଜ୍ଞାନ ମତରେ ଜୀବନର ସମସ୍ତ ସାଧନା ଓ ସଫଳତାର କେନ୍ଦ୍ରରେ ପ୍ରେମର ପ୍ରଚ୍ଛନ୍ନ ବ୍ୟଞ୍ଜନା ବିଦ୍ୟମାନ । କି କବି, କି କଳାକାର, କି ରାଜନୀତିଜ୍ଞ, କି ଦାର୍ଶନିକ, ପ୍ରତ୍ୟେକର ଜୀବନ ନେପଥ୍ୟରୁ ଏଇ ସତ୍ୟର ଶଙ୍ଖନାଦ ଶୁଣାଯାଏ ।

ଧୂନଷ୍ଟ ଜୀବନର ଯାତ୍ରାପଥକୁ ପ୍ରେମ ପଲ୍ଲବିତ କରିପାରେ, ପୁଷ୍ପିତ କରିପାରେ । ଅତୀତର ଅନ୍ଧକାରଶାଳା ଓ ଭବିଷ୍ୟତର ଶେଷଶଯ୍ୟା ଜୀବନର ଏଇ ଦୁଇ ସୀମାନ୍ତ ମଧ୍ୟରେ ପ୍ରେମ ଏକ ସୁରମ୍ୟ ସେତୁ ନିର୍ମାଣ କରିପାରେ । ଜୀବନର ଲକ୍ଷ୍ୟସ୍ଥଳରେ ନିର୍ବିଘ୍ନରେ ପହଞ୍ଚିବାପାଇଁ ପ୍ରେମ ଯୋଗାଇପାରେ ପାଥେୟ । କିନ୍ତୁ ଜୀବନର ଯାତ୍ରାପଥରେ କେତେଜଣଙ୍କୁ ବା ତାହା ମିଳେ । ଅଧିକାଂଶ ପ୍ରେମ କ'ଣ ବୁଝନ୍ତି ନାହିଁ—ଦେହ ଓ ମନକୁ ଆଶ୍ରୟ କରି ଜୀବନଟା ବିତାଇଦିଅନ୍ତି । କେତେକ ପୁଣି ରୂପକୁ ପ୍ରେମର ଶେଷ ସତ୍ୟ ମନେକରି ପ୍ରହେଳିକାର ବଳୟ ମଧ୍ୟରେ ବନ୍ଦୀ ହୋଇ ରହିଯାଆନ୍ତି । ରାଜନୀତିରେ ଦଳବଦଳ ପରି ପ୍ରେମକ୍ଷେତ୍ରରେ ଦେହ-ବଦଳ ଉପରେ ଅନେକେ ପୁଣି ଗୁରୁତ୍ୱ ଆରୋପ କରୁଥିବାର ଦେଖାଯାଏ । କିନ୍ତୁ ଏସବୁ ପ୍ରହେଳିକାରେ ଘଟେ ପୂର୍ଣ୍ଣଚ୍ଛେଦ ପଡ଼େ । ଦୈହିକ ପ୍ରେମ ଯେ ଦେହଗତ ପ୍ରେମଲାଭ ଲାଗି ମାଙ୍ଗଳିକ ମୂର୍ଚ୍ଛନା । ଏ ସତ୍ୟକୁ ମନୁଷ୍ୟ ସ୍ୱୀକାର

କରେ । ତା'ର ହୃଦ୍‌ବୋଧ ହୁଏ ଯେ ଅନନ୍ତ ସୃଷ୍ଟିର ସ୍ରଷ୍ଟାହିଁ ସର୍ବଶ୍ରେଷ୍ଠ ପ୍ରେମିକ ଓ ତାଙ୍କର ଦ୍ୱାରା ସୃଷ୍ଟ ସମସ୍ତ ଜଗତ ଓ ଜୀବନ ଯେଉଁ ରହସ୍ୟମୟୀ ଆକର୍ଷଣ ବଳରେ ପରସ୍ପର ସମ୍ପର୍କିତ ତାହାହିଁ ପ୍ରେମ ।

ଓଡ଼ିଆ ସାହିତ୍ୟରେ ବିଶେଷ କରି କାବ୍ୟ କବିତାରେ କେବଳ ଗୋପାଳ-କୃଷ୍ଣଙ୍କୁ ବାଦଦେଲେ ଏ ଧରଣର ପ୍ରେମଚର୍ଚ୍ଚାର ଘୋର ଅଭାବ । ମାନସିଂହଙ୍କ ପ୍ରେମ-କବିତା ମନରେ ପୁଲକ, ରୋମାଞ୍ଚ ଓ ଭାବାନ୍ତର ସୃଷ୍ଟି କରେ, ସନ୍ଦେହ ନାହିଁ, କିନ୍ତୁ ପ୍ରେମ-ସାଧନାର ଏ ନିଷ୍ଠା, ଆତ୍ମସମର୍ପଣ ଓ ତ୍ୟାଗର ମହନୀୟ ଆଲେଖ୍ୟ ତାଙ୍କର ପ୍ରେମ-କବିତାରେ ଅଙ୍କିତ ହୋଇପାରିନାହିଁ । ସଂକ୍ଷେପରେ ତାଙ୍କର ପ୍ରେମ-କବିତା 'ଏକ ଶୂନ୍ୟଗର୍ଭ ସ୍ୱର୍ଣ୍ଣପାତ୍ର । ମାତ୍ର ଜୀବନରେ ପ୍ରାୟ ସମସ୍ତେ ପ୍ରେମର କଣ୍ଟକ ଓ କୁସୁମର ସ୍ପର୍ଶ ଅଳ୍ପାଧିକେ ଲାଭ କରିଥାଆନ୍ତି । କିନ୍ତୁ ପ୍ରେମକୁ ପୂର୍ଣ୍ଣତାର ଗୌରବ ଦେଇପାରନ୍ତି ଅଙ୍ଗୁଳିମେୟ ମାତ୍ର କେତେଜଣ, ଯେଉଁମାନଙ୍କର ପ୍ରଣୟ କାହାଣୀ ମହାକାଳର ଅନନ୍ତ ପୃଷ୍ଠାରେ ଉତ୍କୀର୍ଣ୍ଣ ହୋଇ ରହେ—ଯେଉଁମାନଙ୍କୁ ପୁଣି ଜୀବନର କେତେକ ବିଶିଷ୍ଟ ମୁହୂର୍ତ୍ତରେ ନିଖିଳ ମାନବଜାତି ଶ୍ରଦ୍ଧାର ସହିତ ସ୍ମରଣ କରେ । କିନ୍ତୁ ନିଖିଳ ମାନବଚିତ୍ତରେ ଚିର ସ୍ମରଣୀୟ ହୋଇ ରହିବାପାଇଁ ଏ କ୍ଷେତ୍ରରେ କେତେ ଜଣଙ୍କର ସାଧନା ଓ ସେ ସାଧନାରେ ପୁଣି ନିଷ୍ଠା ନିହିତ ଥାଏ ? ଏହି କଥାକୁ ଲକ୍ଷ୍ୟକରି ଉର୍ଦ୍ଦୁ କବି କହିଛନ୍ତି :

"ଡାଲସେ ଫୁଲ୍ ଗିର୍‌ତା ହେ,
ଉଠାତେହେଁ କୋଇ କୋଇ,
ହଜାରୋଁ ତୋ ପ୍ୟାର କରତେହେଁ
ମଗର ନିଭାତେହେଁ କୋଇ କୋଇ ।"



# ମାନସିଂହଙ୍କ ସୌନ୍ଦର୍ଯ୍ୟ-ଚେତନାରେ

# ନାରୀ

ମାନସିଂହ ଅନ୍ୟ ବିଭିନ୍ନ ବିଶ୍ଳେଷଣ ଭିତରେ ଜଣେ ରୂପ-ସଚେତନ ପ୍ରେମିକ-କବି ଏହା ନିଃସନ୍ଦେହ । କେବଳ 'ହେମଶସ୍ୟ'ରେ ନୁହେଁ ତାଙ୍କର ତରୁଣ ବୟସର ସମସ୍ତ ରଚନାରେ ଦେଖାଯାଏ—"ଇନ୍ଦ୍ରିୟଗ୍ରାହ୍ୟ ଏହି ବାହ୍ୟ ଜଗତର ଦର୍ଶନ ଓ ସ୍ପର୍ଶ ଯେଉଁ ବୟସରେ ଚିତ୍ତକୁ ନାନା ଭାବରେ ବିକ୍ଷୋଭିତ କରେ, ସେଗୁଡ଼ିକରେ ସେହି ରୂପ-ବୁଭୁକ୍ଷୁ ଯୌବନର ଜନନ-ଚିହ୍ନ ସୁସ୍ପଷ୍ଟ ।" (୧)

ସାହିତ୍ୟରେ ପ୍ରେମ ଏକ ପୁରାତନ ଉପଜୀବ୍ୟ ବିଷୟ । ମାନସିଂହଙ୍କ କଥାରେ ପୁଣି (୨) "ଆମ ସାହିତ୍ୟରେ ପ୍ରେମ-କବିତାର ଅରଣ୍ୟ ରହିଛି ।" ତେଣୁ ନିଜ କାବ୍ୟରେ ଏହାକୁ ଏକ ନୂତନ ଆୟତନ ପ୍ରଦାନ କରିବାପାଇଁ ସେ ଗ୍ରହିଥିଲେ ପାରମ୍ପରିକ ସ୍ଥୂଳ ବର୍ଣ୍ଣନ ବ ହୁଙ୍କ ପରିବର୍ତ୍ତେ, "ବ୍ୟକ୍ତିଗତ ବିଭିନ୍ନ ଅଭିଜ୍ଞତାରେ ଶବଳିତ···ବିଚିତ୍ରତା ।" ତାଙ୍କ ଦୃଷ୍ଟିରେ ପ୍ରେମର ସଂଜ୍ଞା : ନାରୀ ଓ ପୁରୁଷ ମଧ୍ୟରେ ପରସ୍ପର ସହିତ ମିଳନାକାଂକ୍ଷା ଏକ ସାର୍ବଭୌମିକ ପ୍ରବୃତ୍ତି; କିନ୍ତୁ "ଇତର ପ୍ରାଣୀ ଜଗତରେ···ଯାହା ଯୌନ-କ୍ଷୁଧା···କେବଳ ପ୍ରଜନନର ଉପାୟ ମାତ୍ର, ମାନବ-ସମାଜରେ ତାହା ପ୍ରେମ···ତାହାହିଁ ହେଉଛି ସଙ୍ଗୀତ, ସାହିତ୍ୟ, କଳା, ଶିଳ୍ପ, ନୃତ୍ୟର ଜନନୀ ।" (୩) ଏଥିରୁ ଦୁଇଟି ତଥ୍ୟ ଉପଲବ୍ଧ ହୁଏ—ପ୍ରେମ ଯୌନତୃପ୍ତିର ଅତିରିକ୍ତ ଏକ ସୂକ୍ଷ୍ମ ଉପଲବ୍ଧି ଅଟେ ଏବଂ ଏହି ଉପଲବ୍ଧି ହିଁ କଳାତ୍ମକ ସୃଜନଶୀଳତାର ଅନୁପ୍ରେରକ ।

---

ପାଦ-ଟୀକା :—

(୧) 'ହେମ ଶସ୍ୟ' ଭୂମିକା

(୨) 'ଧୂପ' ଭୂମିକା

(୩) 'ମୁଁ କାହିଁକି ଲେଖେ'—ନଗର, ୧୯୮୧ ସଂଖ୍ୟା

ଅନ୍ୟ କଥାରେ, ପ୍ରେମର ଭିତ୍ତି ହୋଇପାରେ ଦେହ, ମାତ୍ର ଏହାର ପରିସୀମା ଦେହାତୀତ; ଏହାର ପ୍ରକୃତି ସ୍ଥୂଳ, ମାତ୍ର ପ୍ରତିକ୍ରିୟା ସୂକ୍ଷ୍ମ; ଏହାର ଅନୁଭୂତି ବ୍ୟକ୍ତିଗତ, ମାତ୍ର ଅଭିବ୍ୟକ୍ତି ବ୍ୟକ୍ତି ନିରପେକ୍ଷ । ଏଭଳି ଏକ ଆଦର୍ଶାନୁଗତ ଦୈହିକ-ପ୍ରେମ ସମ୍ପର୍କରେ ତାଙ୍କର ବକ୍ତବ୍ୟ, "ମାନବିକ ପ୍ରେମ ଅପେକ୍ଷା ଜୀବନରେ ମହତ୍ତର ସୁନ୍ଦରତର ଅନୁଭୂତି ଅଛି । କିନ୍ତୁ ଏ ଅନୁଭୂତି ନିନ୍ଦନୀୟ ବା ଲଜ୍ଜାକର ହେବାର କୌଣସି କାରଣ ନାହିଁ ।" (୪)

ମାନସିଂହଙ୍କ କାବ୍ୟରେ ପ୍ରେମାନୁଭୂତିର ଆଲମ୍ବନ ତ୍ରିବିଧ : ପରକୀୟା ପ୍ରେମିକା, ସ୍ୱକୀୟା ପତ୍ନୀ ଓ ଅନାସକ୍ତା ମାନସୀ ଏବଂ ତାଙ୍କ ପ୍ରଣୟ ଚେତନାର ଉଦ୍ଦୀପକ, ନାରୀର ସୌନ୍ଦର୍ଯ୍ୟ । ତାଙ୍କର ଏହି ସୌନ୍ଦର୍ଯ୍ୟ-ବିଗ୍ରହରେ ମଧ୍ୟ ଦୁଇଟି ବ୍ୟାପକ ବିଭାଗ ହୋଇପାରେ—ଶାରୀରିକ ସୌନ୍ଦର୍ଯ୍ୟ ଏବଂ ଚାରିତ୍ରିକ ସୌନ୍ଦର୍ଯ୍ୟ । ଶାରୀରିକ ସୌନ୍ଦର୍ଯ୍ୟର ଅନ୍ତର୍ଭୁକ୍ତ—ଆକୃତି, ଆଭୂଷଣ ଓ ଅନୁଭାବ ଏବଂ ଚାରିତ୍ରିକ ସୌନ୍ଦର୍ଯ୍ୟର ଅନ୍ତର୍ଭୁକ୍ତ—ମନ, ବଚନ ଓ କର୍ମ । ଆକୃତିକ ସୌନ୍ଦର୍ଯ୍ୟର ଅବଲମ୍ବନ ଅଙ୍ଗ ଓ ପ୍ରତ୍ୟଙ୍ଗ ଗଠନର ନିଟୋଳତା, ବର୍ଣ୍ଣ, ବୟସ, ସ୍ୱାସ୍ଥ୍ୟ, ସୌକୁମାର୍ଯ୍ୟ ଇତ୍ୟାଦି; ଆଭୂଷଣ, ଯଥା—ବସ୍ତ୍ର, ଅଳଙ୍କାର, ଅନୁଲେପନ ଇତ୍ୟାଦି ଏହାର ପରିବର୍ଦ୍ଧକ ଏବଂ ଅନୁଭାବ, ଯଥା—ଆଙ୍ଗିକ, ଅଯତ୍ନଜ, ସ୍ୱଭାବଜ, ସାତ୍ତ୍ୱିକ ଇତ୍ୟାଦି ଏହାର ପ୍ରକାଶକ । ଓଡ଼ିଆ ପ୍ରେମ-କବିତାର ଅରଣ୍ୟରେ ଏହିପରି ଭାବେ ଶରୀରୀ ଆଲମ୍ବିତ ଓ ଉଦ୍ଦୀପିତ ପ୍ରେମ ବର୍ଣ୍ଣନାର ଅଭାବ ନ ଥିଲେ ହେଁ ମାନସିଂହଙ୍କ କାବ୍ୟରେ ଏହାର ବିଶେଷତା ହେଲା, ଲୌକିକ ଓ ବୈଜ୍ଞାନିକ ପ୍ରେମାନୁଭୂତିର ସୂକ୍ଷ୍ମ ଅଭିବ୍ୟଞ୍ଜନା । ତାଙ୍କ ରଚନାରେ ନାହିଁ ତଟସ୍ଥ ଦ୍ରଷ୍ଟାର ପ୍ରଗଲ୍‌ଭ ବାଗ୍‌ବିଳାସ କିମ୍ବା ଅତୀନ୍ଦ୍ରିୟ ପ୍ରେମ-ସାଧନାର ନିଧିର ଭାବପ୍ରବଣତା । ପ୍ରେମର ଆଲମ୍ବନ ମାନବ ହେଉ କିମ୍ବା ମାନବାୟିତ ପ୍ରକୃତି ହେଉ, ତାର ଏକ ଇନ୍ଦ୍ରିୟଗ୍ରାହ୍ୟ ରୂପ-ରଚନରେ ସେ ସିଦ୍ଧହସ୍ତ । କିନ୍ତୁ ସେହି ରୂପ-ରଚନାରେ ପ୍ରତିଫଳିତ ହୋଇନାହିଁ ନଖଶିଖବର୍ଣ୍ଣିତ ଶୃଙ୍ଗାର-ପ୍ରତିମା କିମ୍ବା ଅସମାନ୍ୟ କଳ୍ପନାର ଅଶରୀରୀ ମାନସୀ । ସେଥିରେ କେବଳ ଫୁଟିଉଠିଛି ଜୀବନରେ ପରିଚିତ ପ୍ରୀତି-ପ୍ରତିମାର ଆଭାସ-ଚିତ୍ର । ମାନସିଂହଙ୍କ ପ୍ରେମ-ଭାବନାରେ ଏହି ରୂପରଚନାତ୍ମକ କାରିଗରୀ ତାଙ୍କ ସୌନ୍ଦର୍ଯ୍ୟ-ଚେତନାର ନିଷ୍କର୍ଷ ।

ମାନସିଂହଙ୍କ କାବ୍ୟ ନାୟିକା—ସେ 'ଧୂପ'ର ପରକୀୟା ପ୍ରଣୟିନୀ ହୁଅନ୍ତୁ, କିମ୍ବା 'ହେମଶସ୍ୟ'ର ପରିଣୀତା ପତ୍ନୀ ହୁଅନ୍ତୁ, ଅଥବା 'ଇନ୍ଦ୍ରାଣୀ-କିଶୋରୀ' ପରି ଅନାସକ୍ତା ମାନସୀ ହେଉ, ସେ ଅପରୂପା, ସେମାନେ ଗୀତିକାବ୍ୟର ପରମ୍ପରା-

(୪) 'ଧୂପ' ଭୂମିକା

ପ୍ରସିଦ୍ଧ 'ନାହିଁ, ନ ଥିଲା, ନୋହିବ' ସୌନ୍ଦର୍ଯ୍ୟର ଆକାଶୀ-ପ୍ରତିମା ନ ହୋଇ ପାରନ୍ତି, ମାତ୍ର ଆମର ପରିଚିତ ସାମାଜିକ ପରିଧି ମଧ୍ୟରେ ସେମାନେ ଏକ ଏକ ଜୀବନ୍ତ ରୂପବତୀ ତରୁଣୀ ।

'ଧୂପ'ର ପ୍ରଣୟିନୀ ଅନ୍ୟର ଗୃହିଣୀ ।' ସେ 'ସୁନ୍ଦରୀ' । ମାତ୍ର ତାଙ୍କର ସୌନ୍ଦର୍ଯ୍ୟ କେବଳ ଦେହ-ସର୍ବସ୍ୱ ନୁହେଁ, ତାହାର ବିସ୍ତାରଭୂମି ଉଭୟ ଦେହ ଓ ମନ । ମାନସିଂହ ଆମର ପ୍ରାଚୀନ କାବ୍ୟ ପରଂପରା ପରି ତାଙ୍କର ଚକ୍ଷୁରୁ ଚରଣ ଯାଏ ଚିତ୍ରଣ କୌଣସିଠାରେ କରିନାହାନ୍ତି, ତଥାପି ତାଙ୍କ ଶାରୀରିକ ସୌନ୍ଦର୍ଯ୍ୟର ଏକ ଇନ୍ଦ୍ରିୟ-ଘନ ସଜୀବ ରୂପ ପାଠକର ପ୍ରାଣ ସ୍ପର୍ଶ କରେ, କବିଙ୍କର ପ୍ରକାଶ-ବିଦଗ୍ଧତା ହେତୁ । 'ଆଷାଢ଼-ଅଭିସାର'ରେ ତାଙ୍କର ରୂପାଙ୍କନରେ ମାନସିଂହଙ୍କ ବକ୍ତବ୍ୟ : ସେ ତରୁଣୀ, ସମବୟସୀ; ତାଙ୍କର ସ୍ମରୁ ମୁଖ, କୋମଳ ପଦ, ଭୀରୁ ହୃଦୟ, କବରୀରେ କୁସୁମାଭରଣ, ପାଦରେ ନୂପୁର; ସେ କୁସୁମ-କୋମଳା, ମଧୁ-ବଚନା ଓ ବିଶାଳନୟନା । କିନ୍ତୁ ଏତିକି ଶବ୍ଦ-ଚିତ୍ର ମଧ୍ୟରେ ଏକ ଅଳଙ୍କାର-ଶାସ୍ତ୍ର ନିର୍ଦ୍ଦିଷ୍ଟ 'ସୁନ୍ଦରୀ'ର ରୂପ ଫୁଟିଉଠିନି । ତାଙ୍କର ଯେଉଁ ରୂପ ପାଠକକୁ ଅଭିଭୂତ କରେ, ତାହା ହେଉଛି ତାଙ୍କର ପ୍ରଣୟ-ବିଭୋର ଆତ୍ମାର ସକରୁଣ ନିବେଦନ, ପ୍ରାଣମୂର୍ଚ୍ଛା ତ୍ୟାଗ ଓ ଐକାନ୍ତିକ ସ୍ନେହ ଯାଚନା । ସେହିପରି 'ଏଇ ସହକାର ତଳେ'ର ଅଭିସାରିକା ସମ୍ପର୍କରେ କବି କହିଥିଲେ ହେଁ 'ମୋର ପ୍ରିୟା ପରି ନାହିଁ ସୁନ୍ଦରୀ', ତାଙ୍କର ସୌନ୍ଦର୍ଯ୍ୟର କୌଣସି ବର୍ଣ୍ଣନା ସେ ଅଙ୍କନ କରିବାକୁ ଯାଇନାହାନ୍ତି । କିନ୍ତୁ କଙ୍କଣପରିହିତ ବାହୁର ଘନ ଆଶ୍ଳେଷ ମଧ୍ୟରେ ଯେଉଁ ଉଦଗ୍ର ଇନ୍ଦ୍ରିୟ-ଚେତନାର ଆଭାସ ମିଳେ, ତାରି ଭିତରେ ହିଁ ରୂପ ଗ୍ରହଣ କରେ ସୁଗନ୍ଧିତ କେଶବତୀ, ଉଡ଼ନ୍ତବସନା ଗୋଟିଏ ପ୍ରେମମୁଗ୍ଧା ରମଣୀର ଜ୍ୱଳନ୍ତ ରୂପଶ୍ରୀ । 'ଧୂପ'ର ନାୟିକାର ସୌନ୍ଦର୍ଯ୍ୟ ଇନ୍ଦ୍ରିୟାନୁଭୂତିରେ ଆସ୍ୱାଦ୍ୟ; ତାଙ୍କର ବାହୁ ସୁଗୋଲ, ପିଚ୍ଛିଳ; କେଶ ଚିକ୍କଣ; ନିଶ୍ୱାସ ସୁବାସିତ । ତାଙ୍କର ବିଶିଷ୍ଟ ଅଙ୍ଗାଭରଣ—ବାହୁରେ କଙ୍କଣ, ପାଦରେ ନୂପୁର ଓ କବରୀରେ କିଆଫୁଲ । ସହକାର ତଳେ ନିର୍ଜନ ରାତିରେ ପ୍ରେୟସୀର ଗଳାରେ ବାହୁ ଭିଡ଼ି, ଗାଲରେ ସୁରଭି ନିଶ୍ୱାସ ଢାଳି ସେ ଖାଲି ସକରୁଣ ଆଖି ମେଲି ପ୍ରଶ୍ନ କରନ୍ତି—"ତମେ ସତେ ଭଲ ପାଅ ?' କବି ଏହି କେତେଟି କଥା ବାରମ୍ବାର ଉଲ୍ଲେଖ କରି ପାଠକ ଆଗରେ ଠିଆ କରାଉଛନ୍ତି ପ୍ରଣୟ-ବିଭୋର ନାରୀର ଏକ ରହସ୍ୟଘନ ଚରିତ୍ର । କବିଙ୍କର fetish ମନୋବୃତ୍ତି ତାଙ୍କ ସୌନ୍ଦର୍ଯ୍ୟ-ଚେତନାର ଏକ ବିଶେଷ ଆଭିମୁଖ୍ୟ ।

'ହେମ-ଶସ୍ୟ'ରେ ରୂପାୟିତା ଆଦ୍ୟଯୌବନା ପତ୍ନୀ ମଧ୍ୟ ଏପରି ଏକ ଧୋଈର ସୌନ୍ଦର୍ଯ୍ୟର ଅଧିକାରିଣୀ, ଯା' ଫଳରେ ଦେହଠାରୁ ସ୍ନେହର,

ରୂପଠାରୁ ଆତ୍ମାର ସୌନ୍ଦର୍ଯ୍ୟ ଶ୍ରେଷ୍ଠ ବୋଲି ତାଙ୍କର ଉପଲବ୍ଧି ହୋଇଛି । ଶାରୀରିକ ସୌନ୍ଦର୍ଯ୍ୟ ତୁଳନାରେ ଆତ୍ମିକ ସୌନ୍ଦର୍ଯ୍ୟର ମହତ୍ତ୍ୱ ପ୍ରତିପାଦନ ପୂର୍ବକ କବି କହିଛନ୍ତି—

ନର-ସୌନ୍ଦର୍ଯ୍ୟରେ
ଭକ୍ତ ସମ ଅଛୁ ରହି ମୁଗ୍‌ଧ ନୟନରେ
କେତେବାର ସଖି ମୁହିଁ, ବିଦଗ୍‌ଧ ସ୍ରଷ୍ଟାର
ସୃଷ୍ଟିର ମହିମା ସ୍ମରି । କିନ୍ତୁ ଗୋ ଆତ୍ମାର
ସୌନ୍ଦର୍ଯ୍ୟ ତହିଁରୁ ବଳି, (୫)

ପତ୍ନୀର ସ୍ନେହ ସ୍ପର୍ଶରେ ତାଙ୍କର ଦେହ-ଚେତନାର ଅବସାନ ଘଟିଛି; ସେ କେବଳ ଅନୁଭବ କରିଛନ୍ତି ଦେହ-ମନ୍ଦିରରେ ପ୍ରଜ୍ଜ୍ୱଳିତ ପ୍ରେମ-ଶିଖାର ସ୍ନିଗ୍ଧତା । (୬) ଦେହର ସ୍ନେହସିକ୍ତ ସ୍ନିଗ୍‌ଧ ରୂପ, ସୌନ୍ଦର୍ଯ୍ୟର ଏକ ଦାର୍ଶନିକ ବା ଲୋକୋତ୍ତର ଅନୁଭୂତି । ମାନସିଂହଙ୍କର ଏହି ସୌନ୍ଦର୍ଯ୍ୟ-ଦର୍ଶନ ତାଙ୍କ ବିବାହୋତ୍ତରକାଳୀନ ଜୀବନ-ଜିଜ୍ଞାସାର ଏକ ଅନିବାର୍ଯ୍ୟ ଉପଲବ୍ଧି । 'ଧୂପ' ଓ 'ହେମ ଶସ୍ୟ' ମଧ୍ୟରେ ନାରୀ-ସୌନ୍ଦର୍ଯ୍ୟର ମାନଦଣ୍ଡରେ ଯାହା ରୂପାନ୍ତର ଘଟିଛି ତାହାର ଭିତ୍ତି ହୁଏତ ସାମାଜିକ ମର୍ଯ୍ୟାଦା-ବୋଧ କିମ୍ବା ସୌନ୍ଦର୍ଯ୍ୟର ଶାଳୀନ ପରିଶୀଳନ ପାଇଁ ବୌଦ୍ଧିକ ଅନୁସନ୍ଧିତ୍ସା । କାରଣ, 'ସୁରା ଓ ସୁଧା'ର, 'ତ୍ୟାଗ ଓ ଭୋଗ'ର ତୁଳନାତ୍ମକ ବିଶ୍ଳେଷଣରେ ସ୍ପଷ୍ଟତଃ ପରିଲକ୍ଷିତ ହୁଏ, ମାନସିଂହଙ୍କ ସୌନ୍ଦର୍ଯ୍ୟ-ଚେତନା ଉପରେ ନୀତି-ବୋଧର ଏକ ପ୍ରଗାଢ଼ ପ୍ରଲେପ ।

ମାନସିଂହଙ୍କ ରଚନାରେ ନାରୀର ତୃତୀୟ ରୂପ—'ଇରାନୀ-କିଶୋରୀ' । ସେ ପ୍ରିୟା ନୁହେଁ କି ପ୍ରେୟସୀ ନୁହେଁ; ସେ ମାନସୀ । ବହୁବର୍ଷପରେ ବି ତାର କ୍ଷଣିକ ସ୍ଫୁରଣ କବି-ଚିତ୍ତରେ ରଖିଯାଇଛି ଏକ ଗଭୀର ଦାଗ । ସେ ଅର୍ଦ୍ଧେକ ମାନବୀ ଓ ଅର୍ଦ୍ଧେକ କଳ୍ପନା । ଇରାନୀ ବା ପାର୍ସି କବିତାର ଉପାଦାନରେ କବିତାର ରୂପାଙ୍କନ କରିଛନ୍ତି । ସେ ଗୁଲ୍-ବଦନା, ତାର ଅଧର ଦ୍ରାକ୍ଷା-ସୁକୋମଳ, ତାର ବିହାରଭୂମି ବୁଲବୁଲ ମୁଖରିତ ଗୁଲ୍-ଉପବନ, ପ୍ରଣୟୀକୁ ସିରାଜି ପରଶି ତାର ଗ୍ରୀବା ଉପରେ ମଥା ରଖି ସେ ଶୁଣେ ରୁବାଇୟାତ୍ । ଏଠାରେ ମାନସିଂହଙ୍କ ସୌନ୍ଦର୍ଯ୍ୟ-ଚେତନା ଏକାନ୍ତଭାବେ ଦେହନିଷ୍ଠ ଓ ଦୃଷ୍ଟିବଦ୍ଧ । ସେ ଯେପରି ଏକ ପ୍ରତ୍ୟାଖ୍ୟାତ

---

(୫) 'ଆତ୍ମାର ସୌନ୍ଦର୍ଯ୍ୟ'—ହେମଶସ୍ୟ

(୬) 'ଦେହ ଓ ସ୍ନେହ'—ହେମଶସ୍ୟ

ରୂପଭିକାରି, ଯାହାର ଏକମାତ୍ର ସାନ୍ତ୍ୱନା, କଳ୍ପନା; ଇଦ୍ରିୟ କଶୋଜ୍ଜ ଅଜର, ଅମର ! ମାନସିଂହଙ୍କ ସୌନ୍ଦର୍ଯ୍ୟ-ଚେତନାରେ ଏହାହିଁ ଏକ ବଳିଷ୍ଠ ବାସ୍ତବ । ତାଙ୍କ ନିକଟରେ ସୌନ୍ଦର୍ଯ୍ୟର ଜରାଜୀର୍ଣ୍ଣ ରୂପଠାରୁ ବରଂ ମୃତ୍ୟୁ ଶ୍ରେୟସ୍କର । ସେଥିପାଇଁ ବିଗତ-ଯୌବନା କୋଣାର୍କର ଲାବଣ୍ୟର ନଷ୍ଟ ଅସ୍ଥିମାଳ ଦେଖି ତାଙ୍କର କବି ଚିତ୍ତ ଶତଧା ବିଦୀର୍ଣ୍ଣ ହୋଇଯାଇଛି । ତାଙ୍କ କଳ୍ପନାରେ ଜୀବନ୍ୟାସ ପାଇଛନ୍ତି ପାଷାଣୀ ବିଗ୍ରହବୃନ୍ଦ, ସେମାନଙ୍କ କଳ୍ପିତ ଲାସ୍ୟ ସନ୍ଦର୍ଶନରେ ସେ ପାଇଛନ୍ତି କ୍ଷଣିକ ତୃପ୍ତି । ତେଣୁ ମୁମୂର୍ଷୁ କୋଣାର୍କ ପ୍ରତି ତାଙ୍କର ବିଦାୟ-ବାଣୀ ହୋଇଛି—

> ଆଣିପାରେ ଭାବନାରେ, କେବେ କି ଗୋ, ମୋ ତପସାଧନେ,
> ଧରିଦେବ, ହେ ଉର୍ବଶୀ, କୃଚ୍ଛ୍ର ବ୍ରତ ଜନ୍ମଜନ୍ମାନ୍ତରେ ?
> କିବା କ୍ଳେଶ, ଯଦି ତାହା ପାରେ ସମ୍ଭବାଇ
> ତମ ପରି ପରମ ସୃଜନେ ! (୭)

ଠିକ୍ ଏହିପରି ସୌନ୍ଦର୍ଯ୍ୟ-ବେଦନାର ନିଷ୍ଠୁର ସ୍ପର୍ଶରୁ ନିଜର ସ୍ୱପ୍ନକୁ ବଞ୍ଚାଇରଖିବା ପାଇଁ କବି 'ଧୂପ'ର ସେହି ଅପରୂପା ପ୍ରଣୟିନୀଙ୍କ ସହିତ ଆଜୀବନ ସମ୍ପର୍କ ପରିବର୍ତ୍ତେ ଖୋଜିଛନ୍ତି ଜନ୍ମାନ୍ତର ସମ୍ପର୍କ ।

> ତେବେ ରୂପଗତା,
> ଦୁଃଖ କିବା ? ଜନ୍ମାନ୍ତରେ ପାଇବା ମମତା
> ନୂଆ କରି । ଶୁଭ୍ର କେଶେ ଦେଖା କାହିଁପାଇଁ ?
> ନୂତନ ପ୍ରଭାତ ଆଣେ ନିଶା ଯାଉ ଯାଉ । (୮)

ଆକ୍ଷରିକ ଅର୍ଥରେ ଯାହା ଚିତ୍ତକୁ ଆର୍ଦ୍ର କରେ (ସୁ+ଉନ୍ଦ+ଅର୍ନ) ବା ଆନନ୍ଦ ଦିଏ (ସୁ+ନନ୍ଦସୂତ୍ର) ତାହା ସୁନ୍ଦର । ଦ୍ରବୀତ ବା ନନ୍ଦିତ କରିବା ସୌନ୍ଦର୍ଯ୍ୟର ଗୁଣ ବା କ୍ରିୟା । ସୁତରାଂ ବ୍ୟାକରଣିକ ବ୍ୟୁତ୍ପତ୍ତି ଅନୁସାରେ ସୌନ୍ଦର୍ଯ୍ୟ ସଂଜ୍ଞା ନିର୍ଦ୍ଧାରଣ କରାଯାଇପାରେନା । ସୌନ୍ଦର୍ଯ୍ୟତତ୍ତ୍ୱବିଦ୍ କବି, କଳାକାର ଓ ଦାର୍ଶନିକଗଣ ନାନା ଭାବରେ ଏହାର ବ୍ୟାଖ୍ୟାତ୍ମକ ସଂଜ୍ଞା ନିର୍ଣ୍ଣୟ କରିଛନ୍ତି । ସେମାନଙ୍କ ବିସ୍ତୃତ ଆଲୋଚନାରୁ ଗୋଟିଏ କଥା ନିର୍ଦ୍ଧାର୍ଯ୍ୟଭାବେ ପ୍ରତିପନ୍ନ ହୁଏ ଯେ ସୌନ୍ଦର୍ଯ୍ୟ ବସ୍ତୁର ବିନ୍ୟାସ ନୁହେଁ, ଏହା ବସ୍ତୁ ସହିତ ସମ୍ପୃକ୍ତ ଏକ ଅଭିଜ୍ଞାନ । ସଂସ୍କୃତରେ 'ଲାବଣ୍ୟ'ର ବ୍ୟାଖ୍ୟା ଯେପରି କରାଯାଇଛି—

(୭) 'ମୁମୂର୍ଷୁ କୋଣାର୍କ'—କୋଣାର୍କ
(୮) 'ପ୍ରେମ ଓ ଜରା'—ଧୂପ

"ମୁକ୍ତାଫଳେଷୁ ଛାୟାୟା ସ୍ତରଳଂ ତ୍ୱମିବାନ୍ତରା ।
ପ୍ରତିଭାତି ଯଦଙ୍ଗେଷୁ ଲାବଣ୍ୟଂ ତଦିହୋଚ୍ୟତେ ॥"

ତାହା ସୌନ୍ଦର୍ଯ୍ୟର ସ୍ୱରୂପ ଅବଧାରଣା କରିବା ଦିଗରେ ଏକ ମାର୍ମିକ ତଥ୍ୟ ପ୍ରଦାନ କରେ । ମୁକ୍ତାର କାନ୍ତି ପରି ସୌନ୍ଦର୍ଯ୍ୟ ବ୍ୟକ୍ତି ବା ବସ୍ତୁର ଅଙ୍ଗୋଦ୍‌ଭିନ୍ନ ଏକ ପ୍ରୀତିକର ପ୍ରତୀତି । ଦ୍ରଷ୍ଟାର ମାନସିକତା ଓ ସ୍ପର୍ଶକାତରତା ଉପରେ ଏହି ପ୍ରତୀତିର ତାରତମ୍ୟ ନିର୍ଭରଶୀଳ । ତରୁଣ ପ୍ରେମିକ କବି ମାନସିଂହଙ୍କ ସ୍ପର୍ଶକାତର ମନରେ ନାରୀ-ସୌନ୍ଦର୍ଯ୍ୟର ପ୍ରତୀତି ଯେପରି ବ୍ୟାପକ, ସେପରି ବିଚିତ୍ର । ତଥାପି ସାମଗ୍ରିକ ଭାବେ ତାଙ୍କ ସୌନ୍ଦର୍ଯ୍ୟ-ଚେତନାରେ ନାରୀର ଉପର୍ଯ୍ୟୁକ୍ତ ତ୍ରିବିଧ ରୂପ ଅପେକ୍ଷାକୃତ ସୁସ୍ପଷ୍ଟ ।



# ✻ ‘ହେମଶସ୍ୟ’ ଓ ‘ହେମଶସ୍ୟ’ର କବି

**ଶ୍ରୀ ମହେଶ୍ୱର ନାୟକ**
ଆଦିବାସୀ ଜନ-ନାୟକ ଓ ପୂର୍ବତନ ଲୋକସଭା-ସଦସ୍ୟ

ତରୁଣ କବିର ବିରାଟ ଆଶା ଦିନେ ଭ୍ରମି ଖୋଜି ନ ପାଇ ମଳୟ ରଥରେ ବସି ଜ୍ୟୋତ୍ସ୍ନା, ତଟିନୀ ତରଙ୍ଗରେ ଚୁମ୍ବନ ଅନ୍ୱେଷଣ କରି ବୁଲୁଥିଲା । ଖାଲି ସେତିକରେ ତୃପ୍ତ ନ ହୋଇ ଆତ୍ମସମର୍ଥନ ପାଇଁ ନୀତିଶାସ୍ତ୍ରର ପରିଧିକୁ ପରିବ୍ୟାପ୍ତ କରି ଗାଇଥିଲା—

"ପ୍ରେମ କି ଥରେ ଆସି ଥରକେ ହୁଏ ଶେଷ
ଜଣକୁ ଦେଲେ ଥରେ ନ ରହେ ଅବଶେଷ ?"

ବିରାଟ ଆଶାର ଏଇ ଯେ ଅସୀମ ପରିବ୍ୟାପ୍ତି ତାର ପୁଣି ଏମିତି ଆକସ୍ମିକ ସଙ୍କୋଚନ ଘଟି ଶେଷରେ ଏକମାତ୍ର ବିନ୍ଦୁରେ କେନ୍ଦ୍ରୀଭୂତ ହେବ ‘ଧୂପ’ର କ୍ୱଚିତ୍ ପାଠକ ଏହା କଳନା କରିଥିବେ । ଏଣୁ ବିଶ୍ୱାସ ହୁଏନା ‘ଧୂପ’ର କବି ‘ହେମଶସ୍ୟ’ର କବି ହୋଇପାରନ୍ତି ବୋଲି । କିନ୍ତୁ ‘ହେମଶସ୍ୟ’ର ପ୍ରାରମ୍ଭରୁ ହିଁ ତ ଏହି ଅଭାବନୀୟ ପରିବର୍ତ୍ତନର ପୂର୍ବସୂଚନା ମିଳେ ।

କେତୋଟି ଚତୁର୍ଦ୍ଦଶ ପଂକ୍ତିବିଶିଷ୍ଟ କବିତାର ସମାହାରରେ ‘ହେମଶସ୍ୟ’ର ଅଙ୍ଗ ପରିଗଠିତ । ଚତୁର୍ଦ୍ଦଶ ପଂକ୍ତିରେ ଲେଖା ହେଲେହେଁ ଏଗୁଡ଼ିକ ସନେଟ୍ ନୁହେଁ । କବି ପ୍ରଥମରୁ କହିଛନ୍ତି, କିନ୍ତୁ ଏ ବିଷୟରେ ମୁଁ ତାଙ୍କ ସଙ୍ଗେ ଏକମତ ହୋଇପାରିଲି ନାହିଁ ଯେହେତୁ ଚତୁର୍ଦ୍ଦଶ ପଂକ୍ତିର ଅବସ୍ଥିତି ହିଁ ସନେଟ୍‌ର ପ୍ରଥମ ଓ ମୌଳିକ ବିଶେଷତ୍ୱ । ସନେଟ୍ ଛଳରେ କବିତା ଲେଖିବା ରୀତି ଏ

---

✻ ଭକ୍ତପ୍ରଦୀପ—ଦଶମଖଣ୍ଡ—ଆଶ୍ୱିନ, ସନ ୧୩୦୮ ସାଲ—୧ମସଂଖ୍ୟା—ପୃ ୧୭-୧୮ ସ୍ଥା ॥

ଦେଶର ନୁହେଁ; ଏହା ଇଉରୋପୀୟ । ଆମ ଦେଶରେ ଏହାର ଆମଦାନୀ ଇଂରାଜ ସାହିତ୍ୟ ଜରିଆରେ । ସୁତରାଂ କବିତାଗୁଡ଼ିକର 'ସନେଟତ୍ୱ' ବିଚାର କରିବାକୁ ଗଲେ ସେହି ବିଦେଶୀୟ କବିଙ୍କ ହାତରେ ଏହାର କ୍ରମବିକାଶ କିପରି ସାଧିତ ହୋଇଅଛି ତାହାହିଁ ଆମ୍ଭମାନଙ୍କର ଅନୁସରଣୀୟ । Petrarch, Dante, Tasso ପ୍ରଭୃତି କବିମାନେ ଇଟାଲୀୟ ସନେଟ୍‌ର ଯେଉଁ ପ୍ରଥମ ରୂପ ଦେଇଥିଲେ, ଇଂରାଜ ସନେଟ୍ ଲେଖକଙ୍କ ହାତରେ ତାର ଆକାରଗତ କୌଣସି ପରିବର୍ତ୍ତନ ଘଟି ନ ଥିଲେ ହେଁ ପରମ୍ପରାକ୍ରମେ ପ୍ରକାରର ଯେ ବିଶିଷ୍ଟ ପରିବର୍ତ୍ତନ ସଂସାଧିତ ହୋଇଅଛି, ତାହା ଇଂରାଜ ସାହିତ୍ୟର ଜିଜ୍ଞାସୁଙ୍କୁ ଅବିଦିତ ନାହିଁ । Spencer, Shakespeareଙ୍କଠାରୁ ଆରମ୍ଭ କରି Wordsworth, Keats, Rossetti ପ୍ରଭୃତି ସମସ୍ତେ ଉଚ୍ଚଦରର ସନେଟ୍ ଲେଖିଥିଲେହେଁ ସମସ୍ତଙ୍କ ଅପେକ୍ଷା ମିଲ୍‌ଟନ୍‌ଙ୍କ ସନେଟ୍ ହିଁ ଛନ୍ଦବିନ୍ୟାସ ଓ ପଦମିଳନରେ ଇଟାଲୀୟ ସନେଟ୍‌ର ଅପେକ୍ଷାକୃତ ନିକଟରେ । ତଥାପି ଇଟାଲୀୟ ପନ୍ଥାଠାରୁ ଏହାଙ୍କ ପନ୍ଥା ସ୍ୱତନ୍ତ୍ର । ଗୋଟିଏ ଗତାନୁଗତିକ ପନ୍ଥା ପରିହାର କରି ସନେଟ୍‌କୁ ଇଚ୍ଛାନୁଯାୟୀ ନବରୂପ ଦେବାର ଇଂରେଜ କବିଗଣଙ୍କ ଏହି ସ୍ୱାତନ୍ତ୍ର୍ୟ, ଏଥିରୁ କହିଲେ ଯଥେଷ୍ଟ ସାହସ ଜନ୍ମେ ଯେ ମୂଳପିଣ୍ଡକୁ ଅକ୍ଷୁଣ୍ଣ ରଖି ଭିନ୍ନ ଭିନ୍ନ ରୂପରେ ସନେଟ୍‌ର ଅବତାରଣା କରାଯାଇପାରେ, ଯଦି ଆତ୍ମପର୍ଯ୍ୟାପ୍ତିରେ କିଛି ବାଧା ନ ଘଟେ । ଏ ହିସାବରେ ଦେଖିବାକୁ ଗଲେ 'ହେମଶସ୍ୟ'ର ପ୍ରତି କବିତା ସନେଟ୍ ଶ୍ରେଣୀର ଅନ୍ତର୍ଗତ ନୁହେଁ ବୋଲି କହିହେବ ନାହିଁ ।

'ହେମଶସ୍ୟ' କବିତାଗୁଚ୍ଛ, ଆଖ୍ୟାୟିକା ନୁହେଁ । ପ୍ରତ୍ୟେକ କବିତାର ଉପଜୀବ୍ୟ ଅନ୍ୟଠାରୁ ସ୍ୱତନ୍ତ୍ର; ମଧ୍ୟ ପ୍ରତ୍ୟେକଟିର ଅଭିବ୍ୟଞ୍ଜନା ସେଇଟିରେ ହିଁ ସମାପ୍ତି ଲଭିଛି । ତଥାପି କବିଙ୍କର ଅଜ୍ଞାତରେ ହେଉ ବା ଜ୍ଞାତସାରରେ ହେଉ, କବିତାଗୁଡ଼ିକରେ ଯେଉଁ ପାରମ୍ପରିକ ସୂତ୍ରଟିଏ ରହିଯାଇଛି, ସେଥିରୁ ମନେ ହୁଏ ସମଗ୍ର ଗ୍ରନ୍ଥଟି ଗୋଟିଏ କ୍ଷୁଦ୍ର କାବ୍ୟ—ପ୍ରତି କବିତା ଖଣ୍ଡ ଯାହାର ଗୋଟାଏ ପରିପୂର୍ଣ୍ଣ ସର୍ଗ ।

ଅନ୍ୟଦୃଷ୍ଟିରୁ 'ହେମଶସ୍ୟ'କୁ ଆଇଡ଼ିଲସ ( Idylls ) ଶ୍ରେଣୀୟ ବୋଲି ପରିଗଣିତ କଲେ ମଧ୍ୟ ଭ୍ରାନ୍ତିର ଆଶଙ୍କା ରହିବ ନାହିଁ । କବିତାଗୁଡ଼ିକରେ ପ୍ରାଣର ସ୍ରୋତ ହେଉଛି ପ୍ରେମ । ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ପ୍ରତ୍ୟେକ କବିତା ସେହି ପ୍ରେମ କମଣ୍ଡଳୁ ବାରିଦ୍ୱାରା ପରିସିକ୍ତ ହୋଇ ଉଠିଛି । ଜ୍ୟୋତିଷିଙ୍କ ଚନ୍ଦ୍ରଶେଖର ଓ ଦୁଃଖୀବନ୍ଧୁ ଗୋପବନ୍ଧୁଙ୍କର ଗୁଣାବଳୀ, ରୂପକାର ରାଧାନାଥଙ୍କ ଚିଲିକା, ଏସବୁ ପ୍ରିୟା ନିକଟରେ ପରିଚିତ କରାଇବାର ଛଳକରି ବଡ଼ ସୁକୌଶଳ

ସହ କବି ପ୍ରେମର ଜୟଧ୍ୱଜା ଟେକିଛନ୍ତି, ପ୍ରେମ କବିତା କଥା ତ ନ କହିବା ହିଁ ଭଲ ।

କବିଙ୍କ 'ତରୁଣ କବିର ଆଶା'ରେ ଓ ଅନ୍ୟାନ୍ୟ କେତେକ ଲେଖାରେ ଅଶ୍ଳୀଳତାର ରୂପ ଦେଖିପାରୁ ପାଇ ବହୁ ରୁଚିଧ୍ୱଜାଙ୍କ ଲେଖନୀରୁ ଯେଉଁ ଅଗ୍ନ୍ୟୁଦ୍‌ଗାର ହୋଇଥିଲା 'ଧୂପ' ଓ 'ପୁଷ୍ପିତା'ର ପ୍ରକାଶରେ ତାର ଉତ୍କଟତା ଚରମ ପରିଚ୍ଛେଦରେ ପହଞ୍ଚିବାର କଥା । ତାହା ହେବାକୁ ବେଶି ଦିନ ଡେରି ମଧ୍ୟ ହେଲା ନାହିଁ । ହେଲେ କଣ ହେବ, ପରସ୍ପର ଆକର୍ଷଣରେ ମୋହିତ ନୈସର୍ଗିକ ଜଗତର ତରୁଣ ତରୁଣୀ ପ୍ରାଣରେ ଯେତେଦିନ ଯାଏ ତାର କାର୍ଯ୍ୟ ପରିଚାଳନା କରିବାରୁ ବିରତ ନ ହୋଇଛି, ସେତେଦିନ କବିର ଲେଖନୀ ଚାଳନାକୁ ଜବରଦସ୍ତି ନିରୋଧ କରାଗଲେ ମଧ୍ୟ ଅନ୍ତଃସ୍ରୋତା ଫଲ୍‌ଗୁ ପରି ସେହି ମୋହର ତରଳ ସ୍ରୋତ ଭିତରେ ଭିତରେ ଚିରଦିନ କବିତା ହୋଇ ଫୁଟୁଥିବ—ଏହା ନିଶ୍ଚିତ କଥା । ସେ ଯାହା ହେଉ, ଅଗ୍ନିର ଦାହିକାଶକ୍ତି ସୁନା କ୍ଷେତ୍ରବିଶେଷରେ କଷଟିର କାର୍ଯ୍ୟ କରିଥାଏ । ଆମ୍ଭମାନଙ୍କ ତରୁଣ କବିଙ୍କ ନିକଟରେ ସେହି ବିରୁଦ୍ଧ ସମାଲୋଚନା କଷଟିର କାର୍ଯ୍ୟ କରିଛି, ଯାହା ଫଳରେ ଆମେ ପାଇଛୁଁ 'ହୈମଶସ୍ୟ' ।

'ଧୂପ'ରେ ଆମେମାନେ ଦେଖୁଁ ପ୍ରଥମ ଯୌବନର ଅସ୍ଥିର ଅଦମ୍ୟ ଉନ୍ମାଦନା; 'ପୁଷ୍ପିତା'ର କଳ୍ପନାଗୁଳ୍ମଗୁଚ୍ଛରେ ଆମ୍ଭେମାନେ ପାଉଁ ଫଗୁଣର ବାସନ୍ତିକ ଆବେଗ । ଆଉ 'ହୈମଶସ୍ୟ' ? ସେ ଦିଏ ଶସ୍ୟଗୁଚ୍ଛର ପରିପକ୍ୱ ଶ୍ରୀ । ମତଦ୍ୱୈଧ ଘଟିଲେ ମଧ୍ୟ ମନୋରାଜ୍ୟରେ ପ୍ରେମର ଯେ ପ୍ରାଧାନ୍ୟ, ତାହାର ସତ୍ୟତା କେହି ଅସ୍ୱୀକାର ବା ଅପ୍ରମାଣିତ କରିନାହାନ୍ତି; ଭାବପ୍ରବଣ ଯୌବନର ପ୍ରାକ୍‌କାଳରେ ଏହି ପ୍ରାଧାନ୍ୟର ପ୍ରତିପତ୍ତି ସବୁଠୁଁ ବେଶି । ରସବନ୍ତ ହୃଦୟର ଏହି ଯେ ଉନ୍ମୁଖ ଉଚ୍ଛ୍ୱାସ, ତାହାର ମୂକ ପ୍ରଭାବକୁ ବାଙ୍‌ମୟ କରିବା ଯଦି କିଛି ଅପରାଧ ତେବେ ସେ ଅପରାଧ ବିଚାରା କବିର ନୁହେଁ, ନିତମ୍ବିନୀ କଳାର; ଯେହେତୁ କଳା ସମାଜର ଅନୁମୋଦିତ ବା ଲୋକସମ୍ମତ ନୀତିଶାସ୍ତ୍ରର ନିଗଡ଼ ମାନି ଚଳିବାକୁ ନାରାଜ । ଆଦର୍ଶବାଦୀର ପରିପୂର୍ଣ୍ଣତା ତ ସାଧାରଣ ମାନବର ନୁହେଁ । ଦୁର୍ବଳତା ହେଉଛି ମାନବର ଗୁଣ । ଯୌବନର ଏହି ସଦାଚିନ୍ତ୍ୟ ଆକାଙ୍‌କ୍ଷାକୁ ଦୁର୍ବଳତା ବୋଲି ମାନି ସୁଦ୍ଧା କହିବାକୁ ହେବ ତାହା ଯଥାର୍ଥ ଓ ନିତ୍ୟ ସତ୍ୟ । ତାର ରୂପ ଯେ ଦେଇପାରନ୍ତି ସେ ହେଉଛନ୍ତି ବାସ୍ତବ କଳାକାର । ଏସବୁ ସତ୍ତ୍ୱେ ଯୁବଜନସୁଲଭ ନିରାଟ ବାସ୍ତବର ଭିତ୍ତି ଉପରେ ସ୍ଥାପିତ 'ଧୂପ'ର କବିତାଗୁଡ଼ିକୁ ଉଚ୍ଛୃଙ୍ଖଳତାର ବା ଯଥେଚ୍ଛାଚାରିତାର ପ୍ରଶ୍ରୟୀ ବୋଲି କହି ଯେଉଁମାନେ ନାସିକା କୁଞ୍ଚନ କରନ୍ତି, ସେମାନଙ୍କ ମଧ୍ୟରୁ କେହି କେହି 'ହୈମଶସ୍ୟ'ରେ ପରିଣୀତ ଜୀବନର କେନ୍ଦ୍ରୀଭୂତ ପ୍ରେମ ଦେଖି ସ୍ୱସ୍ତିରେ ନିଶ୍ୱାସ ମାରିବା ସୁନ୍ଦର କଥା । କିନ୍ତୁ ନିରପେକ୍ଷ ସ୍ୱୀକୃତିରେ

ମଧ୍ୟ ଯେଉଁମାନେ ନିକୃଷ୍ଟ ଇନ୍ଦ୍ରିୟାସକ୍ତିର ଗନ୍ଧ ଖୋଜି ବାହାର କରିବାର ପକ୍ଷପାତୀ, ତାଙ୍କର ଏତିକି ମନେ ରଖିବା ଉଚିତ—କଳା ଯେ କଳା ଅର୍ଥାତ୍ ଗୁଣଧର୍ମର ଅକୃତ୍ରିମ ଉତ୍ସାରଣା ।

ପରିଶେଷ୍ଟୁ ସଙ୍ଗେ ସଙ୍ଗେ ତରୁଣ ପ୍ରାଣରେ ଯେଉଁ ଦୁର୍ଦ୍ଦମ ପ୍ରେମାକାଙ୍କ୍ଷା ଜାଗିଉଠେ, ନବୋଢ଼ା ପ୍ରିୟାର ଅନୁରକ୍ତିଠାରେ ଆତ୍ମୋତ୍ସର୍ଗ କରିବାଦ୍ୱାରା ତରୁଣ ତାହାର ଅଭିଷେକ କରେ । ଏହି ଅଭିଷେକର ପ୍ରଶସ୍ତି ହିଁ 'ହେମଶସ୍ୟ'ରେ ଆତ୍ମପ୍ରକାଶ କରିଛି । ଜଗତ୍ତର ତରୁଣସମାଜ, ଯାହା ଏତେଦିନ ଧରି କେବଳ ନିଜେ ଭୋଗ କରି ସନ୍ତୁଷ୍ଟ ଥିଲି, ମାୟାଧର ଦେଲେ ତାକୁ ରୂପ । ସମ୍ଭୋଗର ଆତ୍ମପ୍ରସାଦରେ ସମସ୍ତେ ତୃପ୍ତ । କିନ୍ତୁ କେତେଜଣ ଏ ସୁବିଧା ଅନ୍ୟକୁ ଦିଅନ୍ତି, ଅପର ମଧ୍ୟ ଏ ଆତ୍ମପ୍ରସାଦର ଭାଗୀ ହୋଇ ଆନନ୍ଦୋପଲବ୍ଧି କରୁ ବୋଲି । ଏଣୁ ଏହି ଅଚଳ ପଥର ପ୍ରଥମ ପଥିକ (ଅନ୍ତତଃ ଆଧୁନିକ ଯୁଗରେ) ମାୟାଧର ବୋଲି କହିବା ଅଯୌକ୍ତିକ ନୁହେଁ । ବରଂ ଏହା ସ୍ୱୀକାର ନ କରିବା ପୂଜ୍ୟପୂଜାର ବ୍ୟତିକ୍ରମ ।

ପ୍ରିୟ ଓ ପ୍ରେୟସୀଙ୍କ ବିଶ୍ରମ୍ଭାଳାପ ମଧ୍ୟରେ ସାମନ୍ତ ସିଂହାରଙ୍କ ଆଦର୍ଶରେ କବି ପ୍ରେମର ସଂଜ୍ଞା ଦେବାକୁ ଯାଇ କହିଛନ୍ତି, "ପ୍ରେମନାମ ପରିପୂର୍ଣ୍ଣ ଆତ୍ମସମପଣ ।" ତରୁଣ ତରୁଣୀଙ୍କ ଅନ୍ୟୋନ୍ୟ ଆକର୍ଷଣ ଯଦି ରୂପରେ ଶେଷ ହୁଏ, ତାହା ପ୍ରେମ ନୁହେଁ, ନିକୃଷ୍ଟ ସମ୍ଭୋଗ ।

"………ଦେହ ଅବସାନେ
ଯେ ମିଳନ ପ୍ରତିଷ୍ଠିତ ଅନ୍ୟୋନ୍ୟ କଲ୍ୟାଣେ
ସେହି ସେ ପ୍ରକୃତ ପ୍ରେମ ।"

ପ୍ରେମର ଏହି ଯେ ମହୋଦାର ଆଦର୍ଶ, ତାହା ଏହି କବିତା ଗ୍ରନ୍ଥର ପ୍ରତ୍ୟେକ କବିତାରେ ଅଳ୍ପ ବହୁତ ଫୁଟାଇ ମଧ୍ୟ କବି ବର୍ତ୍ତମାନ ସତ୍ୟର ଅବମାନନା କରିନାହାନ୍ତି । ଆଦର୍ଶବାଦୀର ଆସନରେ ବସି, ସେ ଯଦି କେବଳ ଅତୀନ୍ଦ୍ରିୟ ରାଜ୍ୟର କଥା କହୁଥାଆନ୍ତେ ତେବେ ତାଙ୍କ କବିତା କେବଳ ଜଣ କେତେଙ୍କର ହୋଇ ରହିଥାଆନ୍ତା । କିନ୍ତୁ ଏ କବି ଉପସ୍ଥିତ ଜଗତର । ସେ ଚାହାନ୍ତି ପୂର୍ବୋକ୍ତ ଆଦର୍ଶକୁ ଅକ୍ଷୁଣ୍ଣ ରଖି ପ୍ରଣୟୀ ପ୍ରଣୟିନୀ ଦୁହେଁ 'ନେତ୍ରକୋଣେ ନେତ୍ରକୋଣେ ରଖି' ଦୁଇ ଆତ୍ମାର ନୀରବ ମିଳନରେ, ଏକମାତ୍ର ସତ୍ୟସୁଖ ଭୁଞ୍ଜିବେ । ସଂସାରର ଦୁଃଖ ଦୁର୍ଗନ୍ଧରେ ପରାହତ ପ୍ରଣୟୀ ଯଦି ଭଗ୍ନଜାନୁ ହୋଇ ଗୃହକୁ ଫେରେ ତେବେ ପ୍ରଣୟିନୀର ପ୍ରେମାଶ୍ଲେଷ ହେବ ତାର ଶ୍ରେଷ୍ଠ ସମ୍ମାନ । ଅନୁଭୂତିରାଜିର ଭିତ୍ତି ଉପରେ

ଆଦର୍ଶର ପ୍ରତିଷ୍ଠାନ—ତାର ଫଳ ସିନା ପ୍ରତ୍ୟକ୍ଷ । ଆଦର୍ଶକୁ ଲକ୍ଷ୍ୟ ରଖି ଘଟିତବ୍ୟ ବିଷୟର ନିୟନ୍ତ୍ରଣ ଯେମିତି ଅଳୀକ, ସେଇ ସମାଲୋଚକତା ସେମିତି ନିଷ୍ଫଳ । ଜବ ମଧ୍ୟ ସେପରି ହାସ୍ୟାସ୍ପଦ ।

ଏ ପ୍ରଣୟକାହାଣୀ ପରଣୀତ ଜୀବନର କାହାଣୀ । କିନ୍ତୁ ଏ କି ଗୋଟିଏ ଜୀବନର କାହାଣୀ ? ନା ବନମାଳତୀର ସୌରଭ ପରି ଧରଣୀରେ ନୀରବରେ ଝଡ଼ୁଥିବା ଅଗଣିତ ପରଣୀତ ଜୀବନର ଉଚ୍ଛ୍ୱସିତ ଉନ୍ମାଦନା—ସାଧାରଣ ଲୋକ ଯାର ସନ୍ଧାନ ପାଏନା । ମଞ୍ଜରୀ-ସ୍ତବକା-ନମ୍ରା ଜଳଲତା ଯେବେ କୁଟୀର ବାୟୁକୁ ସୌରଭପୂର୍ଣ୍ଣ କରି ଯେଉଁ ନବଦ୍ୟୁତି ଦିଏ, ସେଇଥିରେ ଅବଜ୍ଞାତ ଓ ଅବହେଳିତ ମଧ୍ୟ ପ୍ରିୟ ହୋଇଉଠେ । ପ୍ରିୟ ତ ପ୍ରିୟତର ହେବାର କଥା । ସବୁ ଯେପରି ସେହି ସୌରଭରେ ସୁରଭିତ, କାଉଁଶସ୍ପର୍ଶରେ ସବୁଥିରେ ଯେପରି ଅନନ୍ତ ବସନ୍ତ ।

ଆଜି ଅନାଦୃତ ଏଇ ପରଦାଟିକୁ ଖୋଲି, 'ହେମଶସ୍ୟ'ର କବି ଗୋଟିଏ ପରଣୀତ ଜୀବନର କାହାଣୀ ଶୁଣାଇବାକୁ ଯାଇ Banquo's light ସାହାଯ୍ୟରେ ଯେପରି ମହତ୍ ଜୀବନର ଗୀତିଗୁଞ୍ଜନମୟ ଦୃଶ୍ୟରାଜି ଛିଡ଼ା କରାଇଛନ୍ତି ।

ପ୍ରଣୟକୁ କେବଳ ପ୍ରଣୟ ରୂପରେ ଯେ କେତେଜଣ ଦେଖନ୍ତି, ସେମାନଙ୍କ ସଂଖ୍ୟା ନିତାନ୍ତ ବେଶି ହେଉ ବା ନ ହେଉ, ଏଇ ନିର୍ଭିକ ସତ୍ୟଟିକୁ ପ୍ରକାଶ କରିବାର ଯେ ସାହସିକତା ତା କେବଳ ମାସ୍ଟାଧରଙ୍କର ଅଛି । ରୁଚିପନ୍ଥୀଙ୍କ ବାଦ୍ ପ୍ରତିବାଦ ପୂର୍ବରୁ ସେ ଅନ୍ତର୍ଦର୍ଶୀ ଓ ସତ୍ୟପନ୍ଥୀ । କବି ପକ୍ଷରେ ଏଇ ତ ଯଥେଷ୍ଟ । ପ୍ରଣୟର ଅଭିନବ ପ୍ରତିଷ୍ଠାନ ପାଇଁ ଯେବେ ସେ ନାନାଭାବରେ ଜୀବନର ନାନା ରସ ସଂଗ୍ରହ କରିବାକୁ ଅତିମାତ୍ରାରେ ବ୍ୟଗ୍ର ହୋଇଉଠିଥାଏ, ସେ ମଧ୍ୟ ଜଣେ ପ୍ରଣୟିନୀର ଉପେକ୍ଷା ଆଶଙ୍କା କରି ତାର ସ୍ୱର୍ଣ୍ଣ ସୀତା ରଚେ ଏବଂ ଉଷ୍ଣ ଅଶ୍ରୁରେ ତାକୁ ଅଭିଷିକ୍ତ କରି ଅନୁରାଗ ଢାଳିଦିଏ, ଯେତେବେଳେ ସେହି ଜୀବନ୍ତ ପ୍ରଣୟିନୀ ଉପେକ୍ଷିତ ପ୍ରଣୟୀର ପ୍ରଣୟ-ଯାଗ ଉଦଯାପନ କରାଇବା ନିମନ୍ତେ ସିଂହାସନରୁ ଓହ୍ଲାଇ ଆସିନାହିଁ । ବହୁମୁଖୀ ସ୍ରୋତର ଏଇ ଐକାନ୍ତିକତାରେ ପ୍ରଶ୍ନ ଉଠିବାର କଥା, କିନ୍ତୁ 'ଅଭିମାନ'ରେ କବି, ତାର ପ୍ରତ୍ୟୁତ୍ତର ଦେଇସାରି ଅନୁରୋଧ କରିଛନ୍ତି—

"ପଙ୍କରୁ ପଙ୍କଜ ଏଥି ଫୁଟାଇବା ଆସ,
ଦୁଃଖ ମଧ୍ୟେ ଏ ଜୀବନ ହେଉ ଦୀର୍ଘ ରାସ ।"

ପ୍ରଣୟ ଲାଗି ଯେ ପ୍ରଣୟ ଏଇଟା ହେଉଛି 'ହେମଶସ୍ୟ'ର ନିଜସ୍ୱ । ଏଥିରେ କଳୁଷ କାଳିମା ଲେପିବା କେବଳ ରକ୍ଷଣଶୀଳତାର ଅମୂଳକ ଈର୍ଷା ।

ଆତ୍ମାର ସୌନ୍ଦର୍ଯ୍ୟ ଯେ ସବୁଠାରେ ଉଚ୍ଚସ୍ତରର ତାର ପରିଚୟ 'ହେମଶସ୍ୟ'ର କବିଙ୍କୁ ଅଙ୍ଗୁଳି ନିର୍ଦ୍ଦେଶରେ ଦେଖାଇଦେବାକୁ ହେବ ନାହିଁ। ପ୍ରାୟ ପ୍ରତି କବିତାରେ ଏହି ସୂକ୍ଷ୍ମ ଆଧ୍ୟାତ୍ମିକତା ଅଳ୍ପ ବିସ୍ତରେ ପରିସ୍ଫୁଟ। ତଥାପି ଦୋଷ ହେଉ ବା ଗୁଣ ହେଉ ରକ୍ତମାଂସରେ ଗଢ଼ା ମାନବର ପ୍ରଣୟ ଯେ ଜଡ଼େନ୍ଦ୍ରିୟର ରୂପାତୀତ ସ୍ନେହ ନୁହେଁ ଏକଥା ସ୍ୱୀକାର କରି କବି ମହତ୍ତ୍ୱର ପରିଚୟ ଦେଇଛନ୍ତି ଏବଂ ମାନବିକତା ସତ୍ତ୍ୱେ ଆଧ୍ୟାତ୍ମିକତ ର ଏ ଯେ ଅବିଚ୍ଛିନ୍ନ ସଂଯୋଗ ତାର ପ୍ରଚ୍ଛନ୍ନର ପଥ ସୁଗମ କରି ନିଜର ଆସନକୁ ନିଶ୍ଚିତ କରିନେଇଛନ୍ତି। ବିଚାର କରି ବସିଲେ ଦେଖାଯାଏ କବି Keatsଙ୍କ ସନେଟ୍‌ର ଭାବଧାରା ସଙ୍ଗେ ମାୟାଧରଙ୍କ ସନେଟ୍‌ର ଭାବଧାରାର ବହୁ ନିକଟ ସାମଞ୍ଜସ୍ୟ ରହିଛି।

ପ୍ରଣୟୀର ଏ ଅବିଧି ଭାଷାହୀନ କବିତା ମାୟାଧରଙ୍କ ଲେଖନୀ ସ୍ପର୍ଶରେ ଉଷ୍ଣ ମେଲି ତରଳ ଜ୍ୟୋତ୍ସ୍ନାର ସ୍ୱପ୍ନ ସୃଷ୍ଟି କରିଛି।

●

---

ଭକ୍ତପ୍ରଦୀପ—ଦଶମ ଭାଗ—ଆଶ୍ୱିନ, ସନ ୧୩୪୮ ସାଲ, ୧ମ ସଂଖ୍ୟା

# ମାନସିଂଙ୍କ 'ଜୀବନଚିତା'ରେ

# ଜୀବନଗାଥା

**ଅଧ୍ୟାପକ ରାଧାଶ୍ୟାମ ବେହୁରା,**

ଅଞ୍ଚଳ ମହାବିଦ୍ୟାଳୟ, ପଦ୍ମପୁର

ସବୁଜମାନେ ଯେତେବେଳେ ଆମ ଓଡ଼ିଆ ସାହିତ୍ୟକୁ ଏକ ବିଜାତୀୟ ସାହିତ୍ୟ-ଆତ୍ମାର ପ୍ରତିଧ୍ୱନିରେ ଧ୍ୱନିତ କରି ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବାରେ ତତ୍ପର, ଠିକ୍ ସେତିକିବେଳେ ଜାତୀୟ ଧର୍ମ, ସଂସ୍କୃତି ଓ ସର୍ବୋପରି ଓଡ଼ିଶା ମାଟି ପାଣି ପବନ ଆଲୋକକୁ ପ୍ରାଣଭରି ଭଲପାଇ ଯିଏ ଦିନେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ଓ ନିଜସ୍ୱ ପ୍ରତିଷ୍ଠା ପାଇଁ ଲେଖନୀ ଚାଳନା କରିଥିଲେ ସେ ହେଉଛନ୍ତି ପ୍ରତିଭାଦୀପ୍ତ ସ୍ରଷ୍ଟା ମାନସିଂ । ତାଙ୍କ ଲେଖନୀର ସ୍ପର୍ଶରେ ଆମର ସାରସ୍ୱତ ପୂଣ୍ୟପୀଠ ବହୁ ରଙ୍ଗରାଗରେ ହୋଇଛି ଅନୁରଞ୍ଜିତ । ଜନ୍ମମାଟିର ବହୁ ଅବହେଳିତ ଜୀବନଗାଥାକୁ ପ୍ରାଣବନ୍ତ କରି ସେ ସୃଷ୍ଟି କରିଯାଇଛନ୍ତି ତାଙ୍କର ଅନବଦ୍ୟ କାବ୍ୟ ଓ କବିତା । ଜାତୀୟ ପ୍ରୀତି ଓ ପଲ୍ଲୀ ପ୍ରୀତି ଜୀବନ୍ତ ଭାବରେ ଅଭିବ୍ୟକ୍ତି ଲାଭ କରିଛି ତାଙ୍କ ଅନୁପମ ସୃଷ୍ଟିର ପ୍ରତି ପଂକ୍ତିରେ ! ତାଙ୍କ ଭାଷାର କାଉଁରିସ୍ପର୍ଶ, ବିକଚ ଅଭିବ୍ୟକ୍ତିର ବିମୋହନ ମାୟା, ଜାତୀୟ ଭାବନାସମ୍ବଳିତ ସୁସଂଯତ ରୂପ-ଚେତନା, ସହଜସରଳ ଛନ୍ଦ, ଭାଷା ଓ ଭାବର କମନୀୟ ଦ୍ୱୈତ ପ୍ରକାଶ ଓ ନୂତନ ମୌଳିକ କଳ୍ପନାର ହିନ୍ଦୋଳ ପାଲଟିବ ଆଣିଛି ଓଡ଼ିଆ ସାହିତ୍ୟରେ ଏକ ନବ ସଙ୍କେତ । ମାତୃଭାଷା ଓ ମାତୃମାଟିଗତ-ପ୍ରାଣ ମାନସିଂଙ୍କ ନିରବଚ୍ଛିନ୍ନ ସାଧନା ଓଡ଼ିଆ ସାହିତ୍ୟର ବହୁ ବିଭବକୁ କରିଛି ଋଦ୍ଧିମନ୍ତ, ରୁଚିମନ୍ତ ଓ ସମୃଦ୍ଧ ।

ସଂସାରର ମଶାଣି ପଡ଼ିଆରେ ଜୀବନର ଧୂ ଧୂ ଚିତା ଜଳେ । ଜୀବନର ତିକ୍ତମଧୁର ଅନୁଭୂତିକୁ ହିଁ ମଣିଷ ଜୀବନପଥର ପାଥେୟ କରି ବଞ୍ଚିରହେ । ଅଶ୍ରୁସଜଳ ଜୀବନର ଆତ୍ମଗାଥାରେ ମଣିଷ ଲେଖେ ତା ଜୀବନର ମହାକାବ୍ୟ । ତା ଜୀବନାକାଶରେ ଝଡ ଉଠେ, ଝଞ୍ଜା ପିଟେ । ତଥାପି ଜୀବନର ସ୍ୱାଦ ଆଛି

ଜୀବନସୃଷ୍ଟିର ମହତ୍ତ୍ୱ ପ୍ରତିଷ୍ଠା ପାଇଁ ମନୀଷୀ ମନରେ ଗଭୀର ବ୍ୟାକୁଳତା ପ୍ରକାଶ ପାଏ । ସେଥିପାଇଁ ବୋଧହୁଏ ମନୀଷୀ ଜୀବନ ଚିନ୍ତା-ଅଗ୍ନିରେ ପ୍ରତିମୁହୂର୍ତ୍ତରେ ଦଗ୍ଧୀଭୂତ ହୋଇ ନୂଆ ସୃଷ୍ଟି କରିଗଲେ ତା' ଜୀବନର ବର୍ଣ୍ଣାଢ୍ୟ ଇତିହାସ ।

ମାନସିଂହଙ୍କ 'ଜୀବନଚିନ୍ତା' ତାଙ୍କ ଜୀବନର ଏକ କାଳର ବ୍ୟକ୍ତିଗତ ଚିନ୍ତା-ଚେତନାର ଅଭିବ୍ୟକ୍ତି ହୋଇଥିଲେହେଁ ତାହା ସାର୍ବଜନୀନ ଅନୁଭବ ଅନୁଭୂତିର ସତ୍ୟ ଉପରେ ପ୍ରତିଷ୍ଠିତ । କବି ମାନସିଂହ ପାର୍ଥିବ ଜଗତର ବନ୍ଧନମୁକ୍ତ ଜୀବନ-କାବ୍ୟର ଯେଉଁ ବାସ୍ତବ ଚିତ୍ର ରୂପାୟନ କରିଛନ୍ତି, ତାହା ତାଙ୍କ 'ଜୀବନଚିନ୍ତା'ର ପ୍ରତି କବିତାରେ ନିଚ୍ଛୋଳ ଭାବରେ ପ୍ରକାଶ ଲାଭ କରିଛି । 'କବିର ପୁରସ୍କାର' କବିତାରେ ବଙ୍ଗ କବି କୃତ୍ତିବାସଙ୍କ ମହତ୍ତ୍ୱ ଶିଳ୍ପୀପ୍ରାଣର ଉଦାରତା ନେଇ ସେ ଥୋଇଦେଇଛନ୍ତି ତାଙ୍କ ସାରସ୍ୱତ ଆଦର୍ଶ । କବି କୃତ୍ତିବାସଙ୍କ ବିରଚିତ ବଙ୍ଗଳା ରାମାୟଣର ରଚନାଶୈଳୀରେ ଅତ୍ୟନ୍ତ ମୁଗ୍ଧ ହୋଇ ବଙ୍ଗରାଜା ସାଦର ନିମନ୍ତ୍ରଣ ଜଣାନ୍ତି । ବଙ୍ଗକବି କୃତ୍ତିବାସ ତାଙ୍କ ସୃଷ୍ଟ ରାମାୟଣର ଆଦର ଓ ପ୍ରଶଂସା ଶୁଣିବା ଓ ଦେଖିବାପାଇଁ ଏକଦା ଯାତ୍ରା କରନ୍ତି ରାଜଦରବାରକୁ । ରାଜଅନୁଚରବର୍ଗ ରାଜାଙ୍କଠାରୁ ପ୍ରଶଂସା ଓ ଧନପ୍ରାପ୍ତି ବିଷୟରେ କବିଙ୍କୁ ସୂଚନା ଦିଅନ୍ତି । ଏହି କଥା ଶ୍ରବଣ କରି କୃତ୍ତିବାସ ହସହସ ବଦନରେ ପ୍ରକାଶ କଲେ—

ଶୁଣି କୃତ୍ତିବାସ,
କହିଲେ ଫୁଟାଇ ମନ୍ଦେ ବିନମ୍ର ସ୍ମିତ-ହାସ,
"ମୋହର ନୃପତି ପାଶେ ନାହିଁ ତ ଯାଚନା
ଅର୍ଥ, ମାନ, ଅନୁଗ୍ରହ । ମୋ ହସ୍ତରଚନା
କେମନ୍ତେ ଗଉଡ଼ରାଜା କରନ୍ତି ଆଦର,
ତା' କେବଳ ଦେଖିବାର ଉତ୍କଣ୍ଠା ମୋହର ।"

ବାସ୍ତବିକ ସ୍ରଷ୍ଟା ମାନସିଂହ, ଶିଳ୍ପୀଜୀବନର ମହତ୍ତ୍ୱ ଉଦାର ଆଦର୍ଶକୁ ଅତି ପ୍ରାଞ୍ଜଳ ଭାବରେ ଏଠାରେ ପ୍ରକାଶ କରିଛନ୍ତି । ଏ ସତ୍ୟ କେବଳ ବଙ୍ଗକବି କୃତ୍ତିବାସଙ୍କ ବିନମ୍ର ହୃଦୟର ଗଭୀର ଉଚ୍ଛ୍ୱାସ ନୁହେଁ, ଏହା ପୃଥିବୀର ସବୁ ଶିଳ୍ପୀ, କଳାକାର, ଚିନ୍ତକର, ସାହିତ୍ୟିକ ଓ କବିଜୀବନର ସର୍ବଶ୍ରେଷ୍ଠ ଆତ୍ମଗାଥା । କଳାର କଳ୍ପନା, ଶିଳ୍ପର ସାଧନା ଓ ସାହିତ୍ୟର ସେବା ଓ ସାଧନା ଭିତରେ ସେମାନେ ପାଆନ୍ତି ଜୀବନରେ ମୁଖ୍ୟ ଆନନ୍ଦ ଓ ସନ୍ତୋଷ । ସେମାନେ ଗୃହାଲିଙ୍ଗନ ପାର୍ଥିବତାର ପ୍ରାଚୁର୍ଯ୍ୟ, ସେମାନେ ଲୋଡ଼ନ୍ତିନି ବ୍ୟସନର ଉପବନ । ସତେ ଯେପରି ଦୁଃଖ ବେଦନ, ଅଶ୍ରୁ, ବ୍ୟଥା, ବେଦନା, କ୍ରନ୍ଦନ ଓ ହାହାକାର ତାଙ୍କ ସାଧନାର

ସର୍ବଶ୍ରେଷ୍ଠ ପୁରସ୍କାର । ଏହା ହିଁ ବାସ୍ତବିକ ବିଧିର ବିଧାନ । 'କବିର ପୁରସ୍କାର' କବିତାରେ ସବୁ ମହାନ୍ କବିଙ୍କ ଜୀବନର ପରିଚୟସୂଚକ ପ୍ରଦତ୍ତ ହୋଇଛି । ବିଧାନାଥଙ୍କ ଭାଷାରେ—

''ଶୁଷ୍କବନ୍ଧ୍ୟ ଯଶ ସଙ୍ଗେ ଅର୍ଦ୍ଧାଶନ
ପ୍ରତିଭାର ସିନା ଲଲାଟ-ଲିଖନ ।''

'ବୀଣାଭିକ୍ଷା' କବିତାରେ କବିଙ୍କ ଦଗ୍‌ଧୀଭୂତ ପ୍ରାଣର ଆକୁଳ ଆବେଦନ ସେହି ଅଦୃଶ୍ୟ ଲଲାଟ-ଲେଖକ ଶକ୍ତି ପାଇଁ ଅଭିପ୍ରେତ । ଜୀବନର ବୀଣା ତାରର ସୂକ୍ଷ୍ମ ତନ୍ତ୍ରୀରେ ମଣିଷ ବହୁ ରାଗ, ରଙ୍ଗ, ତାଳ, ଲୟ ଦେଇ ନିଜ ଜୀବନର ସଙ୍ଗୀତ ସୃଷ୍ଟି କରେ । କିନ୍ତୁ ଯେତେବେଳେ ଜୀବନବୀଣାର ସୁର ବେସୁରା ଧରେ ସେତେବେଳେ ମଣିଷର ଆତ୍ମା ଉଦ୍‌ବେଳ ବିକଳରେ ଆର୍ତ୍ତଚିତ୍କାର କରେ । କବି ମାନସିଂହ ନିଜର ଦଂଶିତ ଜୀବନର ରକ୍ତାକ୍ତ ଅନୁଭୂତି ପ୍ରକାଶ କରିବାକୁ ଯାଇ କହିଛନ୍ତି—

''ଗାଇବା ଇଚ୍ଛା ଯେବେ ଦେଲ ହେ ପ୍ରଭୁ ମତେ
ବାଇବା ପାଇଁ ବୀଣା ଦିଅ ହେ ମୋର ହାତେ ।''

ସେଇ ଅଦୃଶ୍ୟ ଶକ୍ତିର ପଦତଳେ କବିପ୍ରାଣର ଅଭିମାନଭରା ଆକୁଳ ବିନତି ଭକ୍ତିନମ୍ରକୁସୁମାଞ୍ଜଳି ବିନମ୍ର ଭାବରେ ଆତ୍ମପ୍ରକାଶ କରିଛି ।

''ବାଇବା ପାଇଁ ବୀଣା ଦେଇନା କପାଁ କହ,
ବ୍ୟର୍ଥ ଅଭିଳାଷ ପୋଡ଼ଇ ଅହରହ ।''

ଅନନ୍ତ ଜୀବନ । ମଧୁପରୂପ ତା'ର ଲୀଳାଖେଳା । ତା'ରି ଭିତରେ ହସ ଅଶ୍ରୁର ଚେଉ କାଟି ମଣିଷ ଜୀବନ ଯାହାର ଜୟଯାତ୍ରା । କେତେବେଳେ ମଣିଷ ଦୁଃଖରେ କାନ୍ଦେ—ରାଗ ଅଭିମାନରେ ଭଗବାନର ସିଂହଦ୍ୱାରରେ ମୁଣ୍ଡ କଚାଡ଼େ । ପୁଣି କେତେବେଳେ ସୁଖ ସମୃଦ୍ଧିର ପ୍ରାଚୁର୍ଯ୍ୟ ଭିତରେ ବୁଡ଼ି ରହି ସେ ଦେଖେ ଏ ବିଚିତ୍ରବର୍ଣ୍ଣା ପୃଥିବୀଟି ଗୋଟିଏ ସ୍ୱପ୍ନର ଗୋଲକ । 'ଜୀବନଚିତା'ରେ ଜୀବନର ଚିନ୍ତାଚେତନାର ତରଙ୍ଗଭଙ୍ଗରେ ବିଚରଣ କରି କବିର ଅନ୍ତର କେତେବେଳେ ନିଜର ଦୈନ୍ୟ, କେତେବେଳେ ଅସହାୟତାରେ ଅଶ୍ରୁବର୍ଷଣ କରିଛି । 'ନିଦ୍ରିତ ଭଗବାନ', 'ଧରଣୀବାସ', 'ଶେଷକଥା', 'ବିଶୃଙ୍ଖଳ ସୃଷ୍ଟି', 'ଜୀବନ' ଆଦି କବିତାମାନଙ୍କରେ କବିର ପ୍ରାଣବାଣୀ ବହିଯାଉଛି ତରଳଧାରାରେ, ଓ ତାର ବାଷ୍ପାକୁଳ ଅନ୍ତର ଦହନ ମର୍ମସ୍ପର୍ଶୀ ଭାଷାରେ ପ୍ରକାଶ ପାଉଛି । 'ନିଦ୍ରିତ ଭଗବାନ' କବିତାରେ କବିପ୍ରାଣର

ଅଭିମାନ ନାହିଁ, ନାହିଁ ଭର୍ତ୍ସନା ; ଅଛି କେବଳ ସୃଷ୍ଟି ବିଶ୍ୱରେ ଅସଂଖ୍ୟ ପ୍ରଶ୍ନବାଚୀ ।

'ଦେବଶିଶୁ ଚଳେ ନରକର ଅଭିସାରେ,
ଭଗବାନ ତୁମେ ନିଦ୍ରିତ କେଉଁଠାରେ ?'

କାରୁଣ୍ୟବ୍ୟଞ୍ଜିତ ଶୋକଦୁଃଖତାପିତ ଜୀବନଯାତ୍ରାର ଏଇ ଶାଶ୍ୱତ ଚିତ୍ର ଏଇ ଧୂଳିମଳିନ ଧରିତ୍ରୀବର୍ଗରେ ନିତ୍ୟପ୍ରତି ଅଙ୍କିତ ହେଉଛି । ଧରିତ୍ରୀମାଟିର ଆବିଳତାର ଗନ୍ଧସ୍ପର୍ଶରେ ମଣିଷ ଭୁଲିଯାଏ ତା' ଦେବକର୍ମର ଆଭିମୁଖ୍ୟ । ସେ ନିଜ ହାତରେ ନରକର କବର ଖୋଳି ବିତାଇଦିଏ ତା ମପାଚୁପା ଜୀବନ । ଜୀବନ ଜୀବିକାର ଏଇ ଧରିତ୍ରୀବନ୍ଧା ବନ୍ଧନକୁ ନିରେଖି ପରଖି ଜଣେ ସ୍ରଷ୍ଟା ସୃଷ୍ଟିର ଯଶକେତନକୁ ଉଡ଼ାଇ ବଡ଼ ଆବେଗବିହ୍ୱଳ ପ୍ରାଣରେ କହିଉଠିଛନ୍ତି—ହେ ଭଗବାନ ! ଅମୃତର ଶିଶୁ ମୁଁ । ଅମୃତ ପାନ କରି ଅମୃତଧାରା ଏ ଧରାରେ ବର୍ଷଣ କରିବା ପାଇଁ ତୁମେ ମୋତେ ଏ ଧରାତଳକୁ ପଠାଇଥିଲ; କିନ୍ତୁ ସଂସାରର ପ୍ରବଳ ଭିଡ଼ ଭିତରେ ମୁଁ ମୋର ଆତ୍ମଶକ୍ତି ହରାଇ ବସିଛି । ଭୁଲିଛି ଦେବତାର ମନ୍ତ୍ର । ହଜାଇଛି ଦେବଭୂମିର ଆମୋଦିତ ଗନ୍ଧ । ତେଣୁ ସ୍ରଷ୍ଟାଙ୍କ ବିରୁଦ୍ଧରେ ବିପୁଳ ଅଭିଯୋଗ ଓ ଅଭିସମ୍ପାତ ବାଢ଼ି କହିଛନ୍ତି—

'ମନ୍ତ୍ର ଭୁଲିଛି ମାନବର ଏ ଧରାରେ
ଭଗବାନ, ତୁମେ ନିଦ୍ରିତ କେଉଁଠାରେ ?'

ବାସ୍ତବିକ ଏ ମାଟିମଣ୍ଡାଳ ଧରାର ମମତା, ମୋହ ଓ ଆସକ୍ତିରେ ଦେବତା ବି ଏଠି ନିଜର ବାଟ ଭୁଲେ । ସଙ୍କୀର୍ଣ୍ଣ ସ୍ୱାର୍ଥ, ଅସୂୟା, ଦ୍ୱନ୍ଦ୍ୱ, କଳହ, ରାଗ, ଅଭିମାନ, ଲୋଭ, ମୋହ, ହିଂସା ଓ ଦ୍ୱେଷ ଭିତରେ ସେ ତାର ଆତ୍ମାକୁ କଳଙ୍କିତ କରିବସେ । ତେଣୁ କବିର ଚକିତଚମକ ଦୃଷ୍ଟିରେ ପଡ଼ିଛି ନିତ୍ୟସଂସାରଲୀଳାର ଏକ ନିତ୍ୟ ନୂତନ ଛବି । ତେଣୁ କବି ଗାଇଛନ୍ତି—

"ଧରଣୀରେ ଆସି ମନ୍ତ୍ର ଭୁଲିଲି ପରା
ପାଇବିନିକି ହେ ନିସ୍ତାର ପଥହରା ?
ଦେବତାରେ ଏ ଯେ ସଂସାର ଭୁଲାଇଲା
ସରଗବାସୀ ସେ ମୃତ୍ତିକା ଆଦରିଲା ।"

ଜୀବନର ନିବିଡ଼ ଅନୁଭୂତି କବିଙ୍କ ମାନସପଟରେ ଆଶାନୈରାଶ୍ୟର ଉଦ୍ରେକ କରାଇଛି । କବି ଯେତେବେଳେ ଧରଣୀ-ବାସର ଜୀବନ ରହସ୍ୟର ଆତ୍ମିକ ରୂପକୁ

ଅବଲୋକନ କରିଛନ୍ତି, ସେତେବେଳେ କବି ବେଦନାବିଦ୍ଧ ମାନବାତ୍ମାର ଏକ ଅଶ୍ରୁ-ସଜଳ ସଙ୍ଗୀତ ଗାନ କରି କହିଛନ୍ତି—

"ଅରେ ଅରେ ଲଘେ ମନେ, ଏ ଜୀବନ ଅମୃତରୁ ଜାତ,
ନୁହେଁ ଏହି ମୃତ୍ତିକାର । ଧରଣୀର କଳୁଷ-ସଙ୍ଘାତ
କଳୁଷ କରିଛୁ ମୋର ଶ୍ୱେତ, ପୂତ ଦେବତା ଜୀବନ
ବିରୂପ କରିଛୁ ଦେହ, କର୍ଦ୍ଦମିତ କରିଅଛୁ ମନ ।"

ଜୀବନ କର୍ଦ୍ଦମାପ୍ଳିତ ଶୁଷ୍କପୁଷ୍ପ ନୁହେ । ଜୀବନ ପବିତ୍ର ଓ ସୌରଭମୟ । ନାରାୟଣ ତାର ଜୀବନରସ । ମ୍ଳାନ ମୃତ୍ତିକା ମୁଠାକରେ ଲୀନ ହେବା ତା' ସୃଷ୍ଟିର ଗୌରବ ନୁହେଁ । ମଣିଷ ସ୍ୱର୍ଗଧାମର ବାର୍ତ୍ତା ନେଇ ଦେବତ୍ୱ-ମହିମାବିମଣ୍ଡିତ ଐଶ୍ୱର୍ଯ୍ୟର ଅଗ୍ରଦୂତ ରୂପେ ଧରିତ୍ରୀଧାମକୁ ଆସିଥାଏ । ଏ ଧରିତ୍ରୀର ପୂତିଗନ୍ଧମୟ ଅନ୍ଧକାରର ଆକର୍ଷଣ, ମଣିଷ ମନରେ ଅଶିବ, ଅସତ୍ୟ ଓ ଅସୁନ୍ଦରର ଭାବ ଜାଗ୍ରତ କରାଏ । ମଣିଷ ଜୀବନର ପରମ ପଥରୁ ଓହରିଆସେ । ବ୍ୟର୍ଥତା, ଅସନ୍ତୋଷ ଓ ନିରୁଦ୍ଧ ହାହାକାର ଭିତରେ ସେ କୀଟସମ ଜୀବନଯାତ୍ରା ନିର୍ବାହ କରେ । ସଂସାରର ଯାହା କିଛି ଘୃଣ୍ୟ, କୁତ୍ସିତ, କଦାକାର ତାକୁ ହିଁ ଶ୍ରେୟ ମନେକରି ଭୂମାର ପରମ ସ୍ପର୍ଶକୁ ଭୁଲିଯାଏ । ଜୀବନର ଏଇ ରହସ୍ୟାଚ୍ଛନ୍ନ ଇତରବୃତ୍ତିକୁ ଲକ୍ଷ୍ୟ କରି କବି ମାନସିଂହ ଗାଇଉଠିଛନ୍ତି :

"ସୁଖ ବୋଲି ଯାହା ମିଳେ, ହୁଏ ତାହା ଶେଷ ତିକ୍ତତାରେ
ବ୍ୟର୍ଥତାର ଅସନ୍ତୋଷେ ପ୍ରାଣ ମରେ ନିରୁଦ୍ଧ ହାହାକାରେ ।
ଅବଶେଷେ ଅନ୍ତରୀକ୍ଷେ ହସ୍ତ ଟେକି ମାଗେ ପରିତ୍ରାଣ,—
ହେ ଧରଣୀ, କହ କପାଁ ସ୍ପର୍ଶ ତୋର ଏଡ଼େ ଅକଲ୍ୟାଣ ?"

ତା ପରେ କବି ଫେରି ବୁଝିଛନ୍ତି ଧରଣୀର କୁସୁମିତ ଜୀବନର ଶାଶ୍ୱତ ଆନନ୍ଦବୋଧକୁ । ଦାରିଦ୍ର୍ୟଭାରାକ୍ରାନ୍ତ ଅଶ୍ରୁସଜଳ ମାନବଜୀବନର ସବୁ ଅକଲ୍ୟାଣ ଭିତରେ ଏ ମାଟିର ଧରା ପବିତ୍ର, ମନୋଜ୍ଞ ଓ ମଧୁର । ସ୍ନେହ ମମତା ମନ୍ଦାକିନୀର ପ୍ଲାବନରେ ଧରିତ୍ରୀ-ସ୍ୱର୍ଗର କଳ୍ପନା ମଣିଷ କରିବସେ ଏଇ ମାଟିରେ । ଭୁଲେ ତା ଦୁଃଖପୀଡ଼ିତ ଜୀବନର ତିକ୍ତ ଅନୁଭୂତି । ବାସ୍ତବିକ ଶତସହସ୍ର ବନ୍ଧନ ଓ ଜଞ୍ଜାଳ ଭିତରେ ହିଁ ଜୀବନର ସ୍ୱାଦ ଅଦ୍ଭୁତ । ସଂଗ୍ରାମମୁଖର ମଣିଷର ଜୀବନ । ତିକ୍ତ ଅନୁଭୂତି ହିଁ ତା ଜୀବନର ପ୍ରାଣ । ତେଣୁ ମନୋଜ୍ଞ ଏ ସୃଷ୍ଟି । ମଧୁର ଏ ଧରିତ୍ରୀର ଜୀବନ । କବିଙ୍କ ଭାଷାରେ :

ତଥାପି ଧରଣି ! ତୁମ୍ଭେ, ପ୍ରିୟ୍ସ ଏତେ ଗୁରୁ ଅକଲ୍ୟାଣେ,
ତୋ ମାଟିରେ ମାନବର ଗୃରୁସ୍ନେହ ବ୍ୟଥିତା ବିଧାନେ !

× × × ×

"ଧରଣୀର ସୁଖଦୁଃଖ ଜଞ୍ଜାଳରେ ପରମ କଲ୍ୟାଣ
ଦେଖେ ସେ । ମରଣ ମଧ୍ୟେ ଲଭଇ ସେ ଅମୃତ ଆଘ୍ରାଣ ।"

'ଜୀବନ', 'ସ୍ୱର୍ଣ୍ଣପୁର', 'ସୁଖଦୁଃଖ', 'ବନ୍ଧନ', 'ପ୍ରାଣପକ୍ଷୀ' ପ୍ରଭୃତି କବିତାରେ କବି-ଆତ୍ମାର ମର୍ମବାଣୀ ପ୍ରକାଶ ପାଇଛି । 'ବନ୍ଧନ' କବିତାରେ କବିଙ୍କ ବ୍ୟକ୍ତିଗତ ଚିନ୍ତା ଏକ ସାର୍ବଜନୀନ ଚିନ୍ତା ସମୁଦ୍ର ଭିତରେ ଲୀନ ହୋଇଯାଇଛି । ବେଳେବେଳେ କବି-ଜୀବନର ବେଳାଭୂମିରେ ମଧ୍ୟ ପିଟୁଛି ବ୍ୟକ୍ତିଗତ ସ୍ୱାର୍ଥବନ୍ଧନର ମାୟା-ମଗ୍ନଚଳା । ତଥାପି ଏ ସବୁର ନିବିଡ଼ ବନ୍ଧନର ସରହଦ ଡେଇଁ ତାଙ୍କ ପ୍ରାଣପକ୍ଷୀ ଡେଣା ଉଡ଼ାଇ ଉଡ଼ିଯିବାକୁ ବ୍ୟସ୍ତ ବ୍ୟାକୁଳ ହୋଇଉଠିଛି । ଜଞ୍ଜାଳ-ଜର୍ଜ୍ଜରିତ ଜୀବନର ସ୍ୱାଦକୁ କବି ଉପେକ୍ଷା କରିପାରିନାହାନ୍ତି । ତେଣୁ ବଡ଼ ଦୁଃଖ-ଆବେଗରେ ନିଜ ମନତଳର ସାଇତା କଥାକୁ ପ୍ରକାଶ କରି କହିଛନ୍ତି :

କ୍ଷୁଦ୍ର ମୁଁ, ମୋ-ଯୁଗ୍ମ ଗ୍ଲାନ୍ତ କମ୍ପି ଶୁଣେ ବିଶ୍ୱର କ୍ରନ୍ଦନ ?
କେ ଡାକେ,—'ଜାତି ଯେ ମରେ, ଛିଣ୍ଡାଅ ହେ ତୁମର ବନ୍ଧନ !
କେ ହେଲେ ସ୍ୱର୍ଗରେ କହୁ କେଉଁ ସତ୍ୟପଥ ଧରିଯାଇ,
ବନ୍ଧନ କାଟିବା ଇଚ୍ଛା,—ଦୁଃଖ ଲାଗେ, ପାରେନା ଛିଣ୍ଡାଇ !

କବି ନିଜ ପ୍ରାଣରେ ଆତ୍ମବିରୋଧର ତୀବ୍ର ଯନ୍ତ୍ରଣା ଅନୁଭବ କରିଛନ୍ତି । ପ୍ରାଣରେ ସତ୍ୟ-ଶିବ-ସୁନ୍ଦରର ମହତ୍ତ୍ୱ ପ୍ରେରଣା ଅଥଚ ମନରେ ଅନ୍ୟ ପକ୍ଷରେ ପଙ୍କିଳ କ୍ଷୁଦ୍ର କାମନା ଓ ଇତର ପ୍ରଲୋଭନ । କେବଳ କବି ଯେ ଏହି ଦ୍ୱନ୍ଦ୍ୱ ବନ୍ଧନରେ ବନ୍ଧା, ତା ନୁହେଁ । ସମଗ୍ର ମାନବଜାତି ପାଇଁ ଏହି ବନ୍ଧନର ଲୀଳା ପରମ ସତ୍ୟ । ତେଣୁ ସ୍ରଷ୍ଟାଙ୍କ ବିରୁଦ୍ଧରେ ତାଙ୍କର ବିପୁଳ ଅଭିଯୋଗ ଓ ନିଷ୍ଠୁର ଅଭିସମ୍ପାତ । ଯିଏ ଦିନେ ଥିଲା ଶୁଭ୍ର, ସୁନ୍ଦର ଓ ପବିତ୍ର, ସେଇ ମଣିଷ ଆଜି ଏହି ମାୟାଧୂଳିଧରଣୀର ଅଶୁଭ ସ୍ପର୍ଶରେ ଅଶୁଚି ହୋଇପଡ଼ିଛି । କବି ମଧ୍ୟ ଲକ୍ଷ୍ୟ କରିଛନ୍ତି ଯେ ଆଜିର ଏହି ଅବସାଦଗ୍ରସ୍ତ ବ୍ୟାଧିପୀଡ଼ିତ ସଂସାରର ନର ପାଇଁ ଭଗବାନ ଏକାବେଳକେ ନିଶ୍ଚେଷ୍ଟ । ସେ ଆଜି ମୂକ ବଧିର ଭଳି, ନିଜ ସୃଷ୍ଟି ଗୌରବର ମହତ୍ତ୍ୱ ଭୁଲିଯାଇଛନ୍ତି । 'ନିଦ୍ରିତ ଭଗବାନ', 'ଶେଷକଥା' ଓ 'ବିଶୃଙ୍ଖଳ ସୃଷ୍ଟି' ଆଦି କବିତାରେ କବିଙ୍କର ଏଥିପାଇଁ ତୀବ୍ର ଈଶ୍ୱରବିଦ୍ରୋହ ପ୍ରକାଶ ପାଇଛି । ଏସବୁ ଅମଙ୍ଗଳ ପାଇଁ ଭଗବାନ ଏକାନ୍ତ ଭାବରେ ଦାୟୀ, ଏହି କଥାକୁ ସେ ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି ।

'ହେ ବିଧାତା, ଦେଲ କପାଁ ମୋ ଜୀବନେ ଯେତେ ଯାହା ତିକ୍ତ ଅଭିଜ୍ଞତା ।' ଖିଆଲି ବିଧାତା ଲାଗି ଅନୁଯୋଗଭରା ଅଭିଯୋଗ ଏଥିରେ ଭରିରହିଛି । ଏ ରହସ୍ୟ କୁହେଳୀଘେରା ମଣିଷ ଜୀବନ ସୃଷ୍ଟିର ଅନ୍ତରାଳରେ ସ୍ରଷ୍ଟାର କି ମହତ୍ ଅଭିଯାନ ଭରିରହିଛି, ସେ କଥା ମଣିଷ ଜାଣିପାରେନା । ନିଜ ପ୍ରାଣର ଦୁଃଖ କହିବାକୁ ଯାଇ କବି ତେଣୁ ମର୍ତ୍ତ୍ୟ ମଣିଷର ଅସହାୟ, ନିରୁପାୟ ଓ ଦୁର୍ବଳତାର କଥା ହିଁ କହିଛନ୍ତି । ଯିଏ ମଣିଷ ହୃଦୟରେ ସ୍ନେହ ପ୍ରେମ, ଦୟା, ପ୍ରୀତି, ମମତାର କଲ୍ୟାଣ ଭରିଦେଇଛନ୍ତି, ସିଏ ପୁଣି ଅତି ନିଷ୍ଠୁର ଭାବରେ ମଣିଷକୁ ବୀଭତ୍ସ, ପାପପଙ୍କିଳ ପଥକୁ ଠେଲିଦିଅନ୍ତି । ମଣିଷ-ହୃଦୟମନ୍ଦିରରୁ ଲିଭିଯାଏ ସତ୍ୟ-ଶିବ-ସୁନ୍ଦରର ବତି । ସ୍ନେହପ୍ରୀତିଭରା ମଣିଷର ପ୍ରାଣରେ ବାଜିଉଠେ ଅସତ୍ୟ ଓ ଅକଲ୍ୟାଣର ଭେରୀତୂରୀ । ଏହି ସାର୍ବଜନୀନ ସତ୍ୟକୁ ଆବିଷ୍କାର କରି କବି ଘୋଷଣା କରିଛନ୍ତି :

'ଅନ୍ତରେ ଆପିଲ ମୋର ସତ୍ୟ, ଶିବ, ସୁନ୍ଦରର ବତି,
ବାହାରେ ଯେ ପଥେ କିନ୍ତୁ ଘୂରାଇଛ ମୋ ଚରଣଗତି,
ସେ ପଥେ, କି ବୀଭତ୍ସତା, କିବା ପାପ, କି ଅବା ଅନ୍ୟାୟେ
ଅଜ୍ଞାତେ ପୂରାଇ ମତେ, କଳୁଷିତ କଲ ଚିତ୍ତେ, କାୟେ ।
ପ୍ରାର୍ଥୁଛି ମୋ ଦୀନ ଆତ୍ମା ସ୍ୱରଗର ଜ୍ୟୋତି ସଦାକାଳେ,
ବିପଥିଲ ପଦେ ମମ, ଟାଣି ମତେ ମୋହ ଅନ୍ଧକାରେ ।'

ବାସ୍ତବିକ ଏଥିରେ କେବଳ କବିପ୍ରାଣର ପ୍ରତିଧ୍ୱନି ନାହିଁ; ଏଥିରେ ଅଛି ସର୍ବକାଳୀନ ଯୁଗମାନବର ଅନ୍ତର୍ଲିପି । ବେଦବେଦାନ୍ତ ଓ ଶାସ୍ତ୍ରପୁରାଣରେ ମର୍ମକଥା ଓଁକାର ମାଝାରେ ପ୍ରଚ୍ଛନ୍ନ ଥିଲାପରି କବିଙ୍କ ଉକ୍ତିରେ ସ୍ରଷ୍ଟା, ତାଙ୍କର ସୃଷ୍ଟିର ବିରାଟତା ଓ ବିଶାଳତାର ବାର୍ତ୍ତାରେ ହିଁ ନିହିତ । ସଂସାରମରୁର ଧୂଧୂ ତାତିରେ ଜୀବନସଂଗ୍ରାମ ଶେଷ ହୋଇଯାଏ ନାହିଁ; ବରଂ ପ୍ରାଣର ଆତ୍ମବିଶ୍ୱାସ ନେଇ ସଂଗ୍ରାମରତ ରହେ ସ୍ଥିତି ପାଇଁ ! ମନୁଷ୍ୟ ନିଜେ ନିଜର ସ୍ରଷ୍ଟା । ବଳିଷ୍ଠ ବ୍ୟକ୍ତିତ୍ୱ ହିଁ ସତ୍ୟ, ପ୍ରେମ ଓ ଆନନ୍ଦର ବାର୍ତ୍ତାବହ । ନିଜେ ମଣିଷ ଚାହିଁଲେ ସାଧନା ବଳରେ ସତ୍ୟ, ଶିବ, ସୁନ୍ଦରକୁ ଜୀବନରେ ଲାଭ କରିପାରିବ ।

ପାପ ଯାହା, କୁତ୍ସିତ ଯା' ଲାଞ୍ଛନା ଯା,' ପିଙ୍ଗିତା' ବନ୍ଧନ
ସତ୍ୟେ, ଶିବେ ଶବଳିତ କରିବ ଏ ବିକଳ ଜୀବନ ।

ଖିଆଲି ବିଧାତା ଲାଗି ଅନୁଯୋଗ ଅବା ଅଭିଯୋଗ,
ନ ରଚି,—କଷଣେ, ଲୁହେ ନରଲାଗି ରଚିଯିବ ଯାଗ ।

ପ୍ରକୃତରେ ଏହିପରି ସମର୍ପିତ ଜୀବନହିଁ ଦେଶଜାତିର ଆଲୋକସ୍ତମ୍ଭ । କର୍ତ୍ତବ୍ୟବୋଧ ଓ ନୀତିବୋଧରେ ଆସ୍ଥା ସ୍ଥାପନ କରି ଜୀବନଯାତ୍ରା ନିର୍ବାହ କଲେ, ଅଶିବ, ଅସତ୍ୟ ଓ ଅସୁନ୍ଦରର ସତ୍ୟଶିବସୁନ୍ଦରର ଅମୃତସ୍ପର୍ଶରେ ଅଚିରେ ହଟିଯିବ । ହସିଉଠିବ ଦିବ୍ୟଜ୍ୟୋତିରେ ମଣିଷର ଜୀବନ । ଏଇ ଆଶା ବକ୍ଷରେ ପୋଷଣ କରି ଥିଆଇ ବ୍ୟଭିଚାର ନିଷ୍ଠୁରତା ବିରୁଦ୍ଧରେ କବି ବିଦ୍ରୋହ ବାକ୍ୟ ଉଚ୍ଚାରଣ କରିଛନ୍ତି । ଜୀବନର ହସ ଅଶ୍ରୁ, ବ୍ୟଥା ବେଦନା ଚହଟରେ କବି ଦେଖି ପାରିଛନ୍ତି ବିଶୃଙ୍ଖଳ ସୃଷ୍ଟିର ସଙ୍କେତ । ସାମାଜିକ ଜୀବନ ଆଜି ସମସ୍ୟାସଙ୍କୁଳ । ସାମାଜିକ ଜୀବନ ଆଜି ଶୃଙ୍ଖଳିତ ନୁହେଁ । ସୃଷ୍ଟିର ମହତ୍ତ୍ୱ ଆଜି କଳଙ୍କିତ । ଗ୍ରହିଆଡ଼େ ଆଜି ଶୋଷଣ, କର୍ଷଣ, ପେଷଣ, ଅତ୍ୟାଚାର ଓ ବ୍ୟଭିଚାରର ଜୟଢାକ। ଉଠୁଛି । ଜଗତ ଓ ଜୀବନର ସୌନ୍ଦର୍ଯ୍ୟ ଆଜି ବିଷଦଂଷ୍ଟ୍ର । ଧର୍ମ, ସମାଜ, ଶିକ୍ଷା ଦାରିଦ୍ର୍ୟ, ବ୍ୟାଧି ପ୍ରଭୃତିଗୁଡ଼ିକ ଜଗତ ଓ ଜୀବନର ସୌନ୍ଦର୍ଯ୍ୟକୁ ହତ୍ୟା କରୁଛନ୍ତି । ଜଗତ ଓ ଜୀବନର ଶୋଭନ ସଙ୍ଗତି ଓ ସୌନ୍ଦର୍ଯ୍ୟକୁ ନଷ୍ଟ କରି ଚାଲିଛି ଆମ ସାମାଜିକ ବିଶୃଙ୍ଖଳ ଦୁର୍ବ୍ୟବସ୍ଥା—

'ଅଯୋଗ୍ୟ ମସ୍ତକେ ମଣି, ଯୋଗ୍ୟତାର ନାହିଁ ପୁରସ୍କାର,
ପାପର ପରମ ଜୟ, ସାଧୁ ଲଭେ ନିତ୍ୟ ଅପମାନ ।'

ଏହି ବ୍ୟାଧିଗ୍ରସ୍ତ ବିଶୃଙ୍ଖଳ ସୃଷ୍ଟିର ନଷ୍ଟଚରିତ ଦେଖି କବି ହୋଇ ଉଠିଛନ୍ତି ବିପ୍ଳବୀ । ବିଦ୍ରୋହ ଘୋଷଣା କରିବାକୁ ସେ ପତିତ, ନିର୍ଯ୍ୟାତିତ, ଦୁର୍ବଳ, ଦୀନଦରିଦ୍ର ଓ ଲାଞ୍ଛିତ ମାନବର ପ୍ରାଣରେ ଭରିଦେଇଛନ୍ତି ନବଜାଗୃତିର ମହାମନ୍ତ୍ର ! ସେମାନଙ୍କୁ ଆହ୍ୱାନ ଦେଇ କହୁଛନ୍ତି, ତୁମେ ସମସ୍ତେ ଏକଜୁଟ ହୁଅ । ଏହି କୁସଂସ୍କାରଗ୍ରସ୍ତ ସମାଜକୁ ଭାଙ୍ଗି ଚୂରମାର କରିଦିଅ । ସେଇ ଭଗ୍ନସ୍ତୂପ ଉପରେ ନୂତନ ସମାଜ ଗଠନ କର ।

'ଉଠ ସର୍ବେ, ନାଶ ମନୁ ଏକାବେଳେ ଏ ଅନ୍ଧ ବିଶ୍ୱାସ,
ନୂତନ ସୃଷ୍ଟିରେ କର ଅନ୍ୟାୟର ନିଃଶେଷ ବିନାଶ ।
ବ୍ୟର୍ଥ ଯଦି ହୁଏ ତାହା, ଖୋଜି ନେବା ମୁକ୍ତି, ବିନାଶରେ,
ନରଦର୍ପେ ଅରୁକନା ଈଶ୍ୱରର ସିଂହାସନ ଥରେ ।'

ସ୍ରଷ୍ଟା ମାନସିଂହ 'ଜୀବନଚିତା'ରେ ଜାଗତିକ ବିଶ୍ୱମାନବ ଜୀବନର ଏକ ଜୀବନ୍ତଚିତ୍ର ପ୍ରଦାନ କରିଛନ୍ତି । ଏଥିରେ ଫୁଟିଉଠିଛି କବିମନର ଅନ୍ତରଙ୍ଗ ଅନ୍ତର୍ଲିପି ମଞ୍ଜୁଳ ଭାବରେ । ଶାନ୍ତି, ବିପ୍ଳବ, ଅଭିମାନ, ଅଭିଯୋଗ ଓ ଅଭିସମ୍ପାତର ବାଣୀ ବହନ କରି 'ଜୀବନଚିତା'ର ପରିସମାପ୍ତି ଘଟିଛି । ସୃଷ୍ଟି ଓ ସ୍ରଷ୍ଟା ବିରୁଦ୍ଧରେ ସ୍ରଷ୍ଟା ମାନସିଂହଙ୍କ ଜୀବନବାର୍ତ୍ତା ଏକ ଚିରନ୍ତନ ଅଗ୍ନିଗାଥାର ମନୋଜ୍ଞ ପ୍ରକାଶ ।

# 'କେମା' କାବ୍ୟ--ଏକ ଅଧ୍ୟୟନ

ଅଧ୍ୟାପକ—ଶ୍ରୀ କଣାମଣି ମିଶ୍ର
ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ

ସାମ୍ୟବାଦୀ ଆନ୍ଦୋଳନର ପୁରୋଧା ଲେନିନ୍ ଥରେ କହିଥିଲେ—"Art belongs to the people. It must with its widest stretching root go-out into the very thick of the broadest masses. It must combine the feelings, thoughts and will of the masses and uplift them." ଏହିଠାରୁ ଆରମ୍ଭ ହେଲା ସାହିତ୍ୟରେ ପ୍ରଗତିବାଦ । ପରମ୍ପରା ବିରୁଦ୍ଧରେ ପ୍ରବଳ ବିଦ୍ରୋହ ଘୋଷଣା କରି ନବ-ଜୀବନ ଏବଂ ମୂଲ୍ୟମାନସକୁ ସାହିତ୍ୟରେ ରୂପାୟିତ କରିବାପାଇଁ ନବୀନ ଲେଖକଗଣ ପ୍ରତିଜ୍ଞାବଦ୍ଧ ହେଲେ । (୧) ସାହିତ୍ୟରେ କଳ୍ପନା-ବିଳାସ ଓ ପଦ୍ମମହଲର ଗଜଦନ୍ତ ମିନାର ପ୍ରତ୍ୟାଖ୍ୟାନ କରାଗଲା ଏବଂ ତା ପରିବର୍ତ୍ତେ ଜନମାନସର ଆଶା, ଆକାଙ୍କ୍ଷା, ସୁଖ ଦୁଃଖର ଯଥାର୍ଥ ଚିତ୍ରଣ ପ୍ରକାଶିତ ହେଲା ।

---

(୧) ଲେନିନଙ୍କ ପ୍ରାୟ ଶହେବର୍ଷ ପୂର୍ବରୁ ଇଂରେଜ କବି ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ସାଧାରଣ ଜନର ଭାଷାରେ ସାଧାରଣ ଜନର ଜୀବନକୁ ପ୍ରକଟିତ କରିବା ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି ବୋଲି ଆନ୍ଦୋଳନ ଆରମ୍ଭ କରିଦେଇଥିଲେ । ୧୮୮୩ ଖ୍ରୀ: ଅ: ରେ ଇଂଲଣ୍ଡରେ ସମାଜବାଦୀ ଆଦର୍ଶରେ ଫେବିଆନ ସୋସାଇଟି ଗଠିତ ହୋଇଥିଲା, ଯାହାର ସଭ୍ୟ ଥିଲେ ବର୍ଣ୍ଣାର୍ଡ଼ ଶ ଓ ଆନିବେସାନ୍ତ ଇତ୍ୟାଦି । ଏ ଦେଶର ତରୁଣ ବୁଦ୍ଧିଜୀବୀମାନେ ଐତିହାସିକ ଜ୍ଞାନର ଅନୁପାତ ହରାଇ, ସକଳ ଆଧୁନିକତା ଲେନିନ୍, ଷ୍ଟାଲିନ-ଠାରୁ ଆରମ୍ଭ ହୋଇଥିଲା ବୋଲି ଧରିନେଇଥାନ୍ତି ଓ ପ୍ରଚାର କରିଥାନ୍ତି । ଇଂଲଣ୍ଡୀୟ ଜୀବନରେ ଯେପ୍ରକାର ମନୋଜ୍ଞ ସମାଜବାଦ ପ୍ରତିଷ୍ଠିତ ହୋଇପାରିଛି, କୋଟି କୋଟି ବିରୋଧୀ ଲୋକଙ୍କୁ ହତ୍ୟା ଓ କାରାରୁଦ୍ଧ କରି ମଧ୍ୟ କୌଣସି କମ୍ୟୁନିଷ୍ଟ ରାଷ୍ଟ୍ରରେ ତାହା ସମ୍ଭବ ହୋଇ ପାରି ନାହିଁ । —ସ

ଚରାଚରର ଧର୍ମବିଶ୍ୱାସ ସମାଜର ଚିନ୍ତାଧାରାକୁ ସଙ୍କୁଚିତ କରୁଥିବାରୁ ତାହାର ବିରୁଦ୍ଧରେ ପ୍ରତିବାଦର ମୂର୍ଚ୍ଛନା ପ୍ରକାଶ ପାଇଲା । (୨) ଯୁଗର ଏହି ରୁଚି ଅନୁଯାୟୀ ଆମର ସମସାମୟିକ ଓଡ଼ିଆ ସାହିତ୍ୟ ଗଢ଼ି ଉଠିଲା । ସ୍ୱାଧୀନତା ଆନ୍ଦୋଳନ, ଜାତୀୟ ଚେତନା, ସଂସ୍କାର ମନୋବୃତ୍ତି ଓ ତତ୍ସଙ୍ଗେ ଅନ୍ୟାନ୍ୟ ସାହିତ୍ୟର ପ୍ରଭାବ ଓଡ଼ିଆ ସାହିତ୍ୟକୁ ବହୁମୁଖୀ କରି ତୋଳିଲା । ଏହି ପୃଷ୍ଠଭୂମିରେ ଆବିର୍ଭାବ ହେଲା ସବୁଜ ଗୋଷ୍ଠୀର । ସବୁଜଦଳୀୟ ସାହିତ୍ୟସାଧକଗଣ ପ୍ରଧାନତଃ ରୋମାଣ୍ଟିକଧର୍ମୀ ଥିଲେ । ପାଶ୍ଚାତ୍ୟ ସାହିତ୍ୟ ଓ ପଡ଼ୋଶୀ ବଙ୍ଗ ସାହିତ୍ୟର ପ୍ରଭାବରେ ପ୍ରଭାବିତ ହୋଇ ହିଁ ସେମାନେ ଓଡ଼ିଆ ସାହିତ୍ୟର ନୂତନ ଦିଗ୍‌ଦର୍ଶନ ପାଇଁ ପ୍ରୟାସୀ ହେଲେ ।

କବି ମାନସିଂ ଏହି ସମୟର ହେଲେ ମଧ୍ୟ ସେ କୌଣସି ଦଳୀୟ ନୁହନ୍ତି କିମ୍ବା କୌଣସି ଗୋଷ୍ଠିଗତ ପ୍ରଭାବରେ ପ୍ରଭାବିତ ନୁହନ୍ତି । ତାଙ୍କର ବ୍ୟକ୍ତିଗତ ରୁଚି, ଭାବଧାରା ଓ ଶୈଳୀ ଏକ ସ୍ୱତନ୍ତ୍ର ଶ୍ରେଣୀର । ତାଙ୍କ ରଚନାରେ ଜାତୀୟତା, ସଂସ୍କାର ମନୋବୃତ୍ତି, ପ୍ରକୃତିର ଜୀବନ୍ତ ଓ ସ୍ୱାଭାବିକ ଉପାସନାର ପ୍ରାଚୁର୍ଯ୍ୟ, ଯାହା ସାଧାରଣତଃ ପ୍ରକୃତ ପ୍ରତିଭାବନ୍ତ କବିମାନଙ୍କ ରଚନାରେ ଦେଖିବାକୁ ମିଳିଥାଏ, ପ୍ରାୟ ପ୍ରତ୍ୟେକ ପ୍ରତିଭାବାନ ତରୁଣ କବିମାନଙ୍କ ପରି ଗଭୀର ପ୍ରେମାନୁଭୂତି ହିଁ ମଧ୍ୟ ତାଙ୍କର ଏକ ସ୍ୱାତନ୍ତ୍ର୍ୟ । ସର୍ବଦେଶ ଓ ସର୍ବଯୁଗର କାବ୍ୟ-କବିତା ମଧ୍ୟରେ ନରନାରୀର ପ୍ରେମ ରୂପାୟିତ ହୋଇଆସିଛି । ରାମ-ସୀତା, ରାଧା-କୃଷ୍ଣ, ଦୁଷ୍ମନ୍ତ-ଶକୁନ୍ତଳା ଏହି ପ୍ରେମର ଜୟଗାନ ହିଁ ବିଶ୍ୱ-ଚେତନାରେ ଅମର । ପ୍ରେମର ପ୍ରକାର ବିଶ୍ଳେଷଣ କରି କୁହା ଯାଇଛି ଯେ—"In the love of an object, there is pleasure in presence and desire in absence; hope or despondency in anticipation, fear in the expectation of its loss, injury or destruction; surprise or astonishment in its unexpected changes; anger when the course of our interest is opposed or frustrated; elation when we triumph over obstacles; × × ×."

( Encylopedia of Religion and Ethic—Vol.8 )

(୨) ତା'ହେଲେ ଗାନ୍ଧୀ, ରବୀନ୍ଦ୍ର ଓ ରାମକୃଷ୍ଣଙ୍କର ବିଶ୍ୱମୟ ଖ୍ୟାତିର କୈଫିୟତ୍ କ'ଣ ? କୌଣସି ଷ୍ଟେଟମେଣ୍ଟ ଦେଲାବେଳେ ଅଗପଛ୍ଚାତ୍ ଭାବିବା ଉଚିତ ନୁହେଁ କି ?

ଏକମାତ୍ର କବି ମାନସିଂ ଆଧୁନିକ ଓଡ଼ିଆ ସାହିତ୍ୟର ଆଧୁନିକ ଦୃଷ୍ଟିକୋଣ ନେଇ ପ୍ରେମର ମହିମାସ୍ଥ ରୂପାୟନ କରିଅଛନ୍ତି । ଦେହ ଓ ଦେହାତୀତ ଉଭୟ ପ୍ରେମର ଜୟଗାନ ଘୋଷଣା କରିଛି ତାଙ୍କର ବିଭିନ୍ନ କାବ୍ୟ-କବିତା । ତାଙ୍କର ଭାଷାରେ କହିବାକୁ ଗଲେ—

"ପ୍ରେମ ନୁହେଁ ଦେହ-ଦେହୁଁ ଭୋଗ ଅନ୍ୱେଷଣ
ପ୍ରେମ, ଏକ ଆତ୍ମାପ୍ରତି ଅନ୍ୟର ବନ୍ଦନ ।
ପ୍ରେମ, ପୂର୍ଣ୍ଣ ସମର୍ପଣ ଏକ ଅନ୍ୟ ପାଇଁ
ପ୍ରେମ, ଆନ ପାଇଁ ଦେବା ନିଜକୁ ହଜାଇ ।"

ପ୍ରେମ ଓ ସମାଜବାଦୀ ଚିନ୍ତାଧାରାର ସର୍ବାଧୁନିକ ଦୃଷ୍ଟିକୋଣରୁ ମାନସିଂଙ୍କ 'ଜେମା' ଏକ ଅନବଦ୍ୟ ସୃଷ୍ଟି । ପୁଣି ଏହାର ଚରମୋତ୍କର୍ଷ ରହିଛି କୌଣସି ପ୍ରକାର ଦୃଷ୍ଟିକୋଣ ବା ବାଦର ପ୍ରବର୍ତ୍ତନରେ ସେତେ ନୁହେଁ, ଯେତେ ତାର ସ୍ୱତନ୍ତ୍ର ନିର୍ମାଣ-କଳାର ମହତ୍ତ୍ୱ, ମାଧୁର୍ଯ୍ୟ ଓ ମହିମାରେ । ଏହାର ନାୟିକା ଏକ ଅଜ୍ଞାତ ପଲ୍ଲୀର ଏକ ହତଭାଗିନୀ ନିରକ୍ଷର କଣ୍ଢେଇ ହେଲେହେଁ, କାବ୍ୟ-ସୌନ୍ଦର୍ଯ୍ୟରେ 'ଜେମା'ର ତୁଳନା କେବଳ ହୋଇପାରେ ଲାବଣ୍ୟବତୀ ବା ବିଦଗ୍ଧ ଚିନ୍ତାମଣି ସହିତ । ମାନସିଂ ତାଙ୍କ ଗାଁର ଏକ ସମସାମୟିକ ଜୀବନ୍ତ ଘଟଣାକୁ କାବ୍ୟ-ଗୌରବ ଦେବାର ମହାନ୍ ପରୀକ୍ଷାରେ ହାତ ଦେଇ, ଓଡ଼ିଆ ସାହିତ୍ୟର ପ୍ରବହମାନ ପ୍ରାଚୀନ ପରମ୍ପରାକୁ ପ୍ରତ୍ୟାଖ୍ୟାନ କରିନାହାନ୍ତି, ବା ଆମର ପରିଚିତ ସାଧାରଣ ଦୈନନ୍ଦିନ ଜୀବନର ଘଟଣାବଳୀକୁ ଏପରି ଉପସ୍ଥାପିତ କରିପାରିଛନ୍ତି ଯେ, ସେ ସବୁ ସୃଷ୍ଟିର ବର୍ଣ୍ଣ-ଗନ୍ଧ ନେଇ, ଆପେ ଆପେ ଉଠିଯାଇଛନ୍ତି ଉଷ୍ଣଙ୍କ ଉଷୀର-ବଟାରେ-କାମ-ଜ୍ୱର-ଉତ୍ତାପ କମାଉଥିବା ରାଜକୁମାରୀ-ନାୟିକାର ଗନ୍ଧ-ଚନ୍ଦ୍ର-ଜଗତର ଧୂପାମୋଦିତ ସ୍ତରକୁ । ଓଡ଼ିଆ ସାହିତ୍ୟରେ ମାନସିଂଙ୍କ ଲେଖନୀ ପ୍ରଥମ କରି ଗାଁ ଝିଅ, ଗାଁ ମାଟି, ଗାଁ ତୋଟା, ଗାଁ କୂଅ, ଗାଁର ଦଳେଇ-ବଣେଇ, ଗାଁରୁ ଝିଅ-ବିଦାୟର ମର୍ମ-ଭେଦୀ କାରୁଣ୍ୟ ଇତ୍ୟାଦି ଉତ୍କଳର ପଲ୍ଲୀଜୀବନକୁ ସମଗ୍ର ଭାବରେ ପରମ କାବ୍ୟଗୌରବ ଦେଇଗଲେ । କାବ୍ୟର କବି ଭାବରେ ମାନସିଂଙ୍କର ଯେପରି ବିଚାର ହେବାର କଥା, ଦୁର୍ଭାଗ୍ୟର ବିଷୟ ଏପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ତାହା ହୋଇନାହିଁ । ମାନସିଂ ଆଧୁନିକ ଯୁଗରେ ଏକମାତ୍ର କବି ଯେ କାବ୍ୟ ଓ ମହାକାବ୍ୟ ଲେଖିଛନ୍ତି । ତାଙ୍କର ଅଗଣିତ ଗୀତ-କବିତାର ମାଧୁର୍ଯ୍ୟରେ ଭୁଲିଯାଇ ଆମେ ପାସୋରି ଯାଇଛୁ ଯେ, କାବ୍ୟ-ସୃଷ୍ଟି ଓଡ଼ିଆ ଭାଷାର ସ୍ୱତନ୍ତ୍ର ବୈଶିଷ୍ଟ୍ୟ, ମନ୍ଦିର ଗଠନ ଯେପରି ଓଡ଼ିଆ ଜାତୀୟତାର ବିଶିଷ୍ଟ ପ୍ରକାଶ । ବସ୍ତୁତଃ ଓଡ଼ିଆ ଜାତୀୟତାର ଯେଉଁ ବଳିଷ୍ଠ ପ୍ରକାଶ ଘଟିଛି ମନ୍ଦିର ଗଠନରେ, ସାହିତ୍ୟରେ ତାହା ପ୍ରାଣ ଲାଭ କରିଛି ମଞ୍ଜୁଳ କାବ୍ୟମାଳା ଦେଇ । ଅଜ୍ଞାତସାରରେ

ମାନସିଂ ପ୍ରତିଭା ଓଡ଼ିଆ ଜାତୀୟତା ଓ ସ୍ୱଭାବର ଏହି ଐତିହାସିକ ବୈଶିଷ୍ଟ୍ୟଙ୍କୁ ବିକଚ ପ୍ରକାଶନ ଦେଇ ସେ ନିଜକୁ ହୁଏତ ସ୍ୱାଭାବିକ ଭାବରେ ପ୍ରମାଣିତ କରିଛନ୍ତି ଯେ ସେ କିପରି ଖାଣ୍ଟି ଓଡ଼ିଆ ମାଟିର ପ୍ରତିଭା—ବାକି ସମସ୍ତେ ଅନୁକରଣ ମାତ୍ର । ନିକ୍ୱଣ, ଉପେକ୍ଷିତା, ଜେମା, ସାଧବ ଝିଅ ଓ କମଳାୟନ ଦେଇ ମାନସିଂ ପ୍ରତିଭାର 'ବିବର୍ତ୍ତନର' ବିଚାର ଆମେ ଏ ପର୍ଯ୍ୟନ୍ତ କରିନାହୁଁ । ମାନସିଂ କିଛି ନ ଲେଖି ଏମାନଙ୍କ ଭିତରୁ ଗୋଟିଏ ଲେଖିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ଅମର ରହିଥାନ୍ତେ । ପ୍ରତ୍ୟେକଟି ବିଶିଷ୍ଟ କାରୁକଳାଭୂଷିତ ଓ ଅନବଦ୍ୟ । 'କମଳାୟନ'ରେ ମାନସିଂ ଚାଲିଯାଇଛନ୍ତି ହୁଏତ ଏକବିଂଶ ଶତାବ୍ଦୀ ଆଡ଼କୁ । କିନ୍ତୁ ଜେମା ଓ ସାଧବ ଝିଅ ଏକାନ୍ତରେ ଓଡ଼ିଶୀ ଜୀବନର ଗାଥା । ଜେମା ସାଧାରଣ ଓଡ଼ିଆ ଜୀବନକୁ ନେଇ ଏକ ଅସାଧାରଣ କାବ୍ୟ-ସୃଷ୍ଟି । ଲାବଣ୍ୟବତୀ, ବିଦଗ୍ଧଚିନ୍ତାମଣି, ଯଯାତି, ପାର୍ବତୀ ଓ ତପସ୍ୱିନୀର ବରେଣ୍ୟ ପଂକ୍ତିରେ 'ଜେମା' ଠିଆ ହେବାରେ କୌଣସି ହୀନମନ୍ୟତା ନାହିଁ । ବରଂ ଏହା ମାନସିଂଙ୍କ ଆଧୁନିକ ରୁଚିସମ୍ମତ ରଚନା ସୌଷ୍ଠବ ସହିତ ତାଙ୍କର ବିଷୟ ନିର୍ବାଚନ ଓ ଚରିତ୍ର ଚିତ୍ରଣ ଦୁଇର ମୌଳିକତାରେ ସ୍ୱର୍ଣ୍ଣମୁକୁଟଭୂଷିତ ।

ଜେମାର ବିଷୟବସ୍ତୁଟି ଅତି ସାଧାରଣ । ସମୁଦ୍ରକୂଳସ୍ଥ ଗୋଟିଏ ଅଖ୍ୟାତ ପଲ୍ଲୀରେ ଖଣ୍ଡାୟତ ବୁଢା 'ଦଳେଇ'ଙ୍କର ବସତି । ତାଙ୍କର ଦୁଇପୁତ୍ର ଓ ଦୁଇଟି କନ୍ୟା । ଜ୍ୟେଷ୍ଠକନ୍ୟାର ନାମ ପଦ୍ମାବତୀ ଓ କନିଷ୍ଠାର ନାମ 'ଜେମା' । ଥରେ ଗଞ୍ଜାମ-ଗ୍ରାମର ଜଣେ ସୌଦାଗର ସେ ଗ୍ରାମକୁ ଆସି ଦୁଇ ଭଉଣୀଙ୍କୁ ଏକତ୍ର ଦେଖି ଉଭୟଙ୍କର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇଛି । ଶେଷରେ ପଦ୍ମାବତୀ ସହିତ ସୌଦାଗରର ବିବାହ ହୋଇଛି । କିଛି ଦିନ ପରେ ପଦ୍ମାବତୀ ସ୍ୱାମୀଙ୍କର ନଷ୍ଟଚରିତ୍ରର ସୂଚନା ପାଇଛି ଓ ଦୁଇଟି ଶିଶୁ ସନ୍ତାନ ରଖି ଇହଧାମରୁ ବିଦାୟ ନେଇଛି । ଏହା ପରେ ସୌଦାଗରର ଲୋଲୁପଦୃଷ୍ଟି ପଡ଼ିଛି କନିଷ୍ଠା 'ଜେମା' ଉପରେ । ପୁନଶ୍ଚ ଚକ୍ରାନ୍ତ କରି ସେ ଜେମାକୁ ମଧ୍ୟ ବିବାହ କରିଛି । ଜେମା ଅପ୍ରାପ୍ତବୟସ୍କା ହୋଇଥିବାରୁ ବିବାହ ପରେ ବାପଘରେ ରହିଛି । ଏଥିମଧ୍ୟରେ ସମ୍ବାଦ ଆସି ପହଞ୍ଚିଛି ଯେ ସୌଦାଗର ଫେରାର । ଋଣଭାରରେ ଜରଜାନ୍ତ ହୋଇ, ପରିଶୋଧର ଅନ୍ୟ ଉପାୟ ନ ପାଇ ରସିକ-ସୌଦାଗର ପଳାତକ ହୋଇଛନ୍ତି । ଦଳେଇ ଏ ସମ୍ବାଦ ପାଇ ସୌଦାଗରର ବିଧବା ଜନନୀ ଓ ଶିଶୁସନ୍ତାନ ଦୁଇଟିଙ୍କୁ ନିଜ ଗୃହକୁ ନେଇଆସିଛନ୍ତି । କନ୍ୟାର ଭବିଷ୍ୟତ ଚିନ୍ତା କରି କରି ଦଳେଇ-ଆଣୀଙ୍କର ମୃତ୍ୟୁ ହୋଇଛି । ଏହାପରେ ଜ୍ୟେଷ୍ଠପୁତ୍ର ଘନଶ୍ୟାମର ବିବାହ କାର୍ଯ୍ୟ ସମ୍ପନ୍ନ କରି ଦଳେଇ ମଧ୍ୟ ଇହଲୀଳା ସମ୍ବରଣ କରିଅଛନ୍ତି । ଗୃହକର୍ମରେ ଲିପ୍ତା ରହି ନିଜ ଭାଗ୍ୟକୁ ଆଦରି ଜେମା ସମୟ କାଟିବାକୁ ଲାଗିଛି । ଏହି ସମୟରେ ନବବଧୂଙ୍କ ଭାଇ 'କୁଣିଆ' ହୋଇ ଆସିଛନ୍ତି । କୁଣିଆଙ୍କର ସଂସ୍ପର୍ଶରେ ଆସି କ୍ରମଶଃ ଜେମାର

ଦମିତ ବାସନା, କାମନା ସଞ୍ଚରିତ ହୋଇଛୁ । ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ ହୋଇଛନ୍ତି । ଧୀରେ ଧୀରେ ସ୍ନେହ, ମମତା ଓ ପ୍ରେମର ଆକର୍ଷଣ ବଢ଼ିଚାଲିଛି । ଅରେ 'ଅଳେଶ୍ୱର' ଠାକୁରଙ୍କ ଦର୍ଶନ କରିବାପାଇଁ ଯିବା ବାଟରେ କେମା କାନ୍ଦୁ ଲକ୍ଷ୍ୟ କରିଛି ଯେ 'କୁଣିଆ' ଅନ୍ୟ ଗୋଟିଏ ସୁନ୍ଦରୀ କନ୍ୟା ପ୍ରତି ମଧ୍ୟ ଆସକ୍ତ । ନାରୀସୁଲଭ ଅଭିମାନ ଓ ଘଣାରେ ପୂର ଉଠିଛି ତା' ମନ । କିଛିଦିନ ପରେ ସ୍ୱାଇସାହକ ତା' ସହିତ ସେଇ କୁଣିଆର ବିବାହ ପ୍ରସ୍ତାବ ବାଢ଼ିଛନ୍ତି; କିନ୍ତୁ କେମା ଦୃଢ଼ତାର ସହିତ ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ନିଜର ଶାଶୁ ଓ ଶିଶୁସନ୍ତାନ ଦୁଇଟିଙ୍କି ଧରି ସ୍ୱାମୀଗୃହକୁ ଯାତ୍ରା କରିଛି । ଏହିଠାରେ କାବ୍ୟର ପରିସମାପ୍ତି ।

ଗଳ୍ପାଂଶଟି ସାଧାରଣ ହେଲେହେଁ ଏଥିରେ କବିଲେଖନୀରେ ଯେଉଁ କଳାଗତ ନୈପୁଣ୍ୟ ଫୁଟିଉଠିଛି ତାହା ସତ୍ୟରେ ପ୍ରତ୍ୟେକ ପାଠକ ଓ ସମାଲୋଚକଙ୍କୁ ମୁଗ୍ଧ କରିବ । ଅନେକ ପାଠକ 'କେମା' ପଢ଼ୁ ପଢ଼ୁ ବିଳାପ ନ କରି ରହି ନ ପାରନ୍ତି ବୋଲି ଶୁଣାଅଛି । ପିତାମାତାଙ୍କ ନିର୍ଦ୍ଦେଶରେ ବାଲ୍ୟତ ବୟସରେହିଁ ସେ ବିବାହ କରିଛି ସୌଦାଗରକୁ । ଯୌବନର କାଉଁରି ସ୍ପର୍ଶରେ ରଞ୍ଜିତା, ତରଳ ଯୌବନର ଜୁଆରି ମୂଳକରେ ବିଚରଣ କରି ଯେତେବେଳେ କେମା ସ୍ୱପ୍ନ ଦେଖେ—

"ରାଜପୁଅ ସେ ଚତୁର ଚମକାଇ ଅଶ୍ୱଖୁର
ନଇଁବେ କେମାକୁ ନେବାପାଇଁ ସଙ୍ଗତେ,
କେମା ଏଣେ ତେଣେ ଚାହିଁ ଦେଖିବ କେ କାହିଁ ନାହିଁ
ସଁପି ଦେବ ଆପଣାକୁ ବିଜନ ପଥେ
ରାଜପୁଅ ଟେକିବେ କରେ—"

ଠିକ୍ ସେତିକିବେଳେ ସମ୍ବାଦ ପହଞ୍ଚିଲା ଯେ ସୌଦାଗର କୋଉଁ ପଳାତକ । ନବଯୌବନର ପୁଲକଭରା ଜୀବନରେ ଏପରି ଦାରୁଣ ବିପତ୍ତି ଯେକୌଣସି ନାରୀ ପକ୍ଷରେ ଅସହ୍ୟ । ତଥାପି କେମା ତାକୁ ସହ୍ୟ କରିଛୁ, ଏବଂ—

"XX କାଟେ କାଲ, କୁଟି, ସିଁଝାଇ, ବନାଇ,
ଥାଏ ଲାଗି କାମେ, କାରେ ଚାହିଁବାର ନାହିଁ,
କଳା, ଘରକୁ ଯୋଗାଏ;
ପଥେ ଗଗ-କାଖେ ଚଳା ବୁହିଁ, ଆସେ ଯାଏ ।

ମଧ୍ୟାହ୍ନେ କରମୁ ଯେବେ ମିଳେ ଅବସର
ବାନ୍ଧିବସେ ଯତନରେ ଖୋସା ଭାଉଜର,
ପାଦ ଘଷେ ବା ଶାଶୁର;
କନକା ତ ହୁଏ ପୁଣି ଭଗିନୀ-ଶିଶୁର ।"

"Sacrifice, thy name is woman" କଥାଟିର ପଙ୍କ୍ତିବାଳା କେମାର ଚରିତ୍ର ପ୍ରତି ଏହି ଉକ୍ତି ଯଥାର୍ଥ ଭାବରେ ପ୍ରଯୁଜ୍ୟ । ଏତେ ଅଳ୍ପବୟସରେ ସେ ଯେଉଁ କର୍ତ୍ତବ୍ୟପରାୟଣତା ଓ ତ୍ୟାଗର ନିଦର୍ଶନ ଦେଖାଇଛି, ତାହା ଅନନ୍ୟ-ସାଧାରଣ । ମାତ୍ର ଅଳ୍ପ କେତୋଟି ଦିନ ପୂର୍ବରୁ ଯେଉଁ ଝଲଝଲି ଦୃଢ଼ତାଟି କଳ୍ପ-କୁଞ୍ଜରେ ରାଜପୁତ୍ରର ହସ୍ତ ଧରି ଅଶ୍ୱପୃଷ୍ଠକୁ ଉଠିଯାଉଥିଲା, ସେ ପୃଥ୍ୱୀ ଭାଗ୍ୟର ଆବର୍ତ୍ତନରେ କୁଟି, ପିଷାଇ, ବନାଇ, ଶାଶୁର ପାଦ ଘଷି ଓ ଭଗିନୀ-ଶିଶୁର ଜନନୀ ହୋଇ କାଳ କାଟିଛି; ଏହା ବାସ୍ତବିକ ଯେତିକି ବିସ୍ମୟକର, ସେତିକି ବିଷାଦମୟ । 'ଭୁଣିଆ'ର ସାନ୍ନିଧ୍ୟ ଦ୍ୱାରା ତା'ର ଯେଉଁ ସାମୟିକ ଦୁର୍ବଳତା ଦେଖା ଦେଇଛି, ତାହା ମଧ୍ୟ ସ୍ୱାଭାବିକ ଓ ବାସ୍ତବ । ନାରୀର ମନସ୍ତାତ୍ତ୍ୱିକ ଚିତ୍ର ପ୍ରଦାନ କରିବାରେ କବି ଏଠାରେ ଅପୂର୍ବ ସିଦ୍ଧିହସ୍ତତାର ପରିଚୟ ପ୍ରଦାନ କରିଅଛନ୍ତି । ମନୀଷୀ ଫ୍ରଏଡ୍‌ଙ୍କ ମତାନୁଯାୟୀ ମଧ୍ୟ କେମା ଚରିତ୍ରରେ ଏ ଦୁର୍ବଳତା ଅତି ସ୍ୱାଭାବିକ । ଏଥିପାଇଁ ତାର ଚରିତ୍ରରେ କଳଙ୍କ ଆରୋପ କରିବାର ଆଦୌ ଅବସର ନାହିଁ । କିନ୍ତୁ ଯେଉଁ ମୁହୂର୍ତ୍ତରେ ସେ ଜାଣିପାରିଛି ଯେ ତା'ର ପ୍ରେମିକର ମନ ଏକରୁ ଅନେକକୁ ଭ୍ରମର ପରି ସଞ୍ଚାରିତ ହେଉଛି, ସେହି ମୁହୂର୍ତ୍ତରେ ସେ ତାକୁ ପ୍ରତ୍ୟାଖ୍ୟାନ କରିଛି । କ୍ରୋଧ ଓ ଅଭିମାନରେ ସେ ଜର୍ଜରିତ ହୋଇଉଠିଛି । ସେ ସେଥିରୁ ଧୀରେ ଅପସରି ଯାଇଛି । କବିଙ୍କ ଭାଷାରେ—

"ପ୍ରାସାଦେ ଅବା କୁଟୀରେ ଯହିଁ ରହି ରମଣୀରେ
ରାଣୀ ହୋଇ ରହିବାରେ ତା' ଅଭିଳାଷ,

ଏକ ସେ ହୋଇ ରହିବ ଭାଗୀ ଆନ କେ ନ ଥିବ

ଏକଛତ୍ର ଶାସନେ ତା ଚିତ୍ତ ବିଳାସ,
ବହୁ ମଧ୍ୟେ ହୋଇଲେ ଏକ
ରହିଲା କି ଆଉ ସେଥି ନାରୀର ଟେକ !"

ଏହାପରେ ସପ୍ତସାବିତ୍ରୀ ଦେଶର 'କେମା' ନିଜକୁ ପରୀକ୍ଷିତ କରିଛି । ସେଇ ଭରା ଯୌବନର ଉଚ୍ଛୁଳା ଜୀବନ ନେଇ ସେ ସଂଯମର ଅଗ୍ନିମୟ ମାର୍ଗରେ ପାଦ ଥୋଇଛି । ତା'ର ପ୍ରେମ କେବଳ ଦେହ ମଧ୍ୟରେ ସୀମାବଦ୍ଧ ନ ରହି, ଦେହାତୀତ ହୋଇଉଠିଛି । ସେ ପ୍ରେମ କରିଛି ଜନନୀ ରୂପେ ଶିଶୁ ସନ୍ତାନଙ୍କୁ, ବଧୂରୂପେ ଶାଶୁଙ୍କୁ ଓ ଶାଶୁଘରକୁ । କର୍ତ୍ତବ୍ୟର ତାଡ଼ନା ତାକୁ ବ୍ୟଥିତ କରିଛି ସ୍ୱାମୀଗୃହକୁ ଫେରିଯାଇ କର୍ତ୍ତବ୍ୟର ମନ୍ଦାକିନୀ ମଧ୍ୟରେ ନିଜକୁ ବୁଡାଇ ଓ ମଜାଇ-ଦେବାପାଇଁ । ସେଥିପାଇଁ ସେ ଦୃପ୍ତକଣ୍ଠରେ ଘୋଷଣା କରିଛି—

"କହ ଯା ନନାଙ୍କୁ    ମୋତେ ମୋ ପିଲାଙ୍କୁ
ଛାଡ଼ିଆସୁ ମୋ'ର କୁଟୀରେ,
ପାରିଲଣି ବଡ଼    ବୋହିବ ଶଗଡ଼;
ଚାଲିଯିବ କୁଟାକୁଟିରେ,
ଘର ତମର
ରହିବ କି ଚିର ପାମରୀ ?"

ଏବଂ ଶେଷରେ ଶାଶୁଘରକୁ ଯାଇ—

"ପ୍ରବେଶୁଁ ଗଞ୍ଜାମେ    କିନ୍ତୁ ସ୍ୱାମୀଧାମେ
ଦେଲି ପୋଛି ଲୁହ ନୟନୁ,
ଲଗାଇଲି ହାତ    କାଟିବାରେ ବାଟ
ଦାରିଦ୍ର୍ୟର ଦୁଃଖ କଷଣୁ;
କୁଟାବଟାରେ,
ଚଳାଏ କଷ୍ଟେ ତା' ସଂସାରେ ।"

ଏହିପରି ଭାବରେ କେମାର ଜନ୍ମାନ୍ତର ହୋଇଛି । ତ୍ୟାଗ ମଧ୍ୟ ଦେଇ ତା'ର ଅନ୍ତର୍ନିହିତ ବ୍ୟକ୍ତିର ସୌରଭ ନେଇ ବିକାଶ ଲାଭ କରିଛି । ସେଥିପାଇଁ ସ୍ୱାମୀଧାମରେ ପହଞ୍ଚିଲା ମାତ୍ରେ ସେ ନୟନରୁ ଲୁହ ପୋଛି ନିଜ କର୍ତ୍ତବ୍ୟରେ ଲାଗିପଡ଼ିଛି । କବିଲେଖନୀରେ ଏକ ନିରକ୍ଷର ବାଳିକା ହୋଇଉଠିଛି, ସେ ଏକ ସାର୍ଥକ କାବ୍ୟ ସୃଷ୍ଟି ଓ ମହୀୟସୀ ମହିଳା । କେମାକାବ୍ୟର ଅନ୍ୟାନ୍ୟ ଚରିତ୍ର-ଗୁଡ଼ିକ ଗୌଣ ହୋଇଥିଲେ ସୁଦ୍ଧା, ପ୍ରତ୍ୟେକଟି ଜୀବନ୍ତ ଭାବରେ ଚର୍ଚ୍ଚିତ ହୋଇ-ଅଛନ୍ତି । ବିଶେଷତଃ ଦଳେଇଆଣୀ ଓ ସୌଦାଗରର ଜନନୀ ଚରିତ୍ର ଦୁଇଟି ମାତୃସ୍ଥାନୀୟା ଆଦର୍ଶ ମହିଳାରୂପେ ବର୍ଣ୍ଣିତ ।

ଏବଂ କେମାର କରୁଣ ଗାଥା ବର୍ଣ୍ଣନା କରିବା ଭିତରେହିଁ କବି, ଉତ୍କଳୀୟ-ସମାଜର ନିଖୁଣ ଓ ଜୀବନ୍ତ ରୂପ ସବୁ ଦେଇ ଯାଇଛନ୍ତି । ବିବାହ ପାଇଁ ଜାତକ ଖୁଣ୍ଟାଖୁଣ୍ଟି, ଜ୍ୟୋତିଷର ଭୂମିକା, ଝିଅ କାନ୍ଦଣା ଇତ୍ୟାଦିର ବର୍ଣ୍ଣନା ମଧ୍ୟରେ ଓଡ଼ିଆ ସମାଜର ଗୋଟିଏ ଗୋଟିଏ ଶାଶ୍ୱତ ବିଶ୍ୱବ ସୁନ୍ଦର ପ୍ରତିବିମ୍ବିତ । ବିଶେଷତଃ ଦଳେଇଆଣୀଙ୍କ ଚରିତ୍ର ମାଧ୍ୟମରେ କବି କୋଟି କୋଟି ଉତ୍କଳୀୟ ଅଶିକ୍ଷିତ ଧର୍ମପ୍ରାଣା ଜନନୀଙ୍କର ସରଳ ହୃଦୟର ସ୍ନେହ ମମତା ଓ ପୁଞ୍ଜୀଭୂତ ଅନ୍ଧବିଶ୍ୱାସ ତଥା କୁସଂସ୍କାରର ଯେଉଁ ଚିତ୍ର ପ୍ରଦାନ କରିଅଛନ୍ତି, ତାହା ଯେପରି ବାସ୍ତବ ସେହିପରି ଜୀବନ୍ତ ଓ ପ୍ରାଣବନ୍ତ । କେମାର ଭବିଷ୍ୟତ କଥା ଚିନ୍ତା କରୁକରୁ ହଠାତ୍ ଦଳେଇଆଣୀଙ୍କର ଦକ୍ଷିଣ ନେତ୍ର ପ୍ରକମ୍ପିତ ହୋଇଛି । ଏହାପରେ—

"ମାଆ ଲେ ଚତ୍‌କାର ସତା, ଭୟାକୁଳ ହୋଇ ଅତି
ମନେ ମନେ ମନାସିଲେ କୋଟି ଦେବତା,
'ରଖ ଦାଅଁ ମୋ ପିଲାରେ ଶଙ୍ଖଚକ୍ର ଆଡ଼୍‌ ଆଲେ'
ବୋଲି ଆତ୍ମା ଉତ୍କଳୀ ଜଣାଇ ବ୍ୟଥା,
ଛୁ, ଛୁ, ପୋଡ଼ା ଆଖିଙ୍କ କଥାଁ
ଅଛୁଛୁ ଏପରି, ମୁହେଁ ପଡ଼ୁ ତା ନାଆଁ ।"

ଓଡ଼ିଆ ଜନନୀର ନିଷ୍କପଟ, ଛନ୍ଦହୀନ ହୃଦୟର ଗାଢ଼ ଅପତ୍ୟ-ସ୍ନେହ ଓ ତରଳ ପ୍ରାଣର ସରଳ ବିଶ୍ୱାସ ଅତି ଜୀବନ୍ତ ଭାବରେ ପ୍ରସ୍ଫୁଟିତ ହୋଇଛି ଏହାଦ୍ୱାରା । ସ୍ଥାନଭେଦରେ ଗାଁ ମାଇପଙ୍କ କଥୋପକଥନ ମଧ୍ୟ ଅତି ସ୍ୱାଭାବିକ ବାତାବରଣ ସୃଷ୍ଟି କରିଅଛି ।

ସମୁଦ୍ର ଉପକୂଳରେ ଦଳେଇଙ୍କ ବସତି । ତେଣୁ କବି ଅନନ୍ତ ବାରିଧିର ଗୁରୁଗମ୍ଭୀର ଦୃଶ୍ୟ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ବିରାଟ ବାରିଧି ସହିଁ ଅନନ୍ତ ଅମ୍ବରେ ଗ୍ରହିଁ
ବେଳା-ଲକ୍ଷ୍ମୀ ଓଷ୍ଠେ ହସେ ଫେନିଳ ହାସ୍ୟ
ତପନ-ତାରକା ତଳେ ମହାକାଳ ପଟପରେ
ଜଳର ତାଣ୍ଡବ ଜଳବାଳାଙ୍କ ଲାସ୍ୟ,
ଲାଗିଅଛି ଅନବସରେ,
ତାଳ ଦେଇ ପ୍ରଭଞ୍ଜନ-ପ୍ରମତ୍ତ-କରେ ।"

ଜେମା କାବ୍ୟର ଏହି ପ୍ରାରମ୍ଭିକ ମହା-ସିନ୍ଧୁର ବର୍ଣ୍ଣନା ବୋଧହୁଏ ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ ଓ ଅତୁଳନୀୟ । ମହାନଦୀରେ ଶାନ୍ତ ବକ୍ଷରେ ଜ୍ୟୋସ୍ନାବିହାରୀ କବି, ପ୍ରକୃତିର ଭୀମକାନ୍ତତା ପାଇଁ ମଧ୍ୟ ଯେ କିପରି ଉତ୍ସାହୀ ଓ ତାର ନିପୁଣ ଚିତ୍ରକାର, ତାହା ଏଠାରେ ଓ କବିଙ୍କର ଅନ୍ୟ ଅନେକ ରଚନାରେ ଏପରି ସୁସ୍ପଷ୍ଟ ଯେ, ତାର ମୂଲ୍ୟାୟନ ଏଠାରେ ଅନାବଶ୍ୟକ । ଗଳ୍ପାଂଶର କ୍ଷିପ୍ରତା ଭିତରେ ଯେଉଁଠି ଯେଉଁଠି ବାହ୍ୟପ୍ରକୃତିର ଅବତାରଣା ହୋଇଛି, ତାହା କବିଙ୍କ ଲେଖାରେ, ଚିତ୍ରକରର ରେଖାପରି, ଅତି ଜୀବନ୍ତ ଓ ସ୍ୱାଭାବିକ ଭାବରେ ପାଠକଙ୍କୁ ମୁଗ୍ଧ କରୁଛି ।

ମାନସିଂ ଓଡ଼ିଶାରେ ଗୀତି-କବିତାରେ ପ୍ରଚଣ୍ଡ କବି ଭାବରେ ପ୍ରଖ୍ୟାତ । ତାଙ୍କର କାବ୍ୟମାଳା ସେହିଯୋଗୁଁ ଏଯାବତ୍ ଅବହେଳିତ । 'ଜେମା' କାବ୍ୟଟି ଓଡ଼ିଆ ସାହିତ୍ୟର ପ୍ରାଚୀନ ପରମ୍ପରାକୁ ସମ୍ମାନ ଦେଇ, ବିଭିନ୍ନ ଛନ୍ଦ ଓ ସର୍ଗ ସମନ୍ୱିତ

ହୋଇ ଲଖିତ । ଅଥଚ ଅତ୍ୟାଧୁନିକ ହେଲେହେଁ ଚରିତ୍ରଗୁଡ଼ିକର ଅବତାରଣା ଓ ବିକାଶ ସୁନ୍ଦର ଓ ସ୍ୱାଭାବିକ । କବିଙ୍କର ସୃଜାନୀ ମହିମାରେ ଏହା ଦୀପ୍ତିମନ୍ତ । ଯୌବନର କାଉଁରିସ୍ପର୍ଶରେ ନାରୀ-ଚିତ୍ତରେ ଜ ଭାବାନ୍ତର ସୃଷ୍ଟି ହୁଏ, ତା'ର ସ୍ୱାଭାବିକ ଚିତ୍ର ଦେବାକୁ ଯାଇ କବି ଲେଖିଛନ୍ତି—

"ତରଳ ସେ ଯଉବନ ମିଛେ ଚିତ୍ତ ଉନମନ
ରକତେ କ୍ଷଣକୁ କ୍ଷଣ ଜୁଆର ଭଟ୍ଟା,
ସ୍ୱପ୍ନଫୁଲ କୋଟି କୋଟି ଅନ୍ତରେ ଉଠଇ ଫୁଟି
ଚହେ ଲଗିରହେ ଗନ୍ଧବର୍ଣ୍ଣର ଘଟା,
କଲପନା ମାନସେ ଚରି,
କଳ୍ପ-ଲୋକେ ଯୁବା-ଯୁବତୀଏ ବିହରି ।"

କବିଙ୍କର କଳ୍ପନା ଯୌବନାଗମରେ ନାରୀ ମନସ୍ତତ୍ତ୍ୱ ଚିତ୍ରଣରେ ଏଠାରେ ସାର୍ଥକତା ଲାଭ କରିଅଛୁ । ଜେମା କାବ୍ୟଟି ଯେ ଏହିପରି ନାନା ଗୁଣ ଯୋଗୁଁ ଆଧୁନିକ ଓଡ଼ିଆ-ସାହିତ୍ୟରେ ଏକ ମୂଲ୍ୟବାନ ସୃଷ୍ଟି ଏହା ନିଃସନ୍ଦେହ ।



# ମାନସିଂଙ୍କ ସାଧବ ଝିଅ

ଅଧ୍ୟାପିକା ଶ୍ରୀମତୀ ଆଶା ମିଶ୍ର

"ବିଜନ ବେଳା, ବିଜନ ବେଳା,
କହୁନାହୁଁ କାହିଁ ବୋଇତ ଗଲା,
ବୋଇତ ଗଲା ।"

ସାଧବ ଝିଅ ଖୋଜି ବୁଲୁଛି ତା'ର ପ୍ରିୟକୁ ଏକ ବିଜନ ବେଳାରେ । ଏ କି ସେହି ସାଧବ ଝିଅ ସାରା ଉତ୍କଳର ପୁରପଲ୍ଲୀରେ ଯେ ପରିଚିତ ତଅପୋଇ ନାମରେ ଏବଂ ଯାହାର ମନ ଓ ହୃଦୟକୁ ଚିହ୍ନିପାରିଛନ୍ତି କେବଳ ନବ ଉତ୍କଳର କବିତା-ପିତା ମାନସିଂ ? ପ୍ରକୃତ ନାରୀହୃଦୟକୁ ଚିହ୍ନି ତାର ହୃଆତଳର ଅକୁହା ବ୍ୟଥାକୁ ପ୍ରକାଶ କରିବାରେ ମାନସିଂଙ୍କର ଲେଖନୀ ଯେପରି ରସୋତ୍ତୀର୍ଣ୍ଣତା ଦେଖାଇପାରିଛି ତା' ଘଟିନି ଅନ୍ୟ କେଉଁଠି ଆଧୁନିକ ଓଡ଼ିଆ ସାହିତ୍ୟରେ । ସାଧବ ଝିଅ ଅବଶ୍ୟ ଛେଳି ଚରାଇନି, କି ମଙ୍ଗଳା ପୂଜା କରିନି । ଏହି ସାଧବ ଝିଅ ସମ୍ପୂର୍ଣ୍ଣ ପୃଥକ୍ । ସାଧବ ଝିଅ ତଅପୋଇ ଏବଂ କଣୋଣୀ ଓ ସାତଭାଇଙ୍କର ଗେଲବସର ସାନ ଭଉଣୀଟି । ଏ ସାଧବଝିଅ କଳ୍ପ ଉଦ୍ଭିନ୍ନଯୌବନା । ତଅପୋଇର ଘର ଅବସ୍ଥା କଳ୍ପନାର ମିନାର ତାର ପରିପୂର୍ଣ୍ଣତା ଲାଭ କରିନାହିଁ । ମାନସିଂଙ୍କ ଏ ସାଧବଝିଅ ରସିକ ପାଠକ ମନରେ ତେଣୁ ଏକ ନୂତନ ଉନ୍ମାଦନା ସୃଷ୍ଟି କରି ସାହିତ୍ୟରେ ଚିର ନୂତନ ହୋଇ ରହିପାରିଛି ।

ଆଧୁନିକ ଓଡ଼ିଆ ସାହିତ୍ୟରେ ମାନସିଂ ଏକ ଚିରନ୍ତନ ନୂତନ ଦିଗଦର୍ଶୀ । ପ୍ରାଣର ମୁହୂର୍ତ୍ତିର ସ୍ପନ୍ଦନକୁ ସୁନ୍ଦର, ସରଳ ଅଥଚ ବଳିଷ୍ଠ ଅଭିବ୍ୟକ୍ତିରେ ସେ ଯେଉଁ କାବ୍ୟକବିତାର ସୁରମ୍ୟ ହର୍ମ୍ୟସବୁ ନିର୍ମାଣ କରିଯାଇଛନ୍ତି ତାହା ଓଡ଼ିଆ ସାହିତ୍ୟର ଏକ ଅନନ୍ୟ ଓ ଅଭିନବ ସମ୍ପଦ ।

ଲଖିତ-ସାହତ୍ୟହାନ ଆଦମ ସଭ୍ୟତାର ନୃତ୍ୟଗୀତ ମଧ୍ୟରେ ଦୈହକ ଲାଳସାର ବହ୍ନିହିଁ ପ୍ରକଟିତ । ଆର୍ଯ୍ୟ ସଭ୍ୟତାର ବକାଶ ଦେଇ ଯେଉଁ ମହାପୁରାଣ ସବୁ ( Epic ) ଆତ୍ମ ପ୍ରକାଶ କଲା ତନ୍ମଧ୍ୟରେ ପ୍ରେମର ଚର୍ଚ୍ଚା ମଧ୍ୟ ପ୍ରଚୁର ପ୍ରକାଶିତ । କନ୍ତୁ ସେ ପ୍ରେମ ମଧ୍ୟ ଦୈହକ । ମହାପୁରାଣ ରଚନାକାଳରେ ସାମାଜକ ବନ୍ଧନ ଯଦଓ ସୁଦୃଢ଼ ହୋଇ ନ ଥିଲା, ତଥାପି ସମାଜ ଗଠିତ ହୋଇଥିଲା । ତେଣୁ ଆଦମ ସମାଜର ମୁକ୍ତ ସ୍ୱଚ୍ଛନ୍ଦ ଯୌନଲାଳସାର ଅବାରତ ଧାରା ମହାପୁରାଣ ଯୁଗକୁ ଶୃଙ୍ଖଳତ ହୋଇଆସିଥିଲା । କାଳକ୍ରମେ ଦୈହକ ପ୍ରେମ ମାନସିକ କ୍ଷେତ୍ରକୁ ପ୍ରସାରତ ହୋଇଛୁ । ପ୍ରେମ କେବଳ ଶାରୀରକ ଯୌନ ମିଳନରେ ସୀମାବଦ୍ଧ ନ ହୋଇ କବର ମାନସୀ ପ୍ରତିମାରୂପେ ରୂପାୟିତ ହୋଇଛୁ ।

ଓଡ଼ିଆ ସାହତ୍ୟର ସାରଳାଙ୍କ ମହାଭାରତରେ ଯେଉଁ ସ୍ଥୂଳ ପ୍ରେମ ସବୁ ପ୍ରକାଶ ପାଇଛୁ ତାହା ପରବର୍ତ୍ତୀ ବୈଷ୍ଣବ ଯୁଗରେ ଆତ୍ମହରା ପ୍ରେମ ଗାନରେ ରୂପାନ୍ତରତ ହୋଇଛୁ । ବୈଷ୍ଣବୀ ପ୍ରେମ ମନ୍ଦାକନୀ କୂଳ ଲଙ୍ଘି ପ୍ଲାବତ ହୋଇ-ନାହିଁ । ଶୃଙ୍ଖଳତ ଛନ୍ଦର ମୃଦୁମନ୍ଦ ଗତରେହିଁ ଆତ୍ମହରା ରାଧା ଛୁଟିଛି କୃଷ୍ଣ ବଂଶୀର ରାଗିଣୀ ଆଡ଼କୁ । ସେଥିରେ ସୌନ୍ଦର୍ଯ୍ୟର ମାଧୁରୀ ମଧୁ ସିଞ୍ଚନ କର ଭକ୍ତଜନ-ମନକୁ ଆପ୍ଳୁତ କରଛି । ସେ ପ୍ରେମରେ ତୀବ୍ର ଯୌନ କ୍ଷୁଧା ନାହିଁ । ତେବେ, ପବତ୍ର ଓ ସ୍ୱଚ୍ଛ ହେଲେ ମଧ୍ୟ ସେହ କୃଷ୍ଣପ୍ରେମ-କୀଟ ଅହରହ ଦଂଶନ କରଛି ଗୋପୀମାନଙ୍କର ଚତ୍ତକୁ ।

ଭକ୍ତଯୁଗରେ ଏହ ପ୍ରେମ ଅନ୍ୟ ରୂପରେ ଆତ୍ମପ୍ରକାଶ କରଛି । ପ୍ରାଚୀନ ସଂସ୍କୃତ କାବ୍ୟ କବତା ଭଞ୍ଜଙ୍କର ଥିଲା ଆଦର୍ଶ । ପ୍ରେମକୁ ଧର୍ମ ଓ ଆଧ୍ୟାତ୍ମିକତାର ବେଢ଼ ମଧ୍ୟରେ ନ ରଖି ସେ ତାହାର କାମନା-ବହ୍ନି-ପ୍ରଦୀପ୍ତ-ନଗ୍ନ କାନ୍ତ ପାଠକ ମାନଙ୍କୁ ପରବେଷଣ କଲେ । ଶବ୍ଦାଡ଼ମ୍ବର ଏବଂ ପରପାଟୀ ମଧ୍ୟରେ ଭଞ୍ଜେ ନଗ୍ନ ପ୍ରେମକୁ ରୂପ ଦେବାକୁ ଯାଇ ଏବେ 'ଅଶ୍ଳୀଳ' ଶବ୍ଦରେ ଭୂଷିତ ହେଉଛନ୍ତି । ଦୁର୍ବୋଧ ଭାଷା ଏବଂ କାମନାର ନଗ୍ନତା ଭଞ୍ଜଙ୍କୁ ସତ୍ୟରେ ଶ୍ଳୀଳତାଠାରୁ ଦୂରେଇ ନେଇଛି । ବ୍ୟକାରଶୂନ୍ୟ ଭାବେ ସେ ନାରୀର ପ୍ରତ୍ୟେକ ଅଙ୍ଗକୁ ବର୍ଣ୍ଣନା କରଛନ୍ତି । କାମନାର ଏ ପ୍ରକାର ନଗ୍ନ ବର୍ଣ୍ଣନା ଯୋଗୁଁ ଭଞ୍ଜୀୟ ସାହତ୍ୟ ଆଧୁନକ-ମାନଙ୍କ ମତରେ କଳଙ୍କିତ ହୋଇ ଦଣ୍ଡାୟମାନ ।

ଆଧୁନକ ଯୁଗସ୍ରଷ୍ଟା ରାଧାନାଥ ସେହ ଭଞ୍ଜୀୟ ନଗ୍ନତାକୁ ଶ୍ଳୀଳତାର ଆବରଣ ଦ୍ୱାରା ଢାଙ୍କିବା ପାଇଁ ପ୍ରଥମ ପ୍ରଚେଷ୍ଟା କରନ୍ତି । 'ଯଯାତକେଶରୀ' କାବ୍ୟରେ କବବର ଭଞ୍ଜୀୟ କାବ୍ୟର ଆଦରସ ବର୍ଣ୍ଣନା ତୁଲ୍ୟ ବର୍ଣ୍ଣନା ଦେଇଥିଲେ ମଧ୍ୟ ନାରୀରୂପ ବର୍ଣ୍ଣନାରେ କବ ଭଞ୍ଜଙ୍କ ତୁଳନାରେ ଅତ୍ୟନ୍ତ ସଙ୍ଗତ ।

ରାଧାନାଥ ନାରୀରୂପର ପ୍ରତ୍ୟେକ ଅଙ୍ଗବୈଭବର ବର୍ଣ୍ଣନାଠାରୁ ଆରମ୍ଭ କରି ଯୌନସମ୍ବନ୍ଧଜନିତ ବିଭିନ୍ନ କାର୍ଯ୍ୟାବଳୀକୁ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା କରି ମଧ୍ୟ କେବଳ ସାମାନ୍ୟ ଆଭାସ ମାତ୍ର ଦେଇ ପାଠକର କଳ୍ପନା ଉପରେ ଅଧିକାଂଶ ଦାୟିତ୍ୱ ଛାଡ଼ିଦେଇଛନ୍ତି ।

ସବୁଜ ଯୁଗରେ ପାଶ୍ଚାତ୍ୟ Neo-romanticismର ପ୍ରକାଶ । ପାଶ୍ଚାତ୍ୟ ସାହିତ୍ୟରେ classical ଭାବଧାରାକୁ ପରିତ୍ୟାଗ କରି ନୂତନ ସାହିତ୍ୟସୃଷ୍ଟିର ପ୍ରୟାସ କଲେ Shelly. Keats, Wordwsorth, Byron ଏବଂ Coleridge । ଏହି ଶିଳ୍ପୀଗଣ କେବଳ ଦୃଶ୍ୟମାନ ବାସ୍ତବ ଜଗତକୁ କେନ୍ଦ୍ର କରି ନିରପେକ୍ଷ ରୀତିରେ କବିତା ରଚନା କଲେ ନାହିଁ । ଏମାନଙ୍କର କଳା ସ୍ୱକୀୟ ଅନୁଭୂତି, ଅନୁରାଗ, ଆଶା, ଉତ୍ସାହ, ଉଦ୍ଦୀପନାର ଅପୂର୍ବ ରଙ୍ଗରେ ରଞ୍ଜିତ । ଏହି ଭାବଧାରା ସବୁଜ କବିମାନଙ୍କର ସାହିତ୍ୟରେ ପ୍ରତିଫଳିତ ହେଲେହେଁ ସବୁଜ କବି ରହସ୍ୟାବୃତ ହୋଇ ନିଜ କଳ୍ପନାକୁ ରୂପ ଦେଇଛି । ଅନ୍ନଦାଶଙ୍କର, ବୈକୁଣ୍ଠନାଥ, କାଳିନ୍ଦୀଚରଣ ପ୍ରଭୃତିଙ୍କ କବିତାରେ ଅନିର୍ଦ୍ଦିଷ୍ଟତା ଓ ଅସ୍ପଷ୍ଟତାହିଁ ପ୍ରଧାନ ଲକ୍ଷ୍ୟ । ଏକ ଅସ୍ପଷ୍ଟ ଅନୁଭୂତି ଛଡ଼ା ପ୍ରେମ ସ୍ୱାଭାବିକ ଭାବରେ ଏମାନଙ୍କ କାବ୍ୟ କବିତାରେ କାହିଁ ପ୍ରକାଶିତ ହୋଇନାହିଁ । ବଙ୍ଗକବି ରବୀନ୍ଦ୍ରନାଥଙ୍କ ରହସ୍ୟବାଦହିଁ ଏମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିବା ପରି ମନେହୁଏ ।

ଭକ୍ତଯୁଗର କାବ୍ୟକବିତାରେ ପ୍ରେମର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହେଲେ ମଧ୍ୟ ତାହା ସମ୍ପୂର୍ଣ୍ଣ କାଳ୍ପନିକ । ବାସ୍ତବତାର ଚିହ୍ନ ସେଥିରେ ନାହିଁ । ମାନସିଂଙ୍କ ସ୍ୱାତନ୍ତ୍ର୍ୟ ହେଲ—କବିର କଳ୍ପନା ବାସ୍ତବତାକୁ ଅତିକ୍ରମ ନ କରିବା । ବାସ୍ତବ ଜୀବନର ପ୍ରତ୍ୟକ୍ଷ ଅନୁଭୂତିକୁ କେନ୍ଦ୍ର କରି ହିଁ ତାଙ୍କର କାବ୍ୟ କବିତା ରଚିତ । ତାଙ୍କ କାବ୍ୟ କଳ୍ପନାସର୍ବସ୍ୱ ନୁହେଁ । ତାହା ଜୀବନର ସତ୍ୟ ଏବଂ ସୁନ୍ଦରତମ ପ୍ରତିରୂପ ।

ଏହି ପରିପ୍ରେକ୍ଷୀରେ 'ସାଧବ ଝିଅ' କବି ମାନସିଂଙ୍କର ଆମ ସାହିତ୍ୟରେ ଏକ ଅଭିନବ ସୃଷ୍ଟି । ଓଡ଼ିଶାର ମଧ୍ୟଯୁଗୀୟ ଏକ ସାଧବ ଝିଅର ମନ ଗହନର ଅକୁହା ବ୍ୟଥା କବିଙ୍କର ବର୍ଣ୍ଣନା ଦେଇ ଝଙ୍କୃତ ହୋଇ ପାଠକ ମନରେ ଏକ ନୂତନ ଭାବଧାରା ସୃଷ୍ଟି କରୁଛି । ସାଧବର ସାତ ପୁଅ ବଣିଜ କରିବାକୁ ନୀଳ ପାରିବାରରେ ପୋତ ମେଲି ଦେଇଛନ୍ତି । ସାତ ବୋହୂ ସହ ସାଧବ ଝିଅ ଦରିଆ କୂଳକୁ ଆସିଛୁ ଭାଇମାନଙ୍କର ଫେରିଥିବା ବୋଇତ ବନ୍ଦାଇବାକୁ । ସୁଖସମୃଦ୍ଧି ମଧ୍ୟରେ ସାଧବ ଝିଅ ଜୀବନ ଅତିବାହିତ କରୁଥିବାବେଳେ ସେହି ନୀଳ ପାରିବାର ତଟରେ ପ୍ରଥମ ଦେଖିଛୁ ଅନ୍ୟ ରାଜ୍ୟର ତରୁଣ ସୌଦାଗରକୁ ଏବଂ ଦର୍ଶନ ମାତ୍ରେ ମନ ତାର ହୋଇଉଠିଛୁ

ବେପଥୁବନ୍ତ । କୁଆଁରୀ ମନର କୋମଳ ହୃଦୟରେ ସୃଷ୍ଟି ହୋଇଛି ପ୍ରଥମ ଚମକ । ଆଗ ପଛ, ଭଲ ମନ୍ଦ କିଛି ନ ବିଚାରି ସେ ନିଜକୁ ମନେ ମନେ ଅର୍ପଣ କରିଛି ସେହି ଯୁବା ସୌଦାଗରକୁ । ଦରିଆକୂଳରେ ଦିନ ପରେ ଦିନ ସାଧବ ଝିଅ ଖୋଜୁଛି ତାର ପ୍ରିୟକୁ :

"ହୋଇଛି ରଜନୀ, ଉଠିଛି ଚନ୍ଦ,
ନାଚେ ଦରିଆ,
କାହାପାଇଁ ମୁହିଁ ସାଧବ ଝିଅ
ଏକାକୀ ତୋ ତୀରେ ହୋଇଛି ଠିଆ ?"

ତା' ମନରେ ସ୍ୱାଭାବିକ ଭାବରେ ଅଜଣା ଯୁବକ ସମ୍ବନ୍ଧରେ ବିଭିନ୍ନ ପ୍ରଶ୍ନ ଉଠିଛି । ନାରୀମନ ସନ୍ଦେହରେ ଭରିଯାଇଛି । ସାଧବ ଝିଅ ଭାବି ବସିଛି--

"ଆଉ କେ ଯୁବତୀ ବାହୁରେ ତାର
ପଡ଼େ କି ଢଳି ?
କିପରି ସେ ସୁଖ ଜାଣିବନି କି ?
ଭାବିଲେ ହୃଦୟ ହୁଅଇ ଦଳି ।"

ମାଣିକଖଣ୍ଡରେ ସାଧବ ଝିଅର ଲୁହ ବୋହୁଛି । ଭାବି ଭାବି ଭାବନା ସାଗରରେ ମନମୀନ ତାର ବୁଡ଼ିଯାଇଛି । ଏକ ଅନାଘ୍ରାତା କୁଆଁରୀ ମନର ଅକୁହା କଥା ଫୁଲ ପରି ଫୁଟିରହୁଛି କବିଙ୍କର ସୁନ୍ଦର ସରଳ ବର୍ଣ୍ଣନା ମଧ୍ୟରେ । ଏକ ମନରେ ଓ ଏକ ନିଶ୍ୱାସରେ ପାଠକ ଏହି କରୁଣ ରସକୁ ଆସ୍ୱାଦନ କରିବା ସଙ୍ଗେ ସଙ୍ଗେ, ତଅପୋଇର ସେହି ବିରହାତୁର କ୍ରନ୍ଦନର ପ୍ରତିଧ୍ୱନି ଶ୍ରବଣ କରେ । ମାନସପଟରେ ଖେଳିଯାଏ ବିଜନ ବେଳା ଓ ତା' ସମୀପରେ ବିରହବିଧୁରା ସାଧବ ଝିଅର ପ୍ରତିଚ୍ଛବି । ମନସ୍ତାତ୍ତ୍ୱିକ ଚିତ୍ର ପ୍ରକାଶ କରିବା ସଙ୍ଗେ ସଙ୍ଗେ ଯଥାଯୋଗ୍ୟ ବାତାବରଣ ସୃଷ୍ଟି କରିବାରେ କବିଙ୍କର ଲେଖନୀ ବିସ୍ମୟକର ଭାବରେ ସିଦ୍ଧକାମ ।

ତେଣେ ସାଧବ ପୁଅ ମଧ୍ୟ ବନ୍ଦରେ ବନ୍ଦରେ ତାର ବୋଇତ ବାହୁଡ଼ିବା ଭିତରେ ସାଧବ ଝିଅକୁ ମନେ ମନେ ଝୁରି ହେଉଛି । ବିରହ ବେଦନାରେ ତା'ର ତରୁଣ ଅନ୍ତର ମଧ୍ୟ ଦଗ୍ଧୀଭୂତ ହୋଇଛି । ତେଣୁ ସେ ଭାବୁଛି—

"ଅଳପ ଚାହିଁଲି, ଲାଜେ ମୁଖ ଦେଲି ପୋତି,
ନଖେ ମିଶାଇଲି ଗଳାହାର ମଣି ଜ୍ୟୋତି,
ପୁଣି ସେ ଚାହିଁଲା, ପୁଣି ମୁଁ ଚାହିଁଲି ଥରେ,
ହସି ଲାଜେ ପୁଣି ନୁଆଁଇଲି ନାସା-ମୋତି ।"

ଆଖିରେ ଆଖିରେ ଭାଷା ଓ ମନରେ ମନରେ ଭାବ ଉଭୟ ପ୍ରିୟ ଓ ପ୍ରିୟାଙ୍କର ଜାଗ୍ରତ ହୋଇଥିଲେ ମଧ୍ୟ, କବି ବିରହ ବେଦନାର ମାଧୁର୍ଯ୍ୟକୁ ଫୁଟାଇବା ପାଇଁ ଏବଂ ବିରହ-କଣ୍ଟକି ପଥରରେ ପ୍ରେମଜ୍ୟୋତିକୁ ପ୍ରତିଫଳିତ କରିବା ପାଇଁ ହିଁ ସାଧବ ଝିଅକୁ ରଖିଛନ୍ତି ବିଜନ ବେଳାରେ ଏବଂ ଘାଟରୁ ଘାଟକୁ ଦୂରକୁ ଦୂରକୁ ନେଇଯାଇଛନ୍ତି ସାଧବ ପୁଅକୁ ।

ସାଧବ ପୁଅର ଜୀବନ ତ ବୋଇତରେ ହିଁ ଅତିବାହିତ । ଧନ ସମ୍ପଦରେ ତା' ଘର ଭରପୂର । କିନ୍ତୁ ସାଧବ ଝିଅକୁ ଦେଖିବା ପରେ ତା' ମନ ସମସ୍ତ ପ୍ରତି ଉଦାସୀନ । ସେ ନୟନମଣିକୁ ଗଳାର ହାର କରିବାକୁ ଇଚ୍ଛା କରି ଭାଳି ହୋଇଛି ଏବଂ ଘାଟେ ଘାଟେ ଘୂରି ଘୂରି ପୁନର୍ବାର ସେହି ଘାଟରେ ତାର ନାବ ଆସି ଲାଗିଛି । ମାଝି ନଙ୍ଗର ପକାଇଛି ଏବଂ ସାଧବ ପୁଅ କହୁଛି କି କି ଉପହାର ସାଥେ ନେଇ ସେ ଆସିଛି । କାବେରୀର ଧବଳ ହୀରକ ହାର, ସିଂହଳର କନକ କୁସୁମ ମାଳ । ତା ସହିତ ସେ ଦେବ 'ତରୁଣ ହୃଦୟ', ଏବଂ ଦାସ ପରି ଚରଣ ତଳେ ଖଟିବ । ପୁଣି କହିବ—

"ଏ ମୁଖ ପାଇଁ ମୁଁ ଜୀବନ ଦେବି"
ପୁନର୍ବାର କହିବ—"ତୋ ସେବା ଜୀବନେ ଧରମ ମମ ।"

ଘାଟରେ ତରୀ ଭିଡ଼ି ସାଧବ ପୁଅ ଅପରିଚିତ ନଗରର ପଥେ ପଥେ ଘୂରି ବୁଲିବାକୁ ସ୍ଥିର କରିଛି, କାଳେ କେଉଁଠି ସାଧବ ଝିଅକୁ ଦେଖିବ ପରା !

ତେଣେ ସାଧବ ଝିଅ ତାର ଦୂରଦେଶୀ ପ୍ରଣୟୀ କଥା ଭାଳି ଭାଳି ତନୁ ପ୍ରସାଧନ ଛାଡ଼ିଛି । ଓଡ଼ିଶୀ ରୂପକଥା ଓ ଭଞ୍ଜ ସାହିତ୍ୟର ସେହି ମାଲୁଣୀ ପୁନର୍ବାର ଆସି ଆତ୍ମପ୍ରକାଶ କରିଛି ମାନସିଂଙ୍କ କାବ୍ୟରେ ଏହି ନବଯୁଗରେ । ଏହି ମାଲୁଣୀର ରୂପ ବର୍ଣ୍ଣନା ମଧ୍ୟରେ କବିଙ୍କର ଗଭୀର ଉତ୍କଳୀୟ ଜାତୀୟତା ହିଁ ପ୍ରକାଶ ପାଇଛି । ମାଲୁଣୀ ହାତରେ ଚଡା, ନାକରେ ନୋଥ, କପାଳରେ କଳା ଚିତା ପରେ ଟିକିଲି, ମହଣ ଦେଇ ମାଙ୍ଗ କାଢ଼ିବା, ବାହୁରେ ତାଡ଼, ଗୋଡ଼ରେ ପାହୁଡ଼ ଓ ବଳା ପିନ୍ଧି ମାଲୁଣୀ ନଗରର ଦାଣ୍ଡେ ଦାଣ୍ଡେ ବୁଲିଛି । ତା' ଆସିବା ବାଟକୁ ଚାହିଁ ବସିଥା'ନ୍ତି ନଗରର କଣେଉଁଶରଣ । ବିଭିନ୍ନ ପ୍ରକାର ଗଭା ସଜାଇବାରେ ସେ ଦକ୍ଷ । ବଧୂ ଓ କୁମାରୀଙ୍କର ମନକଥା ବୁଝି ମାଲୁଣୀ ତାର ବ୍ୟବସାୟ କରେ । ନଗରର ରୂପସୀ-ମାନଙ୍କର ମନ ମାଲୁଣୀର ଶ୍ରେଷ୍ଠ ପୁଞ୍ଜି । ତେଣୁ ମାଲୁଣୀର ସାଧବ ଝିଅଟି ଅତି ଆପଣାର । ତା' ପାଇଁ ସେ ଗୁନ୍ଥି ନେଇଥାଏ ସବୁଠୁ ସରସ ଫୁଲମାଳା ଏବଂ ସବୁଠାରୁ ଅଧିକ ଶରଧା କରି ତାର ଗଭା ସଜାଇ ଦେଇଥାଏ ସେ ପ୍ରତ୍ୟହ ।

ସେହି ମାଲୁଣୀ ଫୁଲ ଗୁନ୍ଥା ଧରି ଯିବାବେଳେ ଭେଟିଛି ତାକୁ ସାଧବ ପୁଅ । ସାଧବ ପୁଅ ମାଲୁଣୀକୁ ଦେଖି କହୁଛି—

"ମଲୁଣୀ ପରି
ଦିଶୁଛୁ, ଖାଲି ନେଇ ଫୁଲ ପସରି
ବୁଲ, ନା ଆଉ କିଛୁ କରଗୋ ନାରୀ,
ଗରଜ ଅଛି ମୋର, କହୁତ ତ୍ୱରି ।"

ମାଲୁଣୀ ଚତୁରୀ । ସେ ମଧ୍ୟ ଠିକ୍ ଭାବ ବୁଝି ଉତ୍ତର ଦେଉଛି ଏବଂ ସାଧବ ପୁଅର ଅଭିପ୍ରାୟ ସମ୍ପର୍କରେ ପ୍ରଶ୍ନ କରିଛି । ସାଧବ ଝିଅ ତାକୁ କୁହିଁ ବସିଥିବ ବୋଲି କହି ସେ ଯିବାକୁ ଉଦ୍ୟତ ହୋଇଛି । ସାଧବ ପୁଅ ତେଣୁ ନିଜର ହୃଦୟକୁ ଅକାତରେ ଖୋଲିଦେଇଛି ମାଲୁଣୀ ଆଗରେ । ତା' ମନର ଭାବ ପ୍ରକାଶ କରି ମାଳା ଗୁନ୍ଥି ସାଧବ ଝିଅକୁ ଦେବା ପାଇଁ ଆଗ୍ରହ ପ୍ରକାଶ କରିଛି । ପୂର୍ବ ଅଭ୍ୟାସ ଅନୁସାରି ମାଲୁଣୀ ତାକୁ ନେଇଯାଇଛି ନିଜ କୁଟୀରକୁ । ଯିବାବେଳେ ମଙ୍ଗଳମୟ ଶିବଙ୍କୁ ସ୍ମରଣ କରି ସାଧବ ପୁଅ ମାଲୁଣୀ କୁଟୀରକୁ ଯାଇଛି ।

ପୁଷ୍ପେ କୀଟ ପରି ପ୍ରେମରେ ମଧ୍ୟ କୀଟ ପ୍ରବେଶ କରି ଦଂଶନ କରେ । ସାଧବ ପୁଅ ଓ ସାଧବ ଝିଅଙ୍କ ପ୍ରେମ ମଧ୍ୟରେ ପ୍ରବେଶ କରିଛି ସ୍ଥାନୀୟ ରାଜାପୁଅ ।

"ରଜା ପୁଅ ବଡ଼ ହଟିଆ
ଏବେ କରୁଛି ହଠ,
ସାଧବସୁତାକୁ ଉଆସେ
ନେବ, ଏଇ ତା' କଣ୍ଠ ।"

ପୁଅର ଅଭିଳାଷ ଜାଣି ରଜା ସାଧବକୁ ଡକାଇ ପଚାରିଲେ । ସାଧବ ଏହି ପ୍ରସ୍ତାବରେ ଅମଙ୍ଗ ହୋଇ ଶେଷରେ କହୁଛି—ସାଧବାଣୀ ନୀଳାଚଳରେ ଶପଥ କରିଦେଇଛି ତେଲିତାଳୁପୁର ସାଧବ ଶ୍ରେଷ୍ଠୀ ସୁତ ସହ କନ୍ୟାର ବିବାହ ଦେବ ବୋଲି । ସେହି ସ୍ଥାନରୁ ବୋଇତ ଆସି ଘାଟରେ ଲାଗିଥିବା କଥା କହି, ସାଧବ କହୁଛି ସେ ସେଠାରୁ ବୁଝିସାରିବା ପରେ ଯାହା କରିବ । ରଜାପୁଅ ଏ କଥା ଶୁଣି ଜିଦ୍ ଧରି ବସିଛି କପରି ସାଧବ ଝିଅ ଅନ୍ୟକୁ ବିବାହ କରିବ ଦେଖିବ ବୋଲି । ଏହା ପରେ ପରେ ପାଇକମାନଙ୍କୁ ସାଧବ ଘର ଜଗିରହିବାକୁ ହୁକୁମ ଦିଆଯାଇଛି ।

କବିଙ୍କର କଳ୍ପନା ଚିତ୍ରଙ୍କ ମଧ୍ୟରେ ସେ ସମୟର ରଜାଙ୍କ ଦୌରାତ୍ମ୍ୟ ସହ ବିଭିନ୍ନ ପ୍ରକାର ସମାଜର ଚାଲିଚଳଣି ମଧ୍ୟ ପ୍ରକାଶ ପାଇଛି ।

ସାଧବ ପୁଅ ମାଲୁଣୀ ହାତରେ ସାଧବ ଝିଅ ସମୀପକୁ ସ୍ୱହସ୍ତଗ୍ରଥିତ ମାଳା ପ୍ରେରଣ କରିବା କାଳରେ ତା' ମନରେ ଅକଳନୀୟ ଭାବଧାରା ପ୍ରକାଶ ପାଇଛି । ତାର ବିରହ କଳ୍ପିତ ଅନ୍ତରକୁ କବି ସୁନ୍ଦର ଭାବରେ ରୂପ ଦେଇଛନ୍ତି । ସାଧବ ଝିଅର ଅକଳନୀୟ ରୂପସୌନ୍ଦର୍ଯ୍ୟ କଳ୍ପନାନେତ୍ରରେ ଦେଖି ଦେଖି ସାଧବ ପୁଅ ଆତ୍ମବିଭୋର ହୋଇପଡ଼ିଛି ।

ଚତୁରା ମାଲୁଣୀ କିଛି ନ ଜାଣିଲା ପରି ସାଧବ ପୁଅ ଗୁନ୍ଥି ଦେଇଥିବା ମାଳାଟି ନେଇ ସାଧବ ଝିଅକୁ ଦେବାବେଳେ ନୂଆ ହାତର ସ୍ପର୍ଶ ଅନୁଭବ କରି, ସେ ଭୁହାଇ ଭୁହାଇ ମାଲୁଣୀକୁ ପଚାରିଛୁ—"ଏ ହାର ଗୁ ନ୍ଥାଳି କିଏ ?" ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମାଲୁଣୀ ସମସ୍ତ ବୃତ୍ତାନ୍ତ ପ୍ରକାଶ କରିଛି । ଏହି ସ୍ଥାନରେ କବି ମାଲୁଣୀର ମାତାତୁଲ୍ୟ ସ୍ନେହ ଏବଂ ସାଧବ ଝିଅ ତା' ମନର ଗୋପନ କଥା କପଟ ତା' ଆଗରେ ଖୋଲିଥାଏ ଇତ୍ୟାଦି ପ୍ରକାଶ କରିବା ସଙ୍ଗେ ସଙ୍ଗେ ସାଧବ ଝିଅର ବିରହାନଳରେ ଦଗ୍ଧ ହୋଇଥିବା ହୃଦୟର ଚିତ୍ରଟିକୁ ଉପସ୍ଥାପନ କରି ଏକ ଅବିସ୍ମରଣୀୟ କରୁଣ ଚିତ୍ର ସୃଷ୍ଟି କରିଛନ୍ତି । ସାଧବ ଝିଅର ମନକୁ ଜାଣିବାପାଇଁ ମାଲୁଣୀ ପ୍ରଥମେ ପ୍ରଥମେ କପଟ କରିଛି । କିନ୍ତୁ ଶେଷରେ ସାଧବ ଝିଅକୁ ଆଶ୍ୱାସନା ଦେଇ କହିଛି—

"ଶୁଣ ଧନମଣି, ଯାଏ ମୁଁ ହେଲଣି
ଅନ୍ଧାର,
ସଞ୍ଜେ ବଗିଚ୍ଚରେ କାଲି ଦେଖିବୁ ସେ
କୁମାର ।"

ମାଲୁଣୀଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ସାଧବ ପୁଅ ବ୍ୟସ୍ତ ହୋଇ କହି ଦେଇଛି—"ମାଲୁଣୀ ନାନୀ, ମିଳାଅ ଆଣି, ଏତକ ମୋ ମିନତି ।" ଗୋପନରେ ନେଇ ମାଲୁଣୀ ସାଧବ ପୁଅକୁ ସାଧବ ଝିଅ ସହ ଭେଟ କରାଇବା ପୂର୍ବରୁ ସାଧବ-ପୁଅକୁ ତଥାଚ କହିଛି—

"ପୁରୁଷମନ ଭ୍ରମର ସମ ଫୁଲରୁ ଫୁଲେ ଉଡ଼େ,
ନୂତନ ଆଶେ ମୋହରେ ପଶେ ଖଟରୁ ଖଟକୁଡ଼େ ।

× × ×

ନାରୀ ତ ବୀଣା ଗୁହେଁ ବାଜଣା ବାଯୁକ ପୁଂସ କରେ
ପାରିଲେ ବାଇ, ଗୀତ ଫୁଟଇ ତା ଦେହ ଜନ୍ତରେ ।"

ଏହି ବର୍ଣ୍ଣନା ମଧ୍ୟରେ ମାଲୁଣୀର ଜୀବନର ପରିଚୟ ଦେବା ସଙ୍ଗେ ସଙ୍ଗେ କବି ମାଲୁଣୀ ଦ୍ୱାରା ତରୁଣ ପ୍ରଣୟୀଙ୍କୁ ସଚେତନ କରାଇ ଦେଇଛନ୍ତି । ଶେଷରେ "ସଙ୍ଗାତ ମୋର, ହେବ ଉମର" ବୋଲି କହି ମାଲୁଣୀର ମାତୃତ୍ୱର ପରିଚୟ ମଧ୍ୟ ଦେଇ ଦେଇଛନ୍ତି ।

ପ୍ରିୟ ସହ ପ୍ରିୟାର ମିଳନ ପୂର୍ବର ମାନସିକ ଭାବ ଭାବନା ସବୁ ଅତି ସୁନ୍ଦର ଭାବରେ କବି ପ୍ରକାଶ କରିଛନ୍ତି । ପ୍ରିୟା ପ୍ରିୟଙ୍କୁ ଭେଟିବା ପୂର୍ବରୁ ମନରେ ବିଭିନ୍ନ ଭାବନା ଉଠିବା ସ୍ୱାଭାବିକ । କିପରି ଦେଖାହେବ ଏବଂ କି ରୂପେ ପ୍ରିୟ ତାଙ୍କୁ ଗ୍ରହଣ କରିବେ ଏହି କଥା ସେ ଭାବି ଭାବି ବିନିଦ୍ର ରଜନୀଟି କଟାଇଦିଏ । ନିଜକୁ ହୀନ ଅକିଞ୍ଚନ ବୋଲି ସେ ଧାରଣା କରେ । ଠିକ୍ ସେହିପରି ସାଧବ ଝିଅ ସାଧବ ପୁଅ ସହିତ ମିଳିତ ହେବା ପୂର୍ବରୁ ବହୁତ କଥା ଭାବିଯାଇଛି । ରାଜା ପୁଅର ଭୟରେ ସେ ଗୋପନରେ ଦେଖା କରିବାକୁ ପସନ୍ଦ କରିନି । ନାରୀ ଚାହେଁ ପୁରୁଷର ପୌରୁଷ । ପ୍ରିୟ ଦୁର୍ବଳମନା ନ ହୋଇ ବୀର ହେବା ହିଁ ତାର କାମ୍ୟ । ଗୋପନ ଦେଖା ସେ ପସନ୍ଦ କରିନାହିଁ । ପୁରୁଷ ପରି ଲଢ଼ି ତାଙ୍କୁ ନେବାକୁ ସେ ଚାହିଁଛି । ସ୍ୱାମୀ ସ୍ତ୍ରୀର ଦେବତା, ଅଭୟଦାତା । ସାଧବ ଝିଅ ମଧ୍ୟ ସେହି ଅଭୟ ପାଇବାକୁ ଲାଳସୀ । ସ୍ତ୍ରୀ ସ୍ୱାମୀର ଅର୍ଦ୍ଧାଙ୍ଗିନୀ । ତେଣୁ ସାଧବ ଝିଅ ବିପଦରେ ସ୍ୱାମୀର ଅସ୍ତ୍ର ହେବ ବୋଲି ମନ ଦୃଢ଼ ଓ ନିଶ୍ଚଳ ରଖିଛି । ଉତ୍କଳୀୟ ନାରୀର ବୀର କାହାଣୀର ସୂଚନା ହିଁ ଦିଏ ମାନସିଂଙ୍କ ଏହି ସାଧବ ଝିଅ । ପ୍ରେମ ତା'ର ସଂଯତ; ଉଚ୍ଛୃଙ୍ଖଳ ଭାବରେ କୂଳ ଲଙ୍ଘନ କରି ପ୍ଲାବିତ ହୋଇନାହିଁ ।

ସାଧାରଣ ପୁରୁଷ ଅବଶ୍ୟ ନାରୀର ସୌନ୍ଦର୍ଯ୍ୟ ଦର୍ଶନ କରି ନିଜର ପୌରୁଷ ଭୁଲିଯାଏ । ସୁନ୍ଦରୀ ନାରୀର କିଙ୍କର ହୋଇ ରହିବାକୁ ସେ ପଛାଏ ନାହିଁ । ସାଧବ ପୁଅ ଠିକ୍ ସେହିପରି ସାଧବ ଝିଅକୁ ପାଇ ନିଜକୁ ଅତି ଭାଗ୍ୟବାନ ମନେ କରିଛି । ସାଧବପୁଅ ଦେଇ, କବି ପୁରୁଷର ଚପଳତା ଓ ସ୍ଖଳନ ଭାବକୁ ବର୍ଣ୍ଣନା କଲାବେଳେ ପୁରୁଷମନର ଏକ ନିଖୁଣ ଚିତ୍ର ପ୍ରଦାନ କରିଛନ୍ତି ।

ପ୍ରିୟ ଓ ପ୍ରିୟାର ମିଳନର ଚିତ୍ର ଅତି ନଗ୍ନ ହେଲେ ମଧ୍ୟ ଏତେ ଦିନର ଆକାଂକ୍ଷିତ ମିଳନ ଯେ ଏହିପରି ଗାଢ଼ ହୋଇଥାଏ ତାହାହିଁ ଯଥାଯଥ ମନସ୍ତତ୍ତ୍ୱ । କବି ଅନୁଭବୀ ପରି ପ୍ରଥମ ଦେଖାର ଭାବଗୁଡ଼ିକ ପ୍ରକାଶ କରିଯାଇଛନ୍ତି । ଭଞ୍ଜଙ୍କର ବର୍ଣ୍ଣନା ସହ ଯଥେଷ୍ଟ ସାମ୍ୟ ଥିଲେ ମଧ୍ୟ ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ ପରି ସାଧବ ଝିଅ ଓ ସାଧବ ପୁଅର ମିଳନ ଘଟି ନାହିଁ ଅତିରଞ୍ଜିତ କଳ୍ପନା ରାଜ୍ୟରେ । ପ୍ରଥମ ଥର ଦେଖାସାକ୍ଷାତ ପରେ, ଦ୍ୱିତୀୟ ସନ୍ଧ୍ୟାରେ ସେମାନଙ୍କର ମିଳନ ହୋଇଛି ଉପବନର ଏକ କୋଣରେ । ସାଧବ ପୁଅ ମଣି ହାରକୁ ନିଜ ଗଳାରୁ କାଢ଼ି ସାଧବ ଝିଅ

ଗଳାରେ ପିନ୍ଧାଇ ଦେବା ପରେ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଛି, ତାହା କବିଙ୍କର ବାସ୍ତବ ଅନୁଭୂତି ମଧ୍ୟରେ ଯେପରି ସଙ୍ଘଟିତ ।

"ସରମେ କୁମାରୀ ନ ଟେକେ ବଦନ,
ପାଶେ ଘୁଞ୍ଚି ତେଣୁ ଯୁବା ଟେକେ ମୁଖ ତା'ର ।"

ଏହିପରି ପ୍ରତ୍ୟେକ ଦିନ ସେମାନଙ୍କର ମିଳନ ହୁଏ । ମଉନତା ଭାଙ୍ଗି କ୍ରମେ ମୁଖରେ କଥା ଫୁଟେ । ସାଧବ ଝିଅ ସୁଗୃହିଣୀ ପରି ମିଷ୍ଟାନ୍ନଠାରୁ ଆରମ୍ଭ କରି ସୁବାସିତ ପାନ ପର୍ଯ୍ୟନ୍ତ ସାଧବ ପୁଅକୁ ଆଣି ଯୋଗାଇଦିଏ । ଏହିପରି କିଛି ଦିନ କଟାଇବା ପରେ ଦିନେ ମାଲୁଣୀ ରାଜାଙ୍କ ଗୁପ୍ତଚର ସମ୍ପର୍କରେ ସେମାନଙ୍କୁ ସମ୍ବାଦ ଦେଇଛି । ଏହା ଶୁଣି ସାଧବ ଝିଅ କହୁଛି—

"ଚାଲ ଯେନ୍ନ ମତେ ଲୁଗ୍ରଇଣ ରବ ନାବେ ।"

ରାତ୍ରିର ଅନ୍ଧକାର ମଧ୍ୟରେ ପ୍ରେମିକ ପ୍ରେମିକା ଦୁର୍ଗାଙ୍କୁ ସ୍ମରଣ କରି ଆଗେଇ ଚାଲିଲେ । କିନ୍ତୁ ପଛରୁ ଘୋଡ଼ାର ଟାପୁର ଶବ୍ଦ ସେମାନଙ୍କ ସମୀପକୁ ଆସୁଥିବା ପରି ବୋଧ ହେଲା ।

ଏହା ପରେ ପରେ ତରଙ୍ଗାୟିତ ସାଗର ବକ୍ଷରେ ସୃଷ୍ଟି ହୋଇଛି ଝଡ଼ । ଅବାଧ ଗତିରେ ଏପର୍ଯ୍ୟନ୍ତ ପ୍ରବାହିତ ହୋଇ ଚାଲିଥିବା ପ୍ରେମ ମନ୍ଦାକିନୀର ଧାରାରେ ସୃଷ୍ଟି ହୋଇଛି ବିରାଟ ପ୍ରତିବନ୍ଧକ ।

"ଧର ଧର, ମାର ମାର
ବାନ୍ଧ—ନାହିଁ କର ଖୁଣ୍ ,
ଆଜ୍ଞା ଅଛି ଟୋକାଟାକୁ
ନାହିଁ କର ଟାଣ୍ ଟୂଣ୍ ।"

ଏହିପରି ରଜାପୁଅର ପାଇକମାନେ ପ୍ରତିବନ୍ଧକ ସୃଷ୍ଟି କରିଛନ୍ତି ପଥରେ । କିନ୍ତୁ ତରୁଣ ତରୁଣୀ ମନରେ ଭୟ ନ ରଖି ନିର୍ଭୀକ ଭାବରେ 'ଭୟ ନାହିଁ' କହି ଆଗେଇ ଚାଲିଛନ୍ତି । ବୋଇତରେ ଚଢ଼ିବା ପୂର୍ବରୁ ପାଇକ ସରଦାର ଉଚ୍ଚ ସ୍ୱରରେ କହୁଛି, "ନାରୀ ଛାଡ଼ି ଚାଲିଯାଅ" ; କିନ୍ତୁ ସାଧବ ପୁଅ ବୀର; ସେ ସହଜରେ ତରୁଣୀକୁ ଛାଡ଼ି କାପୁରୁଷ ପରି ଚାଲିଯାଇପାରେନା । "ପ୍ରାଣ ଥିଲା ଯାଏ ନୁହେଁ" ବୋଲି ତରୁଣ ଯୁବକ ଉତ୍ତର ଦେଇଛି । ସରଦାରର ଆଦେଶରେ ପାଇକମାନେ ସାଧବ ଝିଅକୁ ବଳପୂର୍ବକ ଆଣିବାବେଳେ ସେ ମଧ୍ୟ ବୀରତ୍ୱର ପରିଚୟ ଦେଇଛି ।

ମାଝୀଟକୁ ଛୁରୀ କାଢ଼ି ସାଧବ ଝିଅ ପାଇକଙ୍କ ସହ ସମର କରିବାକୁ ଆଗେଇ ଆସିଛି । ଓଡ଼ିଆ ପାଇକ ଓ କଳିଙ୍ଗର ସାଗର-ବଣିକମାନଙ୍କର ବୀରତ୍ୱ ପ୍ରକାଶ କରିବା ସଙ୍ଗେ ସଙ୍ଗେ କବି ପ୍ରେମିକ ପ୍ରେମିକାଙ୍କର ଗାଢ ପ୍ରେମର ପରିଚୟ ମଧ୍ୟ ଏଠାରେ ପ୍ରଦାନ କରିଛନ୍ତି । ଏହାପରେ ସାଧବ ଝିଅକୁ ଧରି ସରଦାର ଚାଲିଯାଇଛି କିନ୍ତୁ ଆହତ ହୋଇ ଓ ଲୁହ ଲହୁରେ ଜଡ଼ି ପଡ଼ିରହିଛି ସାଧବସୁତ । ଅନ୍ଧକାର ମଧ୍ୟରେ ପ୍ରେମିକ ଅଚେତନ ଅବସ୍ଥାରେ ପଚାରିରହି କହୁଛି 'ଅଛି ତ ମୋ ପାଶରେ' ? ଏ କରୁଣ ଚିତ୍ର ପାଠକକୁ କରେ ଉଦ୍‌ବେଳିତ ଓ ଅଭିଭୂତ । ଧାଇଁ ଚାଲେ ମନ ତାର ସାଧବ ଝିଅ ପଛେ ପଛେ । ସାଧବ ଝିଅର ଦୁଃଖରେ ସମଦୁଃଖୀ ହୋଇ ପାଠକ ଅପେକ୍ଷା କରି ଚାହିଁରହେ ପରିଣତିକୁ ।

ପ୍ରଭଞ୍ଜନ ପରେ ଧରା ଶାନ୍ତ ହେଲା ପରି ନଗର ଶାନ୍ତ । ସମସ୍ତଙ୍କର ଚୁପ୍‌ଚୁପ୍ କଥାବାର୍ତ୍ତା :

"ସାଧବ ଖାଇଛି ହଣା, ବିଦେଶୀ ଯୁବାର
ଲୋକବାକ ବନ୍ଦୀ, ଦୁଇ ବୋଇତ ତାହାର
ହୋଇଅଛି ଦଗ୍‌ଧ, ସାଧୁ ସୁତ, ସାଧୁ ସୁତା
କାହିଁଛନ୍ତି, କାହିଁଗଲେ, ମିଳେ ନାହିଁ ପତ୍ତା ।"

ମାଲୁଣୀ ମଧ୍ୟ ସାଧବଝିଅର ଦୁଃଖରେ କାତର ହୋଇପଡ଼ିଛି । ବାତ୍ସଲ୍ୟ-ସ୍ନେହଭରା ମାଲୁଣୀର ମାତୃହୃଦୟ ସୁତାର ଦୁଃଖରେ ଦୁଃଖିତ ହୋଇ ଶେଷରେ ବିଧାତାଙ୍କୁ ଗାଳି ବର୍ଷଣ କରିଛି ।

ଅମୁହାଁ ଗଡ଼ରେ ସାଧବସୁତା ବନ୍ଦିନୀ । ରାଜାପୁଅ ଜିଦ୍ ଧରି ବସିଛି "ଯେ ଯାଏଁ ନ ମଙ୍ଗିଛି ସେ ଯାଏଁ ନ ଛାଡ଼ିବ" । ଚେଟୀ ପ୍ରତ୍ୟହ ତା ସମୀପକୁ ଯାଇ ଅଙ୍ଗୀକାର ମାଗେ, କିନ୍ତୁ ବିଫଳ ହୋଇ ଫେରେ ।

କବିଙ୍କର ସ୍ୱାଭାବିକ ବର୍ଣ୍ଣନା-ବିଳାସ-କ୍ଷମତା ଗମ୍ଭୀର କରୁଣ ରସ ପରିବେଷଣ ଦ୍ୱାରା ଆହୁରି ସୁନ୍ଦର ହୋଇ ପାରିଛି । କବି ସାଧବସୁତାକୁ ଶେଷରେ ବନ୍ଦିନୀ କରି କାବ୍ୟଟିର ସୌନ୍ଦର୍ଯ୍ୟକୁ ଶତଗୁଣିତ କରିପକାଇଛନ୍ତି । ରାଜାଙ୍କର ଦୌରାତ୍ମ୍ୟ ଏବଂ ଖାମଖିଆଲି ପାଇଁ କିପରି ଅବସ୍ଥା ସୃଷ୍ଟି ହୁଏ ତାହା ପ୍ରକାଶ କରିବା ସଙ୍ଗେ ସଙ୍ଗେ କବି ତତ୍କାଳୀନ ସମାଜର ଚିତ୍ର ମଧ୍ୟ ନିପୁଣ ଭାବରେ ପ୍ରଦାନ କରିଛନ୍ତି । ସମାଜର ବନ୍ଧନ ଓ ଶାସକର ଚାବୁକ୍ ପ୍ରହାରରେ ପ୍ରେମିକପ୍ରେମିକାଙ୍କର କି ପ୍ରକାର ପରିଣତି ଘଟେ, ତା'ର ଏକ ଜ୍ୱଳନ୍ତ ଚିତ୍ର ଏଥିରେ ପ୍ରଦତ୍ତ ।

ଘନେ ଋଣୀଥରେ ଘୋର ଅନ୍ଧକାରରେ ସମସ୍ତେ ନିଦ୍ରାଭୋଳ ଥିବାବେଳେ ଜଣେ ବୈରାଗୀ ଅତି କରୁଣ ରାଗିଣୀରେ ଗାନ କରୁଛି ମାଧବଝିଅ ବନ୍ଦିନୀ ଥିବା ଦୁର୍ଗ ନିକଟରେ । ସେ କରୁଣ ରାଗିଣୀ ସନ୍ଧ୍ୟାପରେ ନଦୀର କୂଳରେ ବିଚ୍ଛେଦକାତର ଚିତ୍କାର କରୁଥିବା ଚକ୍ରବାକ ଚକ୍ରବାକୀର ସ୍ୱର ପରି ପ୍ରାଣସ୍ପର୍ଶୀ । ସେ କରୁଣ ସଙ୍ଗୀତ ପ୍ରକାଶ କରୁଥିଲା ପ୍ରିୟଜନର ପ୍ରାଣଭରା ଅନ୍ୱେଷଣ । ସେ ଯେ ମାଧବପୁଅ ଏବଂ ତା'ପାଇଁ ମାଧବସୁତାର ଏ ଦଶା, ତାହା ମଧ୍ୟ ସୂଚନା ଦେଉଥିଲା ସେ ସଙ୍ଗୀତ । ଶେଷ ପର୍ଯ୍ୟନ୍ତ କିପରି ମାଧବସୁତା ଟାଣ ବନ୍ଧନରେ ପ୍ରିୟର ଗଳାକୁ ବାନ୍ଧି ଧରିଥିଲା, ଓ ପାଇକମାନେ କିପରି ତାକୁ ଟାଣି ନେଇଯାଇଥିଲେ, ସେ ସମସ୍ତ ବୃତ୍ତାନ୍ତ ପ୍ରକାଶ କରିଥିଲା ସେହି ସଙ୍ଗୀତ । ଖୋଜି ଖୋଜି ପ୍ରିୟାକୁ ଶେଷରେ ନ ପାଇ ନିରୁତ୍ସାହ ବାଣୀ ପ୍ରକାଶ କରନ୍ତେ ଊର୍ଦ୍ଧ୍ୱର ବାତାୟନ ଖୋଲିବାର ଶବ୍ଦ ଶୁଣିବା ସଙ୍ଗେ ସଙ୍ଗେ ରମଣୀର କ୍ଷୀଣ ସ୍ୱର ଶୁଣି ଚକିତ ହୋଇ ଉପରକୁ ଚାହିଁବା ବେଳେ ସେ ଦେଖିଲା—

"ଏଇ ଯେ ମୁହିଁ ପ୍ରିୟ କୋଳକୁ ପୁଣି ନିଅ
କହି ସେ ତନ୍ୱୀ ତଳେ ଖସିଲା ।"

କିନ୍ତୁ ବିଧାତାର ଏ କି ବିଧାନ ! ଦୁର୍ଗର ଉଚ୍ଚତଳରୁ ନିକ୍ଷିପ୍ତ ହୋଇ ତଳେ ପଡ଼ିବାକ୍ଷଣି ସୁକୁମାରୀ ମାଧବଝିଅର ସ୍ୱାଭାବିକ ମୃତ୍ୟୁ ଘଟିଛି । କୋଳ କରି ଶବ-ମୁଖରେ ଶେଷ ଚୁମ୍ବନରେଖା ଆଙ୍କିଦେଇ ମାଧବପୁଅ ମଧ୍ୟ ସେହି ପଥର ପଥିକ ହୋଇଛି । କି କରୁଣ ସେ ଦୃଶ୍ୟ ! ମଶାଲ ଧରି ରାଜାପୁଅ ସହ ଅନୁଚରମାନେ ଆସି ଯାହା ଦେଖିଲେ ତାହା ବର୍ଣ୍ଣନାତୀତ । କବିଙ୍କ ଭାଷାରେ—"କୋଳାକୋଳି ଦୁଇଟି ଶବ ପ୍ରୀତି-ରସାଳ ।" ସେ ଦୃଶ୍ୟ ଦେଖି କେଉଁ ପାଠକ ବା କେଉଁ ମନୁଷ୍ୟର ହୃଦୟ ସମ୍ଭାଳିପାରେ ? ଧନ୍ୟ କବି, ଧନ୍ୟ ତମ ଲେଖନୀ । ଏପ୍ରକାର ଅତୁଳନୀୟ ମାନବିକ ଚିତ୍ର ଗ୍ରନ୍ଥିଯାଇ ଓଡ଼ିଆ ସାହିତ୍ୟକୁ କି ଭାବରେ ଯେ ତୁମେ ଋଦ୍ଧିମନ୍ତ କରିଗଲ, ତାହା ହୁଏତ ତମେ ନିଜେ ଜାଣନା ।

କବି ଏହିପରି କାବ୍ୟର ଇତିରେଖା ଟାଣି ଶେଷରେ ପ୍ରମାଣ କରିବାକୁ ହୁଏତ ଚାହାଁନ୍ତି ଯେ, ପ୍ରୀତିର ମିଳନ ନିଶ୍ଚିତ । ଅର୍ଥାତ୍ କବି ଦେହ ଉପରେ ଆତ୍ମାର ଓ ମୃତ୍ୟୁ ଉପରେ ଜୀବନର ବିଜୟ ଘୋଷଣା କରିଯାଇଛନ୍ତି ଏବଂ ସେ ପ୍ରମାଣିତ କରିଛନ୍ତି ଯେ, ପ୍ରକୃତ ପ୍ରେମ ବିଦେହ ଓ ଅମର । ତେଣୁ ସେ ପ୍ରକାଶ କରିଛନ୍ତି—

"ଜୀବନ ବାଧା ଡେଇଁ ମିଳନସିନ୍ଧୁ ପାଶେ
ମରଣ-ପଥେ ପ୍ରୀତି-ଜାହ୍ନବୀ ।"

ଟ୍ରାଜେଡିର ଏପ୍ରକାର ମହିମାମୟ ସ୍ପର୍ଶରେ ଏହି ଶ୍ରେଷ୍ଠ କାବ୍ୟଟି ଅତି ସୁନ୍ଦର ଓ ମହାନ୍ ହୋଇପାରିଛି । ନାଟକୀୟ ଭଙ୍ଗୀରେ କାବ୍ୟର ପରିସମାପ୍ତି ଘଟାଇ କବି ଉତ୍କଳର ସମଗ୍ର ମଧ୍ୟଯୁଗର ସାଧବଝିଅମାନଙ୍କୁ ଅମର କରିପାରିଛନ୍ତି ।

ଉତ୍କଳର ନୌବାଣିଜ୍ୟ, ସାଧବର ବୋଇତ ବନ୍ଦାଣ, ପାଇକଙ୍କ ବୀରତ୍ୱ, ଉତ୍କଳର ବୀରାଙ୍ଗନା, ମାଲୁଣୀର ଚରିତ୍ର ଏସବୁ ଉତ୍କଳର ଐତିହ୍ୟ । କିନ୍ତୁ ଆଧୁନିକ କବି ମାନସିଂ କେବଳ ସେ ସବୁର ଚର୍ବିତଚର୍ବଣ ନ କରି ପ୍ରତୀକାଭୂତା 'ସାଧବ ଝିଅର' ମୂଳରୁ ଶେଷ ଯାଏଁ ଆଧୁନିକ ମନସ୍ତାତ୍ତ୍ୱିକ ଚରିତ୍ର ପ୍ରଦାନ କରିଥିବା ହେତୁ ଏକ ନୂତନ ପରିବେଶ ମଧ୍ୟରେ ପୁରାତନହିଁ ନୂତନ ପରି ପ୍ରତିଭାତ ହୋଇଛି । ଉତ୍କଳର ମଧ୍ୟଯୁଗ ମିଶିଯାଇଛି ସାଂପ୍ରତିକ ତରୁଣ-ତରୁଣୀର ପ୍ରାଣରେ । ପ୍ରେମ ଚିରନ୍ତନ, ପ୍ରେମ ପବିତ୍ର । ପ୍ରେମର ପୂତ ମନ୍ଦାକିନୀ ଧାରାହିଁ ଏ ଧରଣୀକୁ ଫଳ-ପୁଷ୍ପବତୀ କରି ରଖିଛି । ରାଧାକୃଷ୍ଣଙ୍କ ପ୍ରେମଠାରୁ ଆରମ୍ଭ କରି ସାଧାରଣ ମାନବର ପ୍ରେମ ପର୍ଯ୍ୟନ୍ତ ସର୍ବକ୍ଷେତ୍ରରେ ସେହି ଏକ ପରିଣତି ପ୍ରେମ, ଆତ୍ମାର ଆତ୍ମା ସହିତ ମିଳନ । ପ୍ରେମ ଖରସ୍ରୋତା ନଦୀପରି ସମସ୍ତ ବାଧାବିଘ୍ନ ଏଡ଼ି ବୋହି ଚାଲେ ମିଳନ ଆଡ଼କୁ । ପବିତ୍ର ପ୍ରେମର ମଧୁର ଓ ମହନୀୟ ଚିତ୍ର ରୂପେ 'ସାଧବଝିଅ' ଯେ ମାନସିଂଙ୍କର ଏକ ବଳିଷ୍ଠ, ସିଦ୍ଧକାମ ରସାଳ-ରଚନା ଏଥିରେ ଅତ୍ୟୁକ୍ତି ନାହିଁ । କିନ୍ତୁ କେବଳ ପ୍ରେମାନୁଭବ ନୁହେଁ ବିବିଧ ନୂତନ ଛନ୍ଦରେ ପ୍ରକୃତି, କଥୋପକଥନ ଓ ଘଟଣା ପ୍ରବାହର ସ୍ପଷ୍ଟ, ସାବଲୀଳ, ସ୍ୱାଭାବିକ ବର୍ଣ୍ଣନା କେବଳ ବିଶ୍ୱର ଶ୍ରେଷ୍ଠ କବିମାନଙ୍କୁ ସ୍ମରଣ କରାଇଥାଏ । ପୁଣି କଳିଙ୍ଗ ଓ ଉତ୍କଳର ସାଗର-ବାଣିଜ୍ୟର ଐତିହ୍ୟ ଏ ଯାବତ୍ କେବଳ କଥାରେ କଥାରେହିଁ ନିବଦ୍ଧ ଥିଲା । ମାନସିଂ ତାଙ୍କର ଏଇ ଶ୍ରେଷ୍ଠ କାବ୍ୟଟିରେ ଦରିଆପାରି-ବାଣିଜ୍ୟ-ସମୃଦ୍ଧ ସେହି ମଧ୍ୟଯୁଗୀୟ ଉତ୍କଳକୁ କଥାର କୁହେଳିକାରୁ ଟାଣିଆଣି, ବର୍ଣ୍ଣସୌରଭମୟ ପ୍ରଚଣ୍ଡ ଜୀବନ୍ତତାରେ ଆମ ଆଗରେ ଠିଆ କରାଇସାରିଛନ୍ତି । ମହାଭାରତର ସ୍ଥୂଳ ଦୁଷ୍ମନ୍ତ-ଶକୁନ୍ତଳା ଉପାଖ୍ୟାନ କାଳିଦାସଙ୍କ ଲେଖନୀରେ ଅଭିଜ୍ଞାନଶାକୁନ୍ତଳମ୍‌ର ପରମ ରମଣୀୟତା ପାଇଲା ପରି ମାନସିଂଙ୍କର ଏହି ରୂପାନ୍ତରୀକରଣ । ପୁଣି କାବ୍ୟଟିକୁ ଧାରାବାହିକ ଭାବରେ ନ ଥୋଇ କେତୋଟି ଅସଂଲଗ୍ନ ଗୀତିକ ଦେଇହିଁ କଥାବସ୍ତୁକୁ ଏପରି ନିପୁଣ ଓ ପ୍ରାଞ୍ଜଳଭାବରେ ଫୁଟାଇବା ଚରମ କାବ୍ୟ-ପାଟବର ପ୍ରମାଣ । ବହୁ ଦିଗରୁ ମାନସିଂଙ୍କ "ସାଧବଝିଅ" ତେଣୁ ଏକ ଅପୂର୍ବ ଓ ଅତୁଳନୀୟ ସୃଷ୍ଟି ।

# 'ଦୁର୍ଭିକ୍ଷ'ରେ କବିଧର୍ମର ସାର୍ଥକତା

ଶ୍ରୀ ଗଙ୍ଗାଧର ଗୁରୁ

କବିଙ୍କୁ ପ୍ରଜାପତି କୁହାଯାଏ । ପ୍ରଜାପତି ହେଉଛନ୍ତି ବିଶ୍ୱକାବ୍ୟର ସ୍ରଷ୍ଟା ବା ପ୍ରକାଶକ । ସଚ୍ଚିଦାନନ୍ଦ ବିଶ୍ୱକବି-ମାନସର ଅତୁଳନମହିମାଶ୍ରିତ ସତ୍ୟଶିବ-ସୁନ୍ଦର ଭାବଧାରାରେ ବିଶ୍ୱକାବ୍ୟର ପ୍ରକୃତିପୃଷ୍ଠାଗୁଡ଼ିକ ଭରପୂର । ସୂକ୍ଷ୍ମଦର୍ଶୀ, ସଂଯମୀ ଜ୍ଞାନୀ ସାଧକଗଣ ସେହି ଅତୀନ୍ଦ୍ରିୟ ଭାବଧାରାର ମହନୀୟ ସ୍ପର୍ଶରେ ଅନୁପ୍ରାଣିତ ତଥା ରସାନ୍ୱିତ ହୋଇ ମାନବିକତାର ଅନିର୍ବଚନୀୟ ସ୍ୱର୍ଣ୍ଦୀକଲ୍ଲୋଲଧାରା ଝରାଉଥାନ୍ତି ଓ ଜଗତର କଲ୍ୟାଣ ସାଧନ କରିଥାନ୍ତି । କାବ୍ୟଜଗତରେ କବିଙ୍କର ସୃଷ୍ଟି ମହନୀୟ ଭବ୍ୟ ଶକ୍ତିଶାଳିନୀ ହେବା ବିଧେୟ । ଅଳଙ୍କାରଶାସ୍ତ୍ରୀଙ୍କ ମତରେ ମଣିଷ ସମାଜକୁ ଧର୍ମଶିକ୍ଷା ଦେବାରେ କବିକୃତି ସାଧନ ହେବା ବାଞ୍ଛନୀୟ । ବକ୍ରୋକ୍ତିଜୀବିତକାରଙ୍କ ଭାଷାରେ

"ଧର୍ମାଦିସାଧନୋପାୟଃ ସୁକୁମାରକ୍ରମୋଦିତଃ
କାବ୍ୟବନ୍ଧୋଽଭିଜାତାନାଂ ହୃଦୟାହ୍ଲାଦକାରକଃ ।"

ଅଭିଜାତ ବ୍ୟକ୍ତିବର୍ଗଙ୍କ ହୃଦୟରେ ଆହ୍ଲାଦଦାନପୂର୍ବକ ଧର୍ମାଦି ଶିକ୍ଷା ଦେବା ହିଁ କାବ୍ୟର ଲକ୍ଷ୍ୟ । କବିଲେଖନୀ ନିଃସୃତ ପଦାବଳୀ ଏପରି ଭବ୍ୟଭାବମଣ୍ଡିତ ରସଗର୍ଭ ହେବା ବିଧେୟ ଯେପରି ପାଠକର ହୃଦୟ ତତ୍ପଠନ ମାତ୍ରେ ମହନୀୟ ଭାବଧାରାରେ ତନ୍ମୟ ହୋଇ ଶ୍ରେୟୋମାର୍ଗର ପଥିକ ହେବାପାଇଁ ଗମ୍ଭୀର ପ୍ରେରଣା ଲାଭ କରିବ ଓ ମହଲ୍ଲକ୍ଷ୍ୟ ପଥରୁ ବିଚଳିତ ନ ହେବାପାଇଁ ଅଦମ୍ୟ ଉତ୍ସାହ ତଥା ନୂତନ ସଞ୍ଜୀବନୀ ସୁଧା ପାଇପାରିବ । ଆମର ନିତିଦିନିଆ ଆଲୋକନନ୍ଦିନୀ ଉଷା ଅତି ପୁରୁଣା ହେଲେ ମଧ୍ୟ ଯେପରି ନିତ୍ୟନୂତନ ପ୍ରତୀତ ହୋଇ ପ୍ରତ୍ୟହ ନୂତନ ଜୀବନଧାରା ସଞ୍ଚାରପୂର୍ବକ ନୂତନ ଆଶା ତଥା ନୂତନ ସାନ୍ତ୍ୱନାମୃତ ପ୍ରଦାନ କରିଥାଏ ଏବଂ ମାନବକୁ ଅଜ୍ଞାନାନ୍ଧକାର ନିବାରଣପୂର୍ବକ ଜ୍ଞାନାଲୋକରେ ଭାସ୍ୱର ହୋଇ ସ୍ୱାନ୍ତର୍ନିହିତଭବ୍ୟ ଜ୍ୟୋତି ପ୍ରକାଶ କରିବାପାଇଁ ପ୍ରେରଣା ଦେଇଥାଏ ସେହିପରି କୌଣସି ବିଶିଷ୍ଟ ପୁରାତନ ଘଟଣା କବିବିରଚିତ କୃତିର ଉପଜୀବ୍ୟ

ବହିଃସ୍ଥ ହୋଇଥିଲେ ମଧ୍ୟ ତାହା ଏପରି ଭାବରେ ସୁବିନ୍ୟସ୍ତ ବା ବର୍ଣ୍ଣିତ ହେବା ହେତୁ ଯେପରି ପାଠକବର୍ଗର ସମ୍ମୁଖରେ ତାହା ନୂତନ ପ୍ରତୀକ ହୋଇ ସ୍ୱକୀୟ ରସରଞ୍ଜିତ ମନୋରମ ପରିପ୍ରକାଶ ଫଳରେ ମାନବର ଶାଶ୍ୱତ ମୃତ୍ୟୁଞ୍ଜୟ ମହିମା ମସ୍ୟୁସଦୁତ୍ତମ ଗୁଣଗଣକୁ ଜାଗ୍ରତ, ଉଦ୍ଦୀପ୍ତ ତଥା ସଞ୍ଜୀବିତ କରିବାରେ ସମର୍ଥ ହେବ ।

କର୍ତ୍ତବ୍ୟନିଷ୍ଠ ଜିତେନ୍ଦ୍ରିୟ ସଂସ୍କୃତି-ସମ୍ପନ୍ନ ମହାପ୍ରାଣ ସନାତନର ବରେଣ୍ୟ ଆତ୍ମତ୍ୟାଗ ବିଷୟକୁ ଉପଜୀବ୍ୟ କରି କବି ମାୟାଧର ମାନସିଂହ ଯେଉଁ ଦୁର୍ଭିକ୍ଷ କାବ୍ୟନାଟିକାଟି ଲେଖିଛନ୍ତି ତାହା ଓଡ଼ିଆ ସାହିତ୍ୟରେ ଏକ ଅନବଦ୍ୟ କୃତି । ସନାତନ, ଜୀବାନନ୍ଦ, ଶିବାନନ୍ଦ ଆଦି ଚରିତ୍ରଗୁଡ଼ିକ "କର୍ମୈବଂ ଚରିତଂ ଶୁଦ୍ଧଂ ଜଗନ୍ମଙ୍ଗଳକାରଣମ୍" ବାକ୍ୟର ସାର୍ଥକତା ପ୍ରତିପାଦନ କରି କବିପ୍ରତିଭାର ଜୟ ଘୋଷଣା କରୁଛନ୍ତି । ଏହି ଗ୍ରନ୍ଥରେ ଅତି ହୃଦୟସ୍ପର୍ଶୀ ଭାବରେ ସୁଗ୍ରୁରୁ ରୂପରେ କରୁଣ ରସ ପରିବେଷଣ କରିବାରେ କବିଙ୍କର ସିଦ୍ଧହସ୍ତତା ଉଲ୍ଲେଖ-ଯୋଗ୍ୟ ।

ଧର୍ମପ୍ରାଣତା ହେଉଛି ନରତ୍ୱର ପରିଚାୟିକା । ପଶୁ ଓ ନର ମଧ୍ୟରେ ପାର୍ଥକ୍ୟ ହେଉଛି ଧର୍ମ । ଧର୍ମହୀନ ମନୁଷ୍ୟ ପଶୁ ସଙ୍ଗେ ସମାନ । ତାହା ହେଉଛି ଧର୍ମ, ଯାହା ଶାଶ୍ୱତ ସଦ୍‌ଗୁଣାବଳୀ ବା ସଦବୃତ୍ତିବର୍ଗକୁ ଧାରଣ କରି ରଖେ । ପଶୁତ୍ୱ ହେଉଛି ସ୍ୱାର୍ଥକେନ୍ଦ୍ରିକ ଓ ପ୍ରବୃତ୍ତିପରାଧୀନ । ପ୍ରବୃତ୍ତିର ଦାସତ୍ୱରୁ ମୁକ୍ତ ହେବାରେ ନରତ୍ୱ ନିହିତ । 'ଧର୍ମର ଆଉ ଏକ ଅର୍ଥ କର୍ତ୍ତବ୍ୟାକର୍ତ୍ତବ୍ୟ ତ୍ୟାଗ-ପ୍ରତିଷ୍ଠିତ । ନିଜ ପ୍ରତି କଠୋର ଓ ପର ପ୍ରତି ଉଦାର ହେବା ହିଁ ଧାର୍ମିକତା । ସହଜାତ ଦୁର୍ଦ୍ଦମ ପ୍ରବୃତ୍ତିବର୍ଗର ସମ୍ପୂର୍ଣ୍ଣ ଜୟଜନିତ ମହିମା-ମଣ୍ଡିତ ସଂବେଦନ-ଶୀଳତା, ସ୍ନେହ, ପ୍ରେମ-ଭକ୍ତି-ଜ୍ଞାନ ପ୍ରଭୃତି ସଦ୍‌ଗୁଣାବଳୀ ହିଁ ନରତ୍ୱର ଶ୍ରେଷ୍ଠ ନିଦର୍ଶନ । ସନାତନ ସଂସ୍କୃତିର ମୂଳାଧାର ବେଦର ଚରମ ନିର୍ଦ୍ଦେଶ ତଥା ଉପଦେଶ—"ମନୁର୍ଭବ ଜନୟା ଦୈବ୍ୟଂଜନମ" ମଣିଷ ହୁଅ, ଦେବସ୍ୱଭାବ-ବିଶିଷ୍ଟ ଜନସୃଷ୍ଟିକର ଧର୍ମାଚରଣ ବିନା ମନୁଷ୍ୟତା ଲାଭ ତଥା ଦେବତ୍ୱ ଲାଭ ଅସମ୍ଭବ । ତେଣୁ ବେଦାନ୍ତର ଗୁରୁଗମ୍ଭୀର ଉପଦେଶ "ଧର୍ମଂ ଚର, ଧର୍ମାନ୍ନ ପ୍ରମଦିତବ୍ୟମ୍ । ମାତୃଦେବୋ ଭବ, ପିତୃଦେବୋ ଭବ 'ଇତ୍ୟାଦି । ଏହି ଉପଦେଶବାଣୀ ସମୂହର ମୂର୍ତ୍ତିମନ୍ତ ବିଗ୍ରହ ହେଉଛି ସନାତନ । ସନାତନ ସଂସ୍କୃତିର ସେ ଜୀବନ୍ତ ପତାକା । ସ୍ୱକର୍ତ୍ତବ୍ୟନିଷ୍ଠାରେ ସେ ଅଟଳ, ସ୍ୱଧର୍ମପାଳନରେ ସେ ବଦ୍ଧପରିକର । ଘୋର ଦୁର୍ଭିକ୍ଷରାକ୍ଷସର କରାଳ କବଳରେ ପଡ଼ି ସେ ଜୀର୍ଣ୍ଣ-ଶୀର୍ଣ୍ଣ, ବିବର୍ଣ୍ଣ, ବିସ୍ଫାରିତଚରିଣ, ଅସ୍ଥିଚର୍ମକଙ୍କାଳମାତ୍ରାବଶିଷ୍ଟ ଯଷ୍ଟିହସ୍ତ । ତଥାପି ଗ୍ରାମେ ଗ୍ରାମେ ଘରେ ଘରେ ବୁଲି ଭିକ୍ଷାତଣ୍ଡୁଳ ସଂଗ୍ରହପୂର୍ବକ ପିତାମାତା ଓ

ଭଗିନୀର ତୁଣ୍ଡରେ ଆହାର ଦେଇ ନିଜର ମାନବଜୀବନ ସାର୍ଥକ କରିବାରେ ସେ ତତ୍ପର । ପିତାମାତା ଓ ଭଉଣୀକୁ ନ ଖୁଆଇବା ପର୍ଯ୍ୟନ୍ତ ସେ ଅନ୍ନସ୍ପର୍ଶ ନ କରିବାକୁ କୃତସଂକଳ୍ପ । ଦେଉଳରେ ପ୍ରସାଦ ପାଇବା ନିମନ୍ତେ ଜୀବାନନ୍ଦଙ୍କ ଦ୍ୱାରା ଅନୁରୁଦ୍ଧ ହେଲେ ମଧ୍ୟ ସେ ନାସ୍ତିବାଣୀ ଶୁଣାଇ କହୁଛି :

"ଘରେ ମୋର ପାଞ୍ଚପ୍ରାଣୀ, ନନା ମା ଭଗିନୀ
ମୁଠିଏ ଚାଉଳ ନେଲେ ପାଣି ପେଜ କରି
ସମସ୍ତେ ପାଇବେ ହେଲେ ମୁନ୍ଦାଏ ମୁନ୍ଦାଏ ।
ଦେଇ ତ ପାରିବ ନାହିଁ ଏତେ ଲୋକେ ଭୋଗ ?
ସେମାନେ ଉପାସେ ଥାଉଁ ଖାଏ ମୁଁ କପରି ?

ଆହା କେଡ଼େ ଗଭୀର କର୍ତ୍ତବ୍ୟନିଷ୍ଠା, କେଡ଼େ ମହାମୂଲ୍ୟ ସମ୍ବେଦନଶୀଳତା ! ନିଜ କର୍ତ୍ତବ୍ୟପଥରେ ସେ ଆଗେଇ ଯାଉଛି । ଛଅଦିନ ହେଲା ତା'ର ବାପ ମା ଖାଇବାକୁ ନ ପାଇ ଉପବାସରେ ମିୟମାଣ ହୋଇ ରହିଛନ୍ତି । ବହୁଦିନ ଧରି ସେ ନିଜେ କିଛି ଖାଇନାହିଁ । ତାର ସାନ ଭଉଣୀ ମଧ୍ୟ କ୍ଷୁଧାତୁର । ଏପରି ଅବସ୍ଥାରେ ବହୁକଷ୍ଟଲବ୍ଧ ଭିକ୍ଷାର ତଣ୍ଡୁଳ ଧରି ସେ ନିଜ ଗାଁକୁ ଫେରୁଥିଲା ସମୟରେ କେତେଜଣ କାଙ୍ଗାଳଙ୍କୁ ଭେଟିଛି । କାଙ୍ଗାଳମାନେ ଜନୈକ ଧନୀ ଘରେ ପ୍ରବେଶ କରି ତାର ଭଣ୍ଡାର ଲୁଟିବା ପାଇଁ ପ୍ରସ୍ତାବ ଆଣିଛନ୍ତି । ଦେବତାତ୍ମା ସନାତନ ସେହି ଗର୍ହିତ ପ୍ରସ୍ତାବର ବିରୋଧ କରି ଧର୍ମ-ସମ୍ମତ ବାଣୀ ଶୁଣାଇଛି,—

"ନାହିଁ ଭାଇ ଏ କାମ ମୁଁ ନାହିଁ କରିପାରେ ।
ସାମାନ୍ୟ ପେଟର ଲାଗି ହେବି ଡ଼କାଇତ ?
କ୍ଷୁଧା ପାଇଁ କରିବି ଅଧର୍ମ ?
ନନା ମୋର ନୈଷ୍ଠିକ ବ୍ରାହ୍ମଣ
ପିଲାଦିନୁ ଅଛନ୍ତି ଶିଖାଇ
ପରଦ୍ରବ୍ୟ ପରନାରୀ ନ ଛଁଇବି ଲୋଭ ।

× × ×

ଡକାଇତି ଅପକର୍ମ କରିବି କିପାଇଁ ?"

ଧନ୍ୟ ସେହି ବ୍ରାହ୍ମଣ ସନ୍ତାନ ! ଧନ୍ୟ ତାର ଜନକଜନନୀ ! ଧନ୍ୟ ତାର ମୃତ୍ୟୁଞ୍ଜୟୀ ସଂସ୍କୃତି ! ଧନ୍ୟ ତାର ଧର୍ମନିଷ୍ଠା ! କାଙ୍ଗାଳଦଳ ତା' ଉପରେ ରାଗିଯାଇଛନ୍ତି ଏବଂ ତାର ଭିକ୍ଷାଲବ୍ଧ ତଣ୍ଡୁଳ ବଳାତ୍କାରରେ ଲୁଟିବାପାଇଁ ତାକୁ ଧରିବାକୁ ଉଦ୍ୟତ ହୋଇଛନ୍ତି । ସନାତନ ସେମାନଙ୍କୁ କାକୁତିମିନତି କରିଛି ତାକୁ

ଗ୍ରହଣ କରିବାପାଇଁ । ଏପରି ସମୟରେ ଦୁଇଟି ଖ୍ରୀଷ୍ଟାନ ପାଦ୍ରୀ ସେଠାରେ ଉପସ୍ଥିତ ହୋଇଛନ୍ତି ଏବଂ ଯୀଶୁଙ୍କ ଆଶ୍ରୟ ନେଲେ ଦୈହିକ ତଥା ଆତ୍ମିକ ସବୁ ଦୁଃଖ ଦୂର ହେବ ବୋଲି ଖ୍ରୀଷ୍ଟଧର୍ମର ମହିମା ଗାନ କରିଛନ୍ତି । କାଙ୍ଗାଳମାନେ ନିଜ ଧର୍ମ ଗ୍ରହଣ ଖ୍ରୀଷ୍ଟାନ ହେବାକୁ ଚାହିଁଛନ୍ତି । ତାହା ଦେଖି ଧର୍ମପ୍ରାଣ ସନାତନର ହୃଦୟ ବ୍ୟଥିତ ହୋଇଛି । ସେ ସଙ୍ଗେ ସଙ୍ଗେ ସେହି ଦୁର୍ବଳହୃଦୟ କାଙ୍ଗାଳମାନଙ୍କୁ ଶୁଣାଇଛି :

"ପେଟ ଭୋକ ପାଇଁ
ଗ୍ରହଣ କରିବ ଯାତପୂରୁଷର
କାହିଁ ଧର୍ମ ଦେବଦେବୀ ?
ବୁଢ଼ା ବୁଢ଼ା ହୋଇ
ଏଇ ବୁଦ୍ଧି ହେଲା ଶେଷେ ?
ଅମର କି ହେବ ଖାଇ କିରସ୍ତାନୀ ଭାତ ?
କିରସ୍ତାନ ହେଲେ ଯାଇ ମନୁଷ୍ୟର ଡାକ
ଶୁଣିବେ ବିଧାତା,
ନ ହେଲେ ନ ହୁଏ, ଏହା କଲ କି ବିଶ୍ୱାସ ?"

କେବଳ ସେତିକି ନୁହେଁ; ସେ ତାର କଷ୍ଟଲବ୍ଧ ଭିକ୍ଷାତଣ୍ଡୁଳ ସବୁ ସେମାନଙ୍କୁ ଦେଇ ତଦୀୟ ମହୋଦାର ହୃଦୟର ପରିଚୟ ଦେଇ ସ୍ୱଧର୍ମତ୍ୟାଗ ନ କରିବାକୁ ବିନୀତ ଭାବରେ ସେମାନଙ୍କୁ ନିବେଦନ କରି କହିଛି,

"ସାତଦିନ ଉପାସୀ ମୁଁ, ଘରେ ମୋର କୁଟୁମ୍ବ ଉପାସୀ,
ତଥାପି ଏ କଷ୍ଟଲବ୍ଧ ଭିକ୍ଷାର ତଣ୍ଡୁଳ
ନିଅ ବାଣ୍ଟି, ହେଉ ତବ କ୍ଷୁଧା ପରିଶ୍ରାନ୍ତ ।
କ୍ଷୁଧା ଶାନ୍ତ ପରେ
ସ୍ଥିର ମନେ ଭାବି ଯଦି କରିବ ନିଶ୍ଚୟ
ତେଜିବାକୁ ନିଜ ଧର୍ମ, କର ଯାଇ ତେବେ;
ମୁହିଁ ଗଲି ମୋ ବାଟରେ ।"

ଧର୍ମପ୍ରାଣତାର, ସମ୍ବେଦନଶୀଳତାର କି ସୁନ୍ଦର ନିଦର୍ଶନ ! ଦୁର୍ଦ୍ଦଶାର ସୁଯୋଗ ନେଇ ଅନ୍ୟକୁ ଧର୍ମାନ୍ତର ଗ୍ରହଣ କରାଇବାର ଦୁରଭିସନ୍ଧିମୂଳକ କୌଶଳର କି ସୁନ୍ଦର ପ୍ରତିବାଦ ଓ ସମାଲୋଚନା ! ସ୍ପର୍ଶମଣିର ସ୍ପର୍ଶରେ ଲୌହ ସୁବର୍ଣ୍ଣରେ ପରିଣତ ହେଲା ପରି ସନାତନର ସେହି ମହିମାମୟ ଶକ୍ତିଶାଳିନୀ ବାଣୀର ସଦ୍ୟ

ପ୍ରଭାବରେ ଜଣେ କାଙ୍ଗାଳ ଅପୂର୍ବ ଭାବାବେଶରେ ନବ ତେଜୋବଳ ଲାଭ ପୂର୍ବକ ନିଜର ସମସ୍ତ ଦୈନ୍ୟ, ଗ୍ଲାନି ଭୁଲିଯାଇଛି ଓ ସନାତନର ମାର୍ଗାନୁସରଣ କରି କହୁଛି,

"ଶୁଣ ଭାଇ, ଶୁଣ ଭାଇ,
ମୁହିଁ ଯିବି ତୁମରି ସଙ୍ଗତେ ।
କ୍ଷୁଧା ମତେ ଅନ୍ତିତେ ଯା କରିଅଛି ପଶୁ
ଆଉ ଯେହ୍ନେ ନ କରେ ତା' ।
ମରିବି ପଛକେ ପଥେ ତୁମରି ସଙ୍ଗରେ
ମରିବି ମନୁଷ୍ୟ ପରି,
ଅନ୍ୟ ଭୋକିଲର ମୁଖୁ ନ ଛଡ଼ାଇ ଅନ୍ନ
ମୋ ଉଦର ଶାନ୍ତ ପାଇଁ ।"

ସନାତନ ଓ ସେହି କାଙ୍ଗାଳଜଣକ କାଞ୍ଚନପୁର ବାବାଜୀର ଅନ୍ନଛତ୍ର ଉଦ୍ଦେଶ୍ୟରେ ଯାଉଛନ୍ତି । ରାସ୍ତାରେ ସନାତନ ଚଳତ୍‌ଶକ୍ତିହୀନ ହୋଇପଡ଼ୁଛି । କାଙ୍ଗାଳଟି ତାକୁ ସାନ୍ତ୍ୱନା ଦେଇ କହୁଛି, କାଞ୍ଚନପୁର ଅତି ନିକଟରେ ଅଛି । ବାବାଜୀର ଛତ୍ରରେ ପହଞ୍ଚିଲେ ଯଥେଷ୍ଟ ଭୋଜନ ମିଳିବ । ସନାତନ କିନ୍ତୁ ନିଜ ପେଟ କଥା ଭାବୁ ନାହିଁ । ପିତାମାତା ତଥା ଭଗିନୀର ଅସହାୟ ଅବସ୍ଥା ଭାବି ତାର ଅନ୍ତର ବ୍ୟଥିତ, ଛଟପଟ ହେଉଛି । ତେଣୁ ସେ କହୁଛି,—

"ମୋ ଖାଇବା କଥା ଭାଇ ତୁଣ୍ଡେ କପାଁ ଧରୁ ?
ମୋ ପେଟ ମୁଁ ଭାବୁନରେ କେବେ ।
ନନା ବୋଉ, ଗ୍ରେଟ ସେଇ ଭଉଣୀଟି ମୋର,
ତାଙ୍କୁଇ ସ୍ମରଣ କରି ବିକଳ ମୁଁ ହୁଏ;
ତାଙ୍କର ଚିନ୍ତାରେ ଅଧେ ହୁଏ ମୁଁ ଅବଶ ।
ଭିକ୍ଷା ଖୋଜି ବହୁଦୂର ଆସିଅଛୁ ଚାଲି,
ଫେରିବାର ଆଶା ନାହିଁ ଖାଲି ହାତେ ମଧ୍ୟ,
ମରିଯିବି ରାସ୍ତା କଡ଼େ, ଶାଗୁଣା ବିଲୁଆ
ଖାଇବେ ମୋ ହାଡ଼ ମାଂସ ।
ନନା ବୋଉ ପ୍ରାଣ ଧରି ଥିବେ ଯଦି ବଞ୍ଚି
ଶୁଣିଲେ ଏ କଥା
ଠିଆ ଠିଆ ଦେବେ ପ୍ରାଣ ହାରି;
ବଞ୍ଚିବେ ବା କିପରି ଏକାଳେ ?
ବୃଦ୍ଧକାଳେ ମୁଁ ତାଙ୍କର ଏକଇ ସମ୍ବଳ ।"

ଆହା, କି କରୁଣ ଏହି ଉକ୍ତିଗୁଡ଼ିକ ! ଏକ ମହନୀୟ ଆତ୍ମାର କି ସୁନ୍ଦର ପରିପ୍ରକାଶ ! ପବିତ୍ର ପାରିବାରିକ ବନ୍ଧନର କେଡ଼େ ଦୃଢ଼ତା ! "ନ ଖାଇବା ଯାଏ ନନା, ବୋଉ, ଭଉଣୀଟି ନ ଛୁଇଁବି ପାଣି"—ଏଇ ତାର ସଂକଳ୍ପ, ଏଇ ତାର ପ୍ରତିଜ୍ଞା । ତାର କେବଳ ଏକମାତ୍ର ଚିନ୍ତା ଯେ ଯଦି ତା'ର ଜୀବନ ଚାଲିଯାଏ ତେବେ ତାର ପିତାମାତାଙ୍କ ଦଶା କିପରି ହେବ । କିଏ ସେମାନଙ୍କୁ ପୋଷିବ ? ଶ୍ରେଷ୍ଠ ଭଉଣୀର ଯତ୍ନ କିଏ ନେବ ? କ୍ଷୁଧାର ଭୀଷଣ ଜ୍ୱାଳାରେ ପଡ଼ି କିଛୁ ଖାଇବାକୁ ଇଚ୍ଛା କଲେ ମଧ୍ୟ ସେ ଖାଇପାରେ ନାହିଁ, ଯେହେତୁ ଶ୍ରେଷ୍ଠ ଭଉଣୀର ମୁହଁ ତା' ଆଖି ଆଗରେ ଝଟକିଉଠେ । ଶ୍ରେଷ୍ଠ ଭଉଣୀ ଭୋକରେ ଥିଲାବେଳେ ସେ କେମିତି ଖାଇବ ? ତା' ହାତରୁ ସ୍ୱତଃ ଖାଦ୍ୟଗୁଣ୍ଡା ଖସିପଡ଼େ । କବି ମାନସିଂହ ସନାତନର ସେହି ଭାବନାକୁ ସୁନ୍ଦର ରୂପ ଦେଇ ଲେଖିଛନ୍ତି,—

"ସତ କଥା, ଭାଇ,
କେ ତାଙ୍କୁ ପୋଷିବ ମୁହିଁ ମରିଯାଏଁ ଯଦି ?
କେତେ ଥର ଅନ୍ନଗୁଣ୍ଡା ଆଣିଛୁ ମୁଁ ମୁଖେ
କ୍ଷୁଧାର ଜ୍ୱାଳାରେ ଭୁଲି,
କିନ୍ତୁ ପ୍ରତି ଥର
ଶ୍ରେଷ୍ଠ ସେ ଭଉଣୀ ମୁହଁ ଉଠଇ ଚିତ୍ତରେ
ପ୍ରାଣ ଡାକିଉଠେ ମୋର, 'ସେ ଅଛି ଭୋକିଲା'
ଖାଦ୍ୟଗୁଣ୍ଡା ଖସିପଡ଼େ ହାତରୁ ମୋହର ।
ଆହା ମୋ କମଳି,
କମଳି ରେ, ଧନ ମୋର,
ପ୍ରାଣର ସଙ୍ଗାଳି,
ସଙ୍ଗାଳି ମୋ ନନା ବୋଉଙ୍କର,
ତୁହି ପୁଣି ମରୁ ଛଟପଟେ
ଅଣହେଲେ ଅନାହାରେ
ଏହା ପୁଣି ଦେଖିବାକୁ ଥିଲା ମୋ କପାଳେ ।"

ଏହି ବେଦନାଭରା ବାଣୀଗୁଡ଼ିକ କି ଗଭୀର, ରସାଳ, କରୁଣ ଓ ମାନବିକ !

ସହାୟକ କାଙ୍ଗାଳଟି ସନାତନକୁ ଅନ୍ନଛତ୍ରକୁ ନେଉଯାଉଛି । ଅନ୍ନଛତ୍ରରେ ଜୀବାନନ୍ଦ ସନାତନକୁ ଚିହ୍ନିଛନ୍ତି ଓ ତା' ପାଇଁ ଅନ୍ନବ୍ୟଞ୍ଜନ ଆଣି ଦେଇଛନ୍ତି ଓ ତାର ପରିବାରବର୍ଗଙ୍କ ପାଇଁ ଯଥେଷ୍ଟ ଅନ୍ନ ଦେଇଛନ୍ତି । ସନାତନ ସେଠାରେ କିଛି ଅନ୍ନ ଖାଇବାପାଇଁ ଅନୁରୁଦ୍ଧ ହେଲେ ମଧ୍ୟ ମନା କରୁଛି । ସେ କହୁଛି,—

"ବଅ ବାକ୍ଷ ବୁଜୁଲାରେ ନେବ ମୁହିଁ ଘରେ,
ନନା ବୋଉ ଅନାହାରେ ଥିବେ ଯେ ଅନାଇ ।
ତାଙ୍କ ମୁଖେ ନାହିଁ ଦେଇ ଅନ୍ନ
ଖାଇ ମୁଁ ପାରବ ନାହିଁ ।"

ସନାତନର କରୁଣରସ-ଜର୍ଜର ମହାମାନବିକତାସମ୍ପନ୍ନ ଦେବତ୍ୱ ନିକଟରେ ପାଠକ ସ୍ୱତଃ ନତମସ୍ତକ ହୁଏ, ତା'ର ଆଖିରୁ ସ୍ୱତଃ ଅଶ୍ରୁଧାର ଝରିପଡ଼େ । ତାହା ହିଁ କବିଲେଖନୀର ସାର୍ଥକତା-ଦ୍ୟୋତକ ।

ସନାତନ ଓ କାଙ୍ଗାଳ ଅନ୍ନଛତ୍ରରୁ ଫେରୁଛନ୍ତି । ସନାତନର କାନ୍ଧରେ ଖାଦ୍ୟର ଦୁଇଟି ବୁଜୁଲି ଦୁଇ ପାଖରେ ଝୁଲୁଛି । ବୈଶାଖ ମାସ, ଦ୍ୱିପ୍ରହର, ପ୍ରଚଣ୍ଡ ଖରା । ସନାତନର ଆଉ ଚାଲିବାର ଶକ୍ତି ଆଦୌ ନାହିଁ । ତାର ସାଥୀ କାଙ୍ଗାଳଟି ତାକୁ ଗଣ୍ଡେ ଅନ୍ନ ଖାଇ ଟିକିଏ ସୁସ୍ଥ ହେବା ପାଇଁ ବହୁ ଅନୁରୋଧ କରି କହୁଛି,—

"ଶୁଣ ବାବା, କଥା ମୋର ଶୁଣ,
ଜଳେ ଗଣ୍ଡେ ପକାଅ ପାଟିରେ,
ତେବେ ଯିବା ଲେକେ ଆପଣାର
ଭେଟିବ ଏ ଅନ୍ନ ନେଇ !
ପାଞ୍ଚଦିନ ଉପବାସେ ଭ୍ରମି ଗ୍ରାମୁଁ ଗ୍ରାମେ
ତୁମେ ଯାହା ହେଲଣି ଅଶକ୍ତ,
କେମନ୍ତେ ଚାଲିବ ପୁଣି ଆଉ ତିନି କୋଶ ?
ଯଥେଷ୍ଟ ତ ଅଛି ଖାଦ୍ୟ
ତୁମ ପାଇଁ, କୁଟୁମ୍ବଙ୍କ ପାଇଁ;
ସନ୍ନ୍ୟାସୀଏ ଚହ୍ନିଲେ ତୁମ୍ଭଙ୍କୁ,
ଏତେ ସେ କହିଲେ ଘରେ ଦେବେ ପହଞ୍ଚାଇ
ଯେତେ ଲୋଡ଼ା ଚାଉଳ ପଇସା
କିଛି ଶୁଣିଲନି କଥା,
ବଡ଼ ଅବାଗିଆ ।"

ଦେବାତ୍ମା ସନାତନର ସେହି ଏକ କଥା—ବାପ ମା ଓ ଭଉଣୀ ଭୋଖେ ଥାଉଁ ଥାଉଁ ସେ କେମିତି ଖାଇବ ?

"ସବୁ ମୁଁ ବୁଝୁଛି ସତ,
କିନ୍ତୁ ବାପା ବୋଉ,
ପ୍ରାଣର ସେ ଶ୍ରେଷ୍ଠ ଭଉଣୀଟି
ଉପାସରେ ହୋନ୍ତି ଜଳବଳ,
ଜାଣି ଜାଣି କେମନ୍ତେ ମୁଁ ଭୁଞ୍ଜିବି ସୁଖରେ
ପାଟିକି ତ ନାହିଁ ଯାଏ ହାତ;
ଯାହା ଗଲା ଦଅ ମତେ
ଜୀବନେ ତ କରନାହିଁ ତାହା,
କରି ନାହିଁ ପାରେ ଏବେ ।"

ସନାତନ ଆଉ ଅଗ୍ରସର ହୋଇ ନ ପାରି ଗଛମୂଳକୁ ତାକୁ ଧରି ନେଇଯିବା ପାଇଁ ସାଥୀଙ୍କୁ ଅନୁରୋଧ କରୁଛି । ଏପରି ସମୟରେ ସନାତନର ବାଲ୍ୟବାନ୍ଧବୀ ସହଧର୍ମିଣୀ ସେଠାରେ ଉପସ୍ଥିତ ହୋଇ ସ୍ୱ-କର୍ତ୍ତବ୍ୟନିଷ୍ଠାର ମହନୀୟତା ପ୍ରଦର୍ଶନ-ପୂର୍ବକ ତାର ଯତ୍ନ ନେବାରେ ଲଗିଛି । ସେ ଓ କାଙ୍ଗାଳ ଦହେଁ ମିଶି ସନାତନକୁ ଧରିଚନ୍ତି । ଶେଷମୁହୂର୍ତ୍ତରେ ପତିପତ୍ନୀର ମିଳନ ଅତି କରୁଣ ଓ ହୃଦୟସ୍ପର୍ଶୀ ହୋଇଛି । ସନାତନ ନିଜର ଧର୍ମପତ୍ନୀ ଅନ୍ନପୂର୍ଣ୍ଣାକୁ ଚିହ୍ନିପାରି କହୁଛି,

"ଅନ୍ନପୂର୍ଣ୍ଣା, ଅନ୍ନପୂର୍ଣ୍ଣା,
ସତ୍ୟ ନା କୁହୁକ ?
ଧର ମତେ ବକ୍ଷେ ତବ...
ଜନନୀ ମୋ ଦୂରେ ଥିବେ ଶୁଣି
ପ୍ରାଣଦୋସ୍ତି ବକ୍ଷେ ତାଙ୍କ ଶେଷ ଥର ପାଇଁ
ନ ପାରିଲି ଦେଇ ଶିଶୁ ମୁଖ ।
ଦ୍ୱିତୀୟା ଜନନୀ ତୁମେ
ଆସିଅଛ ଶେଷ ମୁହୂର୍ତ୍ତରେ,
ଦଅ ମତେ ଶେଷ ଶଯ୍ୟା ।"

ସନାତନର ଧର୍ମପତ୍ନୀ ଓ କାଙ୍ଗାଳଟି ସନାତନକୁ ଧରି ବସିଛନ୍ତି । ସଦ୍‌ଗୁଣଶାଳିନୀ କର୍ତ୍ତବ୍ୟପରାୟଣା ଅନ୍ନପୂର୍ଣ୍ଣା ନିଜର ପତିଦେବଙ୍କ ଦୁର୍ଦ୍ଦଶା ଦର୍ଶନରେ ମ୍ରିୟମାଣା ହୋଇଛି । ପତିର ଜୀବନ ବଞ୍ଚାଇବା ପାଇଁ ପ୍ରାଣପଣେ ଚେଷ୍ଟା କରୁଛି । ତାର ବେଦନା-ମଥିତ ହୃଦୟ-କନ୍ଦରରୁ ପ୍ରୀତି-ସ୍ନିଗ୍ଧ ବାଣୀଧାରା ଝରିପଡ଼ୁଛି,

"ବଞ୍ଚିଲିବ ଧନ,
ଏତେ ଶ୍ରମ ବୃଥା ଯିବ ମୋର !

ଜୀବନେ ମୋ ଏ ଦୀର୍ଘ ପ୍ରତୀକ୍ଷା
ଭାବିଥିଲି ତୋଳିନେବି ପଥପ୍ରାନ୍ତୁ କାହିଁ
ଝାଡ଼ି ଧୂଳିମଳି ଅଙ୍ଗୁ
ପିନ୍ଧାଇଣ ସୁବାସ ବସନେ
ଭୁଞ୍ଜାଇଣ ନିଜ ପକ୍ୱ ଶ୍ରେନ୍ୟ
ନିଜ ଗୃହେ ଦେଇଥାନ୍ତି ନୂତନ ଜୀବନ,
ନିଜର ପ୍ରତିମା ଗଢ଼ି
ପୂଜିଥାନ୍ତି ବସି
ଏକାନ୍ତ ଆପଣା କରି ।
ରହି ଧନ, ବଞ୍ଚିରହି ଖାଲି,
ମୋର ପାଇଁ ହେଲେ ରହି ବଞ୍ଚି
ଚଣ୍ଡାଳୁଣୀ ଜାଣିଥିଲେ ଆଗରୁ ଏ ଦଣ୍ଡ
ଘରୁ ଗୋଡ଼ କାଢ଼ିବାକୁ ଦେଇ ମୁଁ ନ ଥାନ୍ତି,
ବଞ୍ଚି ରହି ସବୁ ଭାର ନେବି ମୁଁ ଏଥର
ପ୍ରାଣର ସମ୍ପଦ ମୋର ।''

କିନ୍ତୁ ଭାଗ୍ୟର ଲିଖନ କେ କରିବ ଆନ ? ନିୟତିର ଭୟଙ୍କର ଖେଳ । ସନାତନ ଢଳିପଡ଼ୁଛି ''ଗଲି ଗଲି କମଳି ରେ, ବାପା ବୋଉ'' ବୋଲି ଶେଷନିଃଶ୍ୱାସ ତ୍ୟାଗ କରୁଛି । ଅନ୍ନପୂର୍ଣ୍ଣାର ଆଶାଭରସା ସବୁ ଲୋପ ପାଇଛି । କୌମୁଦୀ ଶଶଧରର ଅନୁଗାମିନୀ ହେଲା ପରି ମେଘ ସହିତ ବିଦ୍ୟୁତ୍ ବିଲୀନ ହେଲା ପରି ପତିଙ୍କର ଅନୁଗାମିନୀ ହେବା ପାଇଁ ଅନ୍ନପୂର୍ଣ୍ଣା ସ୍ଥିର କରୁଛି । ସନାତନର ଶବକୁ ଉଠାଇ ନିଜର ଦେହରେ ପକାଇ ସେ ଠିଆ ହୋଇ କହୁଛି,

''ହୃଦୟ ନାଥ,
ମତେ ଛାଡ଼ି ଯାଇ ନ ପାରିବ ।
ତୁମ ଲାଗି ଛାଡ଼ିଛି ଯା' ଘର
ଆଶ୍ରିଥିଲି ପଥ ସଂସାରର
ଆଉ ମୁଁ ନ ଫେରେଁ ଘରେ
ନ ଫେରେ ସଂସାରେ,
ତୁମ ପଥ ମୋର ପଥ
ଜୀବନେ ନ ହେଲା ଯଦି
ହେବ ସେ ମରଣେ,
ନିଅ ମୋତେ ସାଥେ ।''

ଉଭୟଙ୍କର ଭୂପତନ ଓ ତରୁଣୀ ଅନ୍ନପୂର୍ଣ୍ଣାର ମୃତ୍ୟୁ ହୋଇଛି । ଧର୍ମପରାୟଣା ସତୀ ସାଧ୍ୱୀ ଗୃହିଣୀର ଜୀବନ ମର୍ମନ୍ତୁଦ କରୁଣ ପରିସ୍ଥିତିରେ ସାର୍ଥକ ହୋଇଛି । ଆଦର୍ଶ ହିନ୍ଦୁରମଣୀର ନିଷ୍କଳଙ୍କ ପାତିବ୍ରତ୍ୟ ଓ ଧର୍ମନିଷ୍ଠାର ମହିମା ପ୍ରଦର୍ଶିତ ହୋଇଛି ।

ସନାତନର ଆତ୍ମତ୍ୟାଗ ସମ୍ବାଦ ପାଇ ତାର ପିତାମାତା ମଧ୍ୟ ପ୍ରାଣତ୍ୟାଗ କରିଛନ୍ତି । କମଳି ସନ୍ନ୍ୟାସୀ ଆଶ୍ରମରେ ଆଶ୍ରୟ ଲଭିଛି । ସନାତନର ମରଣଶୀଳ ମୃତ୍ୟୁବରଣ କରିଛି । କିନ୍ତୁ ତାର ଆତ୍ମା ମୃତ୍ୟୁଞ୍ଜୟ ଅବିନଶ୍ୱର—ଯଶୋଭାସ୍ୱର ହୋଇ ରହିଛି । ତାର ନାମ ଅକ୍ଷରେ ଅକ୍ଷରେ ସାର୍ଥକ ହୋଇଛି ।

"As one lamp lights another, nor grows less,
So nobleness enkindleth nobleness."

ଏହି କବିବାଣୀ ସନାତନ ଚରିତ୍ରରେ ସାର୍ଥକତା ଲଭ କରିଛି ।

ଯେଉଁ ସାହିତ୍ୟ ପାଠ କଲେ ମନୁଷ୍ୟର ଚିତ୍ତବୃତ୍ତି ଉନ୍ନତ, ଗମ୍ଭୀର, ସମୁଦାର ଭାବରାଶିଦ୍ୱାରା ପ୍ରଭାବିତ ହୋଇ ନରହୃଦୟ ଅମରାଲୋକରଞ୍ଜିତ ହୁଏ ତାହା ପ୍ରକୃତ ସାହିତ୍ୟ । କବିତାକାରରେ ପ୍ରକାଶ କଲେ—

"ଅନୁପମ ଭାବାମୃତେ
ମାନବ ହୃଦୟ
କରାଇ ତନ୍ମୟ
ସମ୍ବେଦନଶୀଳତାର ଅପୂର୍ବ ଜାହ୍ନବୀ
ସୃଜିବାରେ ଯେହୁ ଦକ୍ଷ ପ୍ରଶଂସ୍ୟ ସେ କବି ।
ଆତ୍ମାନନ୍ଦ ବିତରଣେ ଯାର ଯେତେ ଶକ୍ତି
ସେ କବିତା ତେତେ ଧନ୍ୟା, ବରେଣ୍ୟା, ମହତୀ ।"

ଯେଉଁ ଭାବପ୍ରବାହ ମନୁଷ୍ୟର ସୂକ୍ଷ୍ମ ଉଚ୍ଚ ପ୍ରବୃତ୍ତିସକଳର ଉନ୍ମେଷକ ହେବାରେ ଅକ୍ଷମ ତାହା ପ୍ରଶସ୍ତି ଲଭ କରି ନ ଥାଏ । ସମାଜର ହିତ ସାଧନ ହେଉଛି ସାହିତ୍ୟର ପରମ ଲକ୍ଷ୍ୟ । ମନୁଷ୍ୟତାର ବୃଦ୍ଧି ବିନା ସମାଜର କଲ୍ୟାଣ ଅସମ୍ଭବ । ଯେଉଁ କବି ବା ଲେଖକ ସ୍ୱୀୟ କୃତି ମାଧ୍ୟମରେ ମନୁଷ୍ୟତାର ବିକାଶ ଦିଗରେ ଯେତେ ସହାୟକ ହୋଇଥାନ୍ତି ସେ ତେତେ ପ୍ରଶଂସ୍ୟ ହୁଅନ୍ତି । ମନନ-ଶୀଳତାରେ ମନୁଷ୍ୟତାର ମହତ୍ତ୍ୱ ନିହିତ । ଶ୍ରେୟ ପ୍ରେୟର ତାରତମ୍ୟ, ଭଲ ମନ୍ଦର ପାର୍ଥକ୍ୟ, ସାରାସାରର ପ୍ରଭେଦ ବିବେକର ସହଯୋଗରେ ଭଲଭାବରେ ସ୍ଥିର କରି

କଲ୍ୟାଣପ୍ରଦ ଶୁଭଙ୍କର ମାର୍ଗାବଲମ୍ବନ କରିବା ହିଁ ମନନଶୀଳତାର ଧର୍ମ । ଉକ୍ତ ଧର୍ମର ପରିମାଣ ଯାହାଠାରେ ଯେତେ ବେଶୀ ସେ ତେତେ ମହତ୍ତର ମନୁଷ୍ୟ । କବି ମାନସିଂହଙ୍କ ଭାଷାରେ—

"ସେହି ହିଁ ମନୁଷ୍ୟ,
ପୃଥ୍ୱୀ ବିବର୍ତ୍ତିତ ପ୍ରାଣୀ, ଧରାସ୍ଥ ଦେବତା,
ଯେ କରେ ଅନ୍ତଃସ୍ଥ ତମେ ଜୟ ନିଜାଲୋକେ
ପଶୁକୁ ସଂହାର କରି ଫୁଟାଏ ନରତ୍ୱ
ନିମ୍ନାତ୍ମାର ଭସ୍ମ ପରେ ଜଗାଏ ମହାତ୍ମା ।

× × ×

ଶରୀରକେନ୍ଦ୍ରିକ ଏହି ପଶୁସୁଖଲୋକୁଁ
ଉଠିବା ଆତ୍ମାର ଲୋକେ ସେହି ହିଁ ନରତ୍ୱ,
ସେହି ହିଁ ପରମ ଲକ୍ଷ୍ୟ ନରଜୀବନର ।"

ମନୁଷ୍ୟ ତାର ଗୌରବଗାନସନ୍ଧିକାରେ ମନୁଷ୍ୟ ପରି ବଞ୍ଚିବାର ପ୍ରଶସ୍ତ ସରଣୀ ପ୍ରଦର୍ଶନପୂର୍ବକ ମହତ୍ତମ ଲକ୍ଷ୍ୟସ୍ଥଳରେ ପହଞ୍ଚିବାପାଇଁ, ଯଥାଯୋଗ୍ୟ କର୍ମତତ୍ପର ହେବାପାଇଁ, ପବିତ୍ର ପ୍ରେରଣା ପ୍ରଦାନ କରିବାରେ ଯାହା ଯୋଗେ କ୍ଷମ ହୋଇଥାଏ ତାହା ହେଉଛି ସାହିତ୍ୟକର ଶ୍ରେଷ୍ଠ କୃତିତ୍ୱ । ସନାତନର ଚରିତ୍ର ଯେପରି ନରତ୍ୱର ଶ୍ରେଷ୍ଠ ଗୌରବ ପ୍ରଦର୍ଶକ ହୋଇଛି ତାର ସହଧର୍ମିଣୀ ସେହିପରି ଅତ୍ୟଳ୍ପ ସମୟ ପାଇଁ ପାଠକର ସମ୍ମୁଖରେ ଦେଖାଦେଇଥିଲେ ମଧ୍ୟ ପତିବ୍ରତା ନାରୀର ଶ୍ରେଷ୍ଠ ଧର୍ମ ପ୍ରଦର୍ଶନ କରି କବି-ଲେଖନୀର ସାର୍ଥକତା ପ୍ରତିପାଦନ କରୁଛି । ଯେଉଁ ଲେଖା ପାଠକର ଚିତ୍ତବୃତ୍ତିକୁ, ଭାବଜଗତକୁ ଜାଗ୍ରତ, ଉଦ୍‌ବୃଦ୍ଧ ତଥା ପ୍ରଦୀପ୍ତ କରିଥାଏ ତାହାର ସାର୍ଥକତା ଯଥେଷ୍ଟ । ଜୀବାନନ୍ଦ ଚରିତ୍ରରେ ଆମେ ଦେଖିବାକୁ ପାଉଁ ମନନଶୀଳତାର ମହନୀୟତା, ଜୀବଜଗତର କଲ୍ୟାଣ-କାମିତା । ଦୁର୍ଦ୍ଦଶାଗ୍ରସ୍ତ ଜୀବାତ୍ମାର ଦୁଃଖାପନୋଦନ ସକାଶେ ପ୍ରାଣପଣେ ଯତ୍ନ କରି ଦୁଃସ୍ଥ ପ୍ରାଣରେ ସେବାଶୁଶ୍ରୂଷା ମାଧ୍ୟମରେ ଆଶା, ଆଶ୍ୱାସନା ଓ ସୁଖର ଆଲୋକ ସଞ୍ଚାର କରାଇବାରେ ଯେଉଁ ଆନନ୍ଦ ତାହାହିଁ ଜୀବାନନ୍ଦର ସ୍ୱଭାବ ବା ଜୀବାନନ୍ଦଦର୍ଶନ । ଅନ୍ୟାର୍ଥରେ ତାହାହିଁ ଆଦର୍ଶ ନରଧର୍ମ ବା ଜୀବାତ୍ମାର ଧର୍ମ । ସମାଜର ଦୁଃଖ, ଦୈନ୍ୟ, ଦୁର୍ଦ୍ଦଶା, ଗ୍ଲାନି ଦୂର କରିବାକୁ କିଛି ପ୍ରତିକାର ନ କରି, ମୁକ୍ତି ପାଇଁ ସମାଜରୁ ଦୂରେଇଯାଇ ନିର୍ଜନ ବନରେ ତପସ୍ୟାରତ ହେବା କଣ ବାଞ୍ଛନୀୟ ? ଜୀବାନନ୍ଦର ବିବେକ ପୁରୁଷ ସ୍ପଷ୍ଟ ଭାବରେ ତେଣୁ ପ୍ରକାଶ କରିଛି—

"ଯେ ମୁକ୍ତି ସ୍ରୋତରେ ସ୍ୱାଭାବିକ ସ୍ନେହଧାରା
ମାନବ ମାନବ ମଧ୍ୟେ; ଢେଳିବାକୁ ଅଶ୍ରୁ
ଯେ ସାଧନା ନାହିଁ ଜାଣେ ଦୁଃଖେ ମାନବର,
କରୁଣାରେ ପୋଛିବାକୁ ଅବା ଧାନଗଣ୍ଡ,
ଯେ ତପସ୍ୟା ଦୁଃଖଦଗ୍ଧ ନରନାରୀସ୍ଥଳେ
ପିଠି କରି ପଳେ ବନେ, ଈଶ୍ୱର ସନ୍ଧାନେ
ବିଧାତାର ଦୃଶ୍ୟମାନ ବିରାଟ ସୃଷ୍ଟିରେ
ନ ଦେଖି ଯେ ଭଗବାନ ଖୋଜେ ବୁଜି ଆଖି
ନୁହେଁ ତା ନାହିଁ ଗୁରୁଦେବ ସେ ଧର୍ମ ମୋହର ।"

ସତ୍ୟଦ୍ରଷ୍ଟା କର୍ମଯୋଗୀ ବୈଦିକ ଋଷି ସର୍ବଂଖଳ୍ୱିଦଂ ବ୍ରହ୍ମ ବୋଲି ଘୋଷଣା କରିଥିଲେ ପରେ ଜୀବାନନ୍ଦର ଘୋଷଣା ହେଉଛି,

"ଊର୍ମି ସେ ସିନ୍ଧୁର ଅଂଶ, ଜୀବନମରଣ
ସୁଖ ଦୁଃଖ ହାସ୍ୟ ଅଶ୍ରୁ ସେ ଏକା ଈଶ୍ୱର
ନ ହେବ କିପରି କହ ? ସୃଷ୍ଟି ଆଉ ସ୍ରଷ୍ଟା
ଭିନ୍ନ ଭିନ୍ନ ହେବା ଖାଲି ନୈୟାୟିକ ଯୁକ୍ତି ।"

ଜୀବସେବାରେ ହିଁ ଆନନ୍ଦଲାଭ କରିବାରେ ମନୁଷ୍ୟତା ନିହିତ । ନ ସେବାନ୍ତୁ ପରମୋ ଧର୍ମଃ—ସେବାଠାରୁ ବଳି ଆଉ ପରମ ଧର୍ମ ନାହିଁ ବୋଲି ଧର୍ମଶାସ୍ତ୍ରର ମଧ ସିଦ୍ଧାନ୍ତ । ତେଣୁ ନିର୍ଦ୍ୱନ୍ଦ୍ୱ, ସ୍ଥିତଧୀ, ତତ୍ତ୍ୱଦର୍ଶୀ ଶିବାନନ୍ଦଙ୍କର ଜୀବାନନ୍ଦ ପ୍ରତି ନିର୍ଦ୍ଦେଶ—

"ଯାଅ ବତ୍ସ ଜୀବାନନ୍ଦ, କର ଜୀବସେବା,
ଦୁର୍ଭିକ୍ଷର ଦନ୍ତାଘାତୁ ଯାଇ ରକ୍ଷା କର
ପାର ଯେତେ ହତଭାଗ୍ୟ ଶିଶୁ ପୁତ୍ର କନ୍ୟା;
ଯାଅ ବତ୍ସ କର କର୍ମ, କର ପ୍ରତିଷ୍ଠିତ
ଆଲୋକର ଆନନ୍ଦର ନ୍ୟାୟର ବିଜୟ ।"

ଦୁଃସ୍ଥ ନିରନ୍ନ କ୍ଷୁଧାର୍ତ୍ତ ଜନତାର ସେବାରେ ନିଜକୁ ନିୟୋଜିତ କରିବା ହିଁ ଜୀବାନନ୍ଦର ସ୍ୱଧର୍ମ ।

ଅନନ୍ତ ରହସ୍ୟମୟ ଏ ବିଶ୍ୱ । ସତ୍‌-ଅସତ୍‌, ଆଲୋକଅନ୍ଧାର, ପାପପୁଣ୍ୟ, ସୁଖଦୁଃଖ, ଜନ୍ମମୃତ୍ୟୁ ଆଦି ବିପରୀତଧର୍ମୀ ଯୁଗ୍ମସମୂହ ଦ୍ୱାରା ଧରାଧରି ହୋଇ ରହିଛନ୍ତି

ଏବଂ ଧର୍ମସ୍ଥ ଜୀବସମୁଦାୟଙ୍କୁ ନିଜ ଅଧୀନସ୍ଥ କରି ହାଇଗଣ, ବ୍ୟତିବ୍ୟସ୍ତ କରୁଛନ୍ତି । ଏହି ଦ୍ୱନ୍ଦ୍ୱସମାହାର ହେଉଛି ଦାର୍ଶନିକ ଭାଷାରେ ମାୟା । ତାହା ପୁଣି ଦୁରତ୍ୟୟା । ବେଦାନ୍ତର ଭାଷାରେ ମାୟା ହେଉଛି ପ୍ରକୃତି ଓ ମାୟୀ ହେଉଛନ୍ତି ମହେଶ୍ୱର । ପ୍ରକୃତିବଶୀଭୂତ ମାନବ ଈଶ୍ୱର ଦର୍ଶନ କରି ନ ପାରେ, ତେଣୁ ଶାନ୍ତ୍ୟମୃତ ପାନ କରି ନ ପାରେ । ପ୍ରକୃତିଜୟୀ ଦ୍ୱନ୍ଦ୍ୱାତୀତ ବ୍ୟକ୍ତି ହିଁ ସୃଷ୍ଟିର ମୂଳାଧାର, ସତ୍ୟ-ଦର୍ଶନ ବା ଶିବଦର୍ଶନ କରି, ଆନନ୍ଦତନ୍ମୟ ହୁଅନ୍ତି ଓ ଶିବାନନ୍ଦ ପଦବୀ ଲାଭ କରିପାରନ୍ତି । ଦ୍ୱନ୍ଦ୍ୱବୀକ୍ଷବଦ୍ଧ ଜୀବାନନ୍ଦଙ୍କୁ ମାୟାମୁକ୍ତ ଶିବାନନ୍ଦ ତେଣୁ ସଦୁପଦେଶ ଦିଅନ୍ତି—

"ଊର୍ମି ଯେଉଁ ନୁହେ ସିନ୍ଧୁ, ଜୀବନ-ମୃତ୍ୟୁର
ଏ ଯେଉଁ ଲହରୀଲୀଳା ପ୍ରତି ମୁହୂର୍ତ୍ତିରେ
ଉଠୁଛି ପଡ଼ୁଛି ଜୀବ ମାନବ ସମାଜେ
ସେ ନୁହେଁ ଈଶ୍ୱର ; ନୁହେଁ ସୃଷ୍ଟି ପରିମାଧ ।
ଜୀବନ ମରଣ ପାରେ ମହା ଜୀବନର
ଯଦି ଗୃହ ପରିଚୟ, ଦୁର୍ଭିକ୍ଷ ସୁଭିକ୍ଷ
ଦୁଃଖସୁଖ, ଜନ୍ମମୃତ୍ୟୁ ଦାରିଦ୍ର୍ୟ ସୌଭାଗ୍ୟ
ଏ ସବୁ ବସ୍ତୁରୁ କରି ନିବୃତ୍ତ ନିରୁଛ
ସମର୍ପିତ ଚିତ୍ତ କର ସାଧନ ପନ୍ଥାରେ ।"

ମାୟାମୁକ୍ତ ନିର୍ଦ୍ୱନ୍ଦ୍ୱ ନ ହୋଇପାରିବା ପର୍ଯ୍ୟନ୍ତ ଦୁଃସ୍ଥଜନତାଜନାର୍ଦ୍ଦନର ସେବାରେ ରତ ହୋଇ ସମାଜକୁ ମହତ୍ତର, ସୁନ୍ଦରତର ଓ ମଧୁରତର କରିବାର ପ୍ରଚେଷ୍ଟା ବିଧେୟ । ତାହାହିଁ ସତ୍ୟଦର୍ଶନ ଓ ପରମାନନ୍ଦ ସନ୍ଧାନର ପ୍ରଥମ ସୋପାନ । ପୂର୍ଣ୍ଣପ୍ରାଣରେ ଉତ୍ସାହ ଓ ଧୈର୍ଯ୍ୟ ସହକାରେ ଜନସେବା କାର୍ଯ୍ୟରେ ରତ ହେବା ଫଳରେ ଦୁରତ୍ୟୟା ମାୟାର କରାଳ ଲୀଳା-ଜାତ ବୀଭତ୍ସ ଜୀବନ ରଙ୍ଗମଞ୍ଚର ପରପାର-ଜିଜ୍ଞାସା ସ୍ୱତଃ ଜାତ ହେବ ଏବଂ ତା' ଫଳରେ ଜୀବାନନ୍ଦ ଶିବାନନ୍ଦବାଣୀ ଶୁଣିପାରିବ ।

"ସେହି ଅନ୍ଧକାରେ, ସେହି ବୀଭତ୍ସ ସଂସାରେ
ଦେଖୁନା କି ଶତ ଶତ ଦୀପ୍ତ ଦୀପଶିଖା ?
ଦେଖୁନା କି ନରନ୍ଧର ମଧୁର ମହିମା ?
ସହସ୍ର ଏ ପଶୁଧର୍ମୀ ବୁଭୁକ୍ଷୁର ଦଳୁ
ଦେଖାପଡ଼େ ଯଦି କାହିଁ ଜଣେ ସନାତନ
ନରନ୍ଧର ମହିମାରେ ପରିମଣ୍ଡିତ ।
ସେହି ସେ ଜ୍ୱଳନ୍ତ ଦୀପ ଘୋର ଅନ୍ଧକାରେ

ଦେଖାଏ ମନୁଷ୍ୟ ଲକ୍ଷ୍ୟ, ଦୀର୍ଘ ଆବର୍ତ୍ତିରେ
ପଶୁତ୍ୱରୁ ଉଠିବାର ଊର୍ଦ୍ଧ୍ୱେ ସ୍ତରେ ସ୍ତରେ ।

× × ×

ଦେଖିବାକୁ ଚେଷ୍ଟା କର ବତ୍ସ ସବୁବେଳେ
ସୃଷ୍ଟିରେ ସମଗ୍ରଭାବେ । ସମଗ୍ର ଏ ସୃଷ୍ଟି
ଜଡ଼ ଜୀବ ଉଦ୍‌ଭିଦର ଏ ମହା ସଂଘଟ
ସଞ୍ଚାଳିତ ଓତପ୍ରୋତ ଏକ ହିଁ ନିୟମେ ।
କ୍ଷୁଦ୍ରର ପୀଡ଼ାରୁ ଆସେ ଦୁଃଖ ବିରାଟର ।
ସେହି ସେ ବିରାଟ ପିତା, ବିଧାତା ସୃଷ୍ଟିରେ
ସମସ୍ତେ ସନ୍ତତି ଯାର—ଜଡ଼ ବୃକ୍ଷ ଜୀବ
ଯେ କେବଳ ଦେଖୁଛନ୍ତି ସୃଷ୍ଟିରେ ସମଗ୍ରେ
ସ୍ନେହଶୀଳ ପିତା ସମ ସେହି ସେ ଜାଣନ୍ତି
ସୁଖଦୁଃଖ ଗ୍ରନ୍ଥିମାଳେର ପ୍ରକୃତ ରହସ୍ୟ
ଧର୍ମ, ବ୍ୟକ୍ତି ଜନତାର କେଉଁ କାଳେ ସ୍ଥାନେ
କିପାଇଁ ବା ଦୁଃଖ ସୁଖ ହୁଏ ଆଗଯାତ
ତାହାର ଗୋପନ ମର୍ମ ସେହି ସେ ଜାଣନ୍ତି ।''

ପ୍ରବୃତ୍ତିପ୍ରଣୋଦିତ ସ୍ୱାର୍ଥପର ଜୀବ, ସ୍ୱଭାବରେ ନିଜର ସତ୍ତା ନ ହରାଇ ଅନାଦ୍ୟନ୍ତ-ଶାଶ୍ୱତ ଚିରନ୍ତନ ପରମାତ୍ମତତ୍ତ୍ୱ ସ୍ମୃତିପଟରେ ଅଙ୍କିତ କରି କର୍ତ୍ତ୍ୟାକର୍ତ୍ତ୍ୟ ବିବେକବୁଦ୍ଧି ସହକାରେ ସନାତନସଦ୍‌ଗୁଣ ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ କର୍ତ୍ତବ୍ୟନିଷ୍ଠ ଧର୍ମପରାୟଣ ନିଷ୍କଳୁଷ ସମୁଦାର ଜୀବନଯାପନ କରିବା ହିଁ ଶ୍ରେୟସ୍କର । ସେହିପରି ଜୀବନ ନାଶପ୍ରାପ୍ତ ହେଲେ ମଧ୍ୟ ମୃତ୍ୟୁଞ୍ଜୟ, ସନାତନ । ତା'ର ସ୍ମୃତି ଅବିସ୍ମରଣୀୟ, କୀର୍ତ୍ତି ଅବିନଶ୍ୱର ।

ମୋଟ ଉପରେ ଦୁର୍ଭିକ୍ଷ ନାଟକଟି, ଭାବ, ଭାଷା, ଶୈଳୀ, ଚରିତ୍ରଚିତ୍ରଣ ପ୍ରଭୃତି ସବୁ ଦିଗରୁ ସ୍ୱକୀୟ ଚମତ୍କାରିତା ଗୁଣରେ କବିଧର୍ମର ମାନବର୍ଦ୍ଧନପୂର୍ବକ କବିଲେଖନୀର ସିଦ୍ଧିସାଧକତା ହିଁ ପ୍ରତିପାଦନ କରୁଛନ୍ତି । ଅଲମତିବିସ୍ତରେଣ 'ଦୁର୍ଭିକ୍ଷ' ଏକ ସାର୍ଥକ ସୃଷ୍ଟି ।



# ‘ମାନସିଂହ-ସାହିତ୍ୟ’ର ଏକ ଅନାଲୋଚିତ ଦିଗ

## ( ଶିଶୁ ସାହିତ୍ୟ )

ମନୀନ୍ଦ୍ର ମହାନ୍ତି

---

**ଆଦ୍ୟ କଥନୀ :**

ଆକାଶରୁ ଯେଉଁ ଜଳ ବର୍ଷେ, ତାହା କେବଳ ଗୋଟିଏ ନଦୀରେ ପରିଣତ ହୋଇ ସମୁଦ୍ରରେ ମିଶେ ନାହିଁ, ବହୁ ଶାଖା-ପ୍ରଶାଖାରେ ବିଭକ୍ତ ହୋଇ ମୁହାଣଠାରେ ସମୁଦ୍ରରେ ଲୀନ ହୋଇଯାଏ ମଧ୍ୟ । ଗୋଟିଏ ନଦୀର ଶାଖାନଦୀ ମଧ୍ୟ ମୂଳ ନଦୀଠାରୁ ବହୁଗୁଣରେ ପୃଥକ ହୋଇପାରେ । ଏହି ପାର୍ଥକ୍ୟ ପରିଦୃଷ୍ଟ ହୁଏ ତା’ର ଗତିପଥର ଦିଗରେ, ଆକାରରେ ଏବଂ ଗଭୀରତାରେ । ସେହିପରି ପଦ୍ମଶ୍ରୀ ଉତ୍କଳର ମାୟାଧର ମାନସିଂହଙ୍କ ସାହିତ୍ୟର ନଦୀ କେବଳ ଏକମୁଖୀ ନୁହେଁ, ଅଧିକନ୍ତୁ ଏହା ଶତଧାରରେ ବିଭକ୍ତ ହୋଇ ଶାଖାପ୍ରଶାଖା ରୂପରେ ସେହି ‘ମାନସିଂହ-ପ୍ରତିଭା-ପାରାବାର’ର ମୁହାଣରେ ନିପତିତ ହୋଇଅଛି । ଯେପରି ନଦୀର ଶାଖାନଦୀକୁ ଉପେକ୍ଷା କରିହୁଏନା, ସେହିପରି ମାନସିଂହଙ୍କ ସାହିତ୍ୟର କୌଣସି ଏକ ଗୌଣ ବିଭାବକୁ ବାଦ୍ ଦେଇଦେଲେ ତାଙ୍କ କବିପ୍ରତିଭାର ପୂର୍ଣ୍ଣାଙ୍ଗ ଅଧ୍ୟୟନ ହୋଇପାରିବ ନାହିଁ । ତାଙ୍କ ସାହିତ୍ୟର ସେହି ଗୌଣବୈଭବ ମଧ୍ୟରୁ କେବଳ ଗୋଟିକର ଆଲୋଚନା ଏହି ପ୍ରବନ୍ଧର ଲକ୍ଷ୍ୟ ।

କବି ମାନସିଂହଙ୍କ ଗ୍ରନ୍ଥାବଳୀ ( ପ୍ରଥମ ଖଣ୍ଡ ) ରେ ‘ଶିଶୁ-କବିତା’ଗୁଡ଼ିକୁ “କିଶୋର କବିତା” ଶୀର୍ଷକରେ ସନ୍ନିବେଶିତ କରାଯାଇଛି । ଏହି ଆଲୋଚକ ‘ଶିଶୁ-ସାହିତ୍ୟ’କୁ ବିସ୍ତୀର୍ଣ୍ଣ ଅର୍ଥରେ ଗ୍ରହଣ କରୁଥିବାରୁ ଉକ୍ତ ‘କିଶୋର-କବିତା’-ଗୁଡ଼ିକ ଏହି ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହୋଇଯାଉଛି । ଶିଶୁର ବୟସ ଓ ଗ୍ରାହିକାଶକ୍ତି ଉପରେ ତା’ର ସାହିତ୍ୟ ନିର୍ଭର କରେ । ଅର୍ଥାତ୍, ଶିଶୁର ମାନସିକ ବିକାଶ ( Child Development ) କଥା ଏଠାରେ ଆସିଯାଉଛି । ମନୋବିଜ୍ଞାନର

ବୈଜ୍ଞାନିକମାନେ ଶିଶୁ ( Child ) ମାନସିକ ସ୍ତରକୁ ଚାରୋଟି ପର୍ଯ୍ୟାୟରେ ବିଭକ୍ତ କରନ୍ତି (୧) ଯଥା—

(୧) ଶୈଶବ (Infant)—ଜୀବନର ପ୍ରଥମ ଦୁଇବର୍ଷ

(୨) ପ୍ରାକ୍-ବିଦ୍ୟାଳୟ ଶିଶୁ (Pre-School Child)—ଦୁଇରୁ ଛଅ ବର୍ଷ ପର୍ଯ୍ୟନ୍ତ

(୩) ମଧ୍ୟବର୍ତ୍ତୀ ବିଦ୍ୟାଳୟ ଶିଶୁ ( Intermediate-School Child )—୯ ବର୍ଷଠାରୁ ୧୨ ବର୍ଷ ବୟସ ପର୍ଯ୍ୟନ୍ତ

(୪) ନିମ୍ନ-ଉଚ୍ଚବିଦ୍ୟାଳୟ ଶିଶୁ ( Junior High School Child )—୧୨ ବର୍ଷରୁ ୧୫ ବର୍ଷ ପର୍ଯ୍ୟନ୍ତ

ସୁତରାଂ କବିଙ୍କ ନାମିତ 'କିଶୋର କବିତା'କୁ 'ଶିଶୁ-କବିତା' ପର୍ଯ୍ୟାୟରେ ଗ୍ରହଣ କଲେ କିଛି ଅସୁବିଧା ହେଉନାହିଁ ।

ଶିଶୁ-ସାହିତ୍ୟ କହିଲେ ଶିଶୁଙ୍କ ପାଇଁ ରଚିତ ବୟସ୍କଙ୍କ ରଚନା ବା ଶିଶୁର ରଚନାକୁ ବୁଝାଇଥାଏ । ମାତ୍ର ପ୍ରଥମ ମତଟି ଅଧିକ ଯୁକ୍ତିସଂଗତ ବୋଲି ସମୀକ୍ଷକମାନେ ମତ ପ୍ରକାଶ କରିଥାନ୍ତି (୨) । ଶିଶୁ କବିତା ଏହି 'ଶିଶୁ-ସାହିତ୍ୟ'ର ଏକ ବିଭାଗ ହୋଇଥିବାରୁ ଉପରୋକ୍ତ ନିୟମାନୁଯାୟୀ ଗ୍ରନ୍ଥାବଳୀରେ ସନ୍ନିବେଶିତ 'କିଶୋର କବିତା' ପର୍ଯ୍ୟାୟର ପ୍ରଥମ କବିତା 'ଶିଶୁ ଦେବତା' କବିତାଟି ଏହି ପର୍ଯ୍ୟାୟ ମଧ୍ୟରେ ବର୍ଜିତ କରାଯାଇ ନ ପାରେ । ଅର୍ଥାତ୍ ବାକି ଅଠେଇଶ କବିତାକୁ କେନ୍ଦ୍ରକରି ଏହି ପ୍ରବନ୍ଧର ସୌଧ ନିର୍ମିତ ।

## ରଚନାର ଉଦ୍ଦେଶ୍ୟ

'ଓଡ଼ିଆ ଶିଶୁ-ସାହିତ୍ୟ' (ଲିଖିତ)ର ଇତିହାସ ପ୍ରତି ସିଂହାବଲୋକନ କଲେ ପାଠକ ଜାଣିପାରିବେ ଯେ ଏହି ବିଗରେ ଶ୍ରେଣୀର 'ପାଠ୍ୟପୁସ୍ତକ' ର

---

(୧) Child Psychology—George G. Thompson. Chapter I 'Theories in child psychology'—Page 3.

(୨) (କ) ଅଶ୍ଳୀଳତା ବିପକ୍ଷରେ ଓ ଅନ୍ୟାନ୍ୟ ପ୍ରବନ୍ଧ—ଡ: କୃଷ୍ଣଚରଣ ବେହେରା—ଏବର ଶିଶୁ-ସାହିତ୍ୟ—ପୃ: ୩୪ ।

(ଖ) ଆଧୁନିକ ଓଡ଼ିଆ ଶିଶୁ-ସାହିତ୍ୟ—ଡ: ଜାନକୀବଲ୍ଲଭ ମହାନ୍ତି—୧ମ ସଂସ୍କରଣ—ଓଡ଼ିଆ ଶିଶୁ ସାହିତ୍ୟ—ପୃ : ୧୮୬ ।

ଭୂମିକା ନପଶ ଗୁରୁତ୍ୱପୂର୍ଣ୍ଣ । ପ୍ରକୃତରେ ଦେଖିବାକୁ ଗଲେ, ଏବର 'ଓଡ଼ିଆ ଶିଶୁ-ସାହିତ୍ୟ' ର ଯେଉଁ ଏକ ସ୍ୱତନ୍ତ୍ର ବିଭାବ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ସୃଷ୍ଟି ହୋଇଛି ଏହାର ପ୍ରାଣ ପ୍ରତିଷ୍ଠା ମୂଳରେ ନିହିତ୍ରୁ ଶ୍ରେଣୀରେ ପଢ଼ିବା ନିମିତ୍ତ ପାଠ୍ୟ ପୁସ୍ତକ (୩) । କବି ମାନସିଂହ ମଧ୍ୟ ତଦନୁରୂପ ଶିଶୁମାନଙ୍କ ପାଇଁ ପାଠ୍ୟ ପୁସ୍ତକ ରଚନା କରିଥିଲେ ଏବଂ ତାହାହିଁ ଓଡ଼ିଆ ଶିଶୁସାହିତ୍ୟ ପ୍ରତି ତାଙ୍କର ଅବଦାନ । ତାଙ୍କର ବିଭିନ୍ନ ପାଠ୍ୟପୁସ୍ତକରେ ସ୍ଥାନ ପାଇଥିବା କବିତାଗୁଡ଼ିକ ଉକ୍ତ ଗ୍ରନ୍ଥାବଳୀ ରେ 'କିଶୋରକବିତା' ଶୀର୍ଷକରେ ଗ୍ରନ୍ଥନ କରାଯାଇଛି (୪) । ତାଙ୍କର ଏହି ପାଠ୍ୟପୁସ୍ତକ ରଚନା କରିବାର ଉଦ୍ଦେଶ୍ୟ ଥିଲା—"ଏକ ଆଦର୍ଶ ପୁସ୍ତକମାଳା ରଚନା କରିବା" (୫) । କିନ୍ତୁ ଏ ସୂକ୍ଷ୍ମ ଦୃଷ୍ଟି କୋଣରୁ ନିରୀକ୍ଷଣ କଲେ ଜଣାଯିବ ଯେ କବି ମାଟ୍ରିକ ପରୀକ୍ଷା ଦେବାଠାରୁ ଆଦର୍ଶ ଶିକ୍ଷକ ହେବାକୁ ତାଙ୍କର ଯେଉଁ ପବିତ୍ର, ଦୃଢ଼ ଆକାଙ୍କ୍ଷା ନିହିତଥିଲା, ତାହା ବରାବର ତାଙ୍କ କର୍ମମୟ

---

(୩) ଝଙ୍କାର—୨୨ଶ ବର୍ଷ —୧ମ ସଂଖ୍ୟା/ଏପ୍ରିଲ—୧୯୭୦—ପ୍ରଥମ ଯୁଗର ଓଡ଼ିଆ ପାଠ୍ୟପୁସ୍ତକ—ଡ: ନଟବର ସାମନ୍ତରାୟ । ପୃ: ୯୮ ।

(୪) "...'କିଶୋର କବିତା' ର କବିତାଗୁଡ଼ିକ ଲେଖକଙ୍କ ପ୍ରଣୀତ ପାଠ୍ୟପୁସ୍ତକ ମାନଙ୍କରେ ସ୍ଥାନ ପାଇଥିଲା ।" ମାନସିଂହ ଗ୍ରନ୍ଥାବଳୀ (୧ମ ଖଣ୍ଡ) —'ପ୍ରକାଶକର ସୂଚନା'—

(୫) (କ) "ଲେଖକ ଶିକ୍ଷକ ଥିଲା କାଳରେ ଓଡ଼ିଆ ସାହିତ୍ୟରେ ଏକ ଆଦର୍ଶ ପାଠ୍ୟପୁସ୍ତକମାଳା ରଚନା କରିବାର ଚେଷ୍ଟା କରିଥିଲେ ।" —ମାନସିଂହ ଗ୍ରନ୍ଥାବଳୀ—(୧ମ ଖଣ୍ଡ)—ସୂଚନା—ପୃ : ୬୪୧—ଲେଖକ ।

(ଖ) "ମଧୁବାବୁଙ୍କ ମର୍ଯ୍ୟାଦାବନ୍ତ ସାହିତ୍ୟ ପୁସ୍ତକ ସବୁ କୁଟଚକ୍ର ଫଳରେ ସ୍କୁଲମାନଙ୍କରୁ ଉଠାଇଦେଇ, ନାନା ଇତର ଲୋକର ତୃତୀୟ ଶ୍ରେଣୀର କିତାପ 'ସାହିତ୍ୟ' ନାମରେ ସେତେବେଳକୁ ଓଡ଼ିଶାର ସ୍କୁଲ ମାନଙ୍କରେ ପଶି ସାରିଲାଣି ।.........ତେଣୁ ସେତେବେଳେ ତଳୁ ମାଟ୍ରିକୁଲେସନ୍ ଯାଏଁ ଗୋଟିଏ ପୂର୍ବାପର ସମ୍ପର୍କଯୁକ୍ତ ଆନୁକ୍ରମିକ ସାହିତ୍ୟ-ପାଠମାଳା ଲେଖିବାର ଯୋଜନାକୁ ମଧ୍ୟ ମୋର ଶିକ୍ଷକତ୍ୱର କର୍ତ୍ତବ୍ୟ ଭିତରେ ନେଇଥିଲି ।" —ଶିକ୍ଷାବିତ୍ତର ଗାଥା - (ଷଷ୍ଠ ଅଧ୍ୟାୟ) —ପୃ : ୬୮—ଡ : ମାୟାଧର ମାନସିଂହ ।

ଜୀବନରେ ନିର୍ବିଘ୍ନରେ କାର୍ଯ୍ୟ କରିଚାଲିଛନ୍ତି (୭) । ଅତଏବ୍, ସହଜ କଥାରେ—ତାଙ୍କର ଆଲୋଚ୍ୟ 'ଶିଶୁ-କବିତା' ରଚନା କରିବା ମୂଳରେ ତାଙ୍କର ଶିକ୍ଷକ-ପ୍ରାଣତା ଯେ ବହୁ ପରିମାଣରେ ଦାୟୀ, ଏହା ସୁସ୍ପଷ୍ଟ । ସୁତରାଂ ମନେରଖିବାକୁ ହେବ ଯେ କବି ମାନସିଂହ ଏଠାରେ ପ୍ରଥମେ 'ଶିକ୍ଷକ' ଓ ତା'ପରେ 'ଶିଶୁ-ସାହିତ୍ୟିକ' ।

## ଶିଶୁ-ସାହିତ୍ୟ ଦୃଷ୍ଟିରୁ ମାନସିଂହଙ୍କ ଶିଶୁକବିତାର ମୂଲ୍ୟାୟନ

ଶିଶୁ-ସାହିତ୍ୟର ପୃଷ୍ଠଭୂମି ହେଲା, ବୟସ ଓ ଗ୍ରାହିକାଶକ୍ତି ପାଖରେ ଶିଶୁର ବିଭିନ୍ନ ମାନସିକ ସ୍ତର । ଶିଶୁର ଏହି ବିଭିନ୍ନ ମାନସିକ ସ୍ତର ପରିସର ମଧ୍ୟରେ ତା'ର କଳ୍ପନା, ଆକାଙ୍‌କ୍ଷା, ବିଶ୍ୱାସ ଆଦିକୁ କେନ୍ଦ୍ର କରି ଶିଶୁସାହିତ୍ୟର ସୃଷ୍ଟି ଓ ପରିଣତି । ଏହି ଶିଶୁ ସାହିତ୍ୟ ଦୃଷ୍ଟିରୁ ମାନସିଂହଙ୍କ ଶିଶୁକବିତାଗୁଡ଼ିକର ମୂଲ୍ୟାୟନ କରାଯାଇପାରେ ।

## ଶିଶୁ କଳ୍ପନା

ଶିଶୁ-ସାହିତ୍ୟ କ୍ଷେତ୍ରରେ ଶିଶୁର 'କଳ୍ପନା'ହିଁ ତା'ର ଆତ୍ମା । କଳ୍ପନା ବିନା ଶିଶୁସାହିତ୍ୟ ବିକଳାଙ୍ଗ ହୋଇପଡ଼େ । ଏହି ବୟସରେ ଶିଶୁ ମନରେ ଡେଣା ଲାଗେ । ତା' ଆଖିରେ ମେଞ୍ଚା ମେଞ୍ଚା ଆକାଶୀକଳ୍ପନା ଲେସିହୋଇଯାଏ । କେତେକ ସମୀକ୍ଷକଙ୍କ ମତରେ ଶିଶୁମାନଙ୍କର ଏହି କଳ୍ପନାକୁ ତାଙ୍କ ମନଜଗତରେ ସର୍ବଦା ଉଜ୍ଜୀବିତ କରି ରଖିବା ହିଁ ଶିଶୁସାହିତ୍ୟର ମୁଖ୍ୟ ଉଦ୍ଦେଶ୍ୟ । କାରଣ ଆଜିର ହା-ହୁତାଶ ଦୁନିଆରେ ଶିଶୁ ଯଦି ଏବେଠୁଁ ହତୋତ୍ସାହ ହୋଇପଡ଼େ, ତେବେ ତା'ର ଜୀବନକୁ ଗଢ଼ିବାପାଇଁ ଆବଶ୍ୟକୀୟ ଉତ୍ସାହ ଲାଭ କରିପାରିବ ନାହିଁ । ମନୋବୈଜ୍ଞାନିକମାନେ ପରୀକ୍ଷା କରି ଦେଖିଲେଣି ଯେ ୩ରୁ ୧୦ ବର୍ଷ ମଧ୍ୟରେ

---

(୭) "ଏବେ ମନେ ପଡ଼ୁଛି, ଦିନେ ସେହି ଟୋଲ (ଖୋର୍ଦ୍ଧା ହାଇସ୍କୁଲ ସଂଲଗ୍ନ ସଂସ୍କୃତ ଟୋଲ୍) ମେସରେ ଥିବା କେତେକ ପିଲାଙ୍କ ଭିତରେ ପ୍ରତ୍ୟେକର ଭବିଷ୍ୟତ 'ଆମ୍ବିସନ୍' ବା ଉଚ୍ଚାଭିଳାଷର ଆଲୋଚନା ହେଲା । ···ସବାଶେଷରେ ମତେ ଯେତେବେଳେ ପଚାରିଗଲା ମୋର ଅଭିଳାଷ କଥା, ମୁଁ ଏମିତି କହିଥିଲି—'ଯଦି ମୁଁ କୌଣସିମତେ ମାଟ୍ରିକ୍ ପରୀକ୍ଷାଟା ପାସ୍ କରିପାରେ, ତେବେ ମୁଁ କୌଣସି ସ୍କୁଲରେ ଶିକ୍ଷକତା କରିବି ।'—ଶିକ୍ଷାବିତ୍ତର ଗାଥା—ଡ : ମାୟାଧର ମାନସିଂହ— (୧ମ ଅଧ୍ୟାୟ—ପୃ : ୧)

ଶିଶୁର କଳ୍ପନାଶକ୍ତି ପ୍ରବଳ ଥାଏ (୭) । ମାନସିଂହଙ୍କ ଉକ୍ତ କବିତାଗୁଚ୍ଛରେ 'ଗାଉଁର ସ୍ୱପ୍ନ' କବିତାଟିରେ ଏହାର ସ୍ୱାକ୍ଷର ସ୍ପଷ୍ଟଭାବରେ ରହିଛି । ଶିଶୁର ସ୍ୱପ୍ନ ମଧ୍ୟରେ ତା'ର କଳ୍ପନାର ରୂପ ଫୁଟି ଫୁଟି ଆସିଛି । କାରଣ ଶିଶୁମାନଙ୍କୁ ଅଧ୍ୟୟନ କରି ସମୀକ୍ଷକମାନେ ମତ ପ୍ରକାଶ କରି କହିଛନ୍ତି ଯେ ଶିଶୁର ଆଶା, କଳ୍ପନା ତା'ର ସ୍ୱପ୍ନରେ ହିଁ ପ୍ରତିଫଳିତ ହୁଏ ବା ପରିଣତ ହୁଏ (୮) । ହାତୀ ପିଠିରେ ଚଢ଼ିବା, ରଜାପୋଷାକ ପିନ୍ଧିବା, ରେଶମି ମାଛ, ହଂସ, ତାରା, ମେଘ ଓ ଶଶୀର ଆମନ୍ତ୍ରଣ ଶିଶୁର ମନକୁ ଆକାଶରେ ଉଡ଼େଇ ନେଇଛି । ଦୁନିଆର ବିଭିନ୍ନ ସ୍ଥାନରେ ବୁଲିବାର ଏହି ଇଚ୍ଛା ତା'ର ପ୍ରତିଫଳିତ ହୋଇଛି ଏହି ସ୍ୱପ୍ନରେ । ସେ କଳ୍ପନା କରି-ନେଇଛି—ହାତୀ, ରେଶମିମାଛ ଆଦି ଉପରେ ଚଢ଼ି, ରଜାପୋଷାକ ପିନ୍ଧି ଦେଶବିଦେଶରେ ବୁଲିଛି :—

"ଦେଖିଲି ସପନେ ଆମ ଘରକଣେ
ବସିଛି ମୁଁ ଅପା ସାଥି,
ଏକାଳେ ଅଇଲା, କେଉଁଠି ସେ ଥିଲା
ଦନ୍ତାବଳ ଏକ ହାତୀ;
କହିଲା ସେ ହାତୀ 'ଚଢ଼ ମୋର ପିଠି
ନେଇଯିବି ଆନ ଦେଶ,
ଦେଖିବ ଆଖିରେ ନ ଦେଖିଲା କଥା
ପିନ୍ଧିବ ରଜାର ବେଶ' ।" (ପୃ. ୭୭୭)

---

(୭) "An especially interesting form of imagery in childhood is the 'imaginary companion.' This phenomenon, if it appears at all, is likely to occur sometime between the ages of three and ten years···"—Child Psychology—Arthur T. Jersild—5th Edition—(P. 341)

(୮) "Similarly, wishes and desires seem to appear more openly in the dream of young children"—(P. 346)

"The desires that are gratified in his dreams are his own desires"—(P 347)—Child Psychology—Arthur T. Jersild—5th Edition.

ଶିଶୁର ଅତୃପ୍ତ ଇଚ୍ଛା ତା'ର କଳ୍ପନା ମାଧ୍ୟମରେ ପରିପୂର୍ଣ୍ଣ ହୋଇଥାଏ (୧) । ଶିଶୁ ସବୁବେଳେ ଶକ୍ତିଶାଳୀ ବା ବିଜୟୀ ବୀର ହେବାକୁ ଚାହେଁ । ସବୁକାର୍ଯ୍ୟରେ ସେ ତା'ର ବିଜୟ ଗୌରବର ଦକ୍ଷତା ପ୍ରଦର୍ଶନ କରିବାକୁ ଚାହେଁ । ତେଣୁ ଶିଶୁ ଅବସ୍ଥାରେ ତା ମନରେ 'ପ୍ରତିଯୋଗିତା' କଥାଟି ଏକ ଦୃଢ଼ ଆସନ ଗ୍ରହଣ କରିନେଇଥାଏ । ମାତ୍ର ଶାରୀରିକ ଶକ୍ତିର କ୍ଷୀଣତା ହେତୁ ନିଜକୁ ସେହିପରି ( ନିଜର ଇଚ୍ଛା ତୁଳନାରେ ) ଶକ୍ତିଶାଳୀ ବୋଲି ପରିଚୟ ଦେଇପାରେ ନାହିଁ ବାସ୍ତବ କ୍ଷେତ୍ରରେ । ସୁତରାଂ ତା'ର କଳ୍ପନାର ଡେଣା ଫଡ଼୍‌ଫାଡ଼୍ ହୋଇ ମେଲିଯାଏ । ତା'ର ମନଆକାଶରେ ଏବଂ ତା'ର ଏହି ଅତୃପ୍ତ ଇଚ୍ଛାକୁ ପ୍ରତିପ୍ରାଦିତ କରିବସେ ତା'ର କୋମଳ ଚିତ୍ତାକର୍ଷକ କଳ୍ପନାରେ—

"ଅଗ୍ନାଇଗିନ୍ନ ବନସ୍ତରେ ବୁଢ଼ୀ ରାକ୍ଷସୁଣୀ
ଲୁଚ୍ଚିଇଛୁ ରଜାଝିଅ କରି ମନ୍ତ୍ର ଗୁଣି
ଯାଇ ପଶି ବନସ୍ତରେ,
ଉଦ୍ଧାରିବି ଜେମା ମାରି ରାକ୍ଷସୀ ଏ କରେ ।"

( ଲଢ଼ିବି—ପୃ. ୬୫୧ )

## ସର୍ବପ୍ରାଣବାଦ

ଶିଶୁର କୋମଳମତି କଳ୍ପନାରେ 'ସର୍ବପ୍ରାଣବାଦ' ( Animism ) ଏକ ଦିଗ ମାତ୍ର । ଶିଶୁ ମନେକରେ, ତା'ର ଯେପରି ଜୀବନ ଅଛି, ସମସ୍ତଙ୍କର ସେହିପରି ଜୀବନ ଅଛି ଓ ସମସ୍ତେ ତା'ରି ପରି ଚଳବୁଲ କରନ୍ତି, ଖାଆନ୍ତି, ଖେଳନ୍ତି ଇତ୍ୟାଦି । ତେଣୁ ସେ ସଜୀବ ଓ ନିର୍ଜୀବ ମଧ୍ୟରେ କୌଣସି ପାର୍ଥକ୍ୟ ଜାଣିପାରେ ନାହିଁ । ଏହାକୁ ମନୋବିଜ୍ଞାନ ଶାସ୍ତ୍ରରେ 'ସର୍ବପ୍ରାଣବାଦ' ବା 'Animism' ବୋଲି କୁହାଯାଏ । ଏ ଦୃଷ୍ଟିରୁ ମାନସିଂହଙ୍କ ଶିଶୁକବିତାକୁ ନିରୀକ୍ଷଣ କଲେ ତା'ର ସନ୍ଧାନ ମିଳିଥାଏ । ଏ ପ୍ରସଙ୍ଗରେ ତାଙ୍କର 'ରେଳଗାଡ଼ି' କବିତାଟି ଦୃଷ୍ଟାନ୍ତଯୋଗ୍ୟ । ଶିଶୁର ମନଜଗତରେ ରେଳଗାଡ଼ି ଏକ ରାକ୍ଷସ । ସେ ଚାଲିଲାବେଳେ ମାଟି 'ଭସ୍‌ଭସ୍' କରି ଥରିଉଠେ । ଏହାର ବଡ଼ ପେଟରେ ଶହ ଶହ ଲୋକ ପୂରିଇଥାଏ—

"ଧାଇଁ ଧାଇଁ ରାକ୍ଷସକୁ ଲାଗେ ବଡ଼ ଶୋଷ,
ଷ୍ଟେସନରେ ପିଇବସେ କରି ମନ ତୋଷ ।
ପିଇବସେ ପାଣି ଆଉ ଖାଇବ କୋଇଲି,
ଓହ୍ଲେଇବେ ଯାତ୍ରୀ ସବୁ ଧରଣ ଗଣ୍ଠିଲି ।

(୧) Child Psychology—Arthur T. Jersild—(P. 334)

ହାଲୁଆ ଖାଇଣ ପୁଣି ଦଉଡ଼ିବ ରେଲ,
ଯିବା ଆସିବାରେ ତା'ର, ଥାଏ ଠିକ୍ ବେଳ ।"

( ପୃ. ୬୮ )

ରେଲଗାଡ଼ି ନିର୍ଜୀବ ହେଲେ ମଧ୍ୟ, ଯନ୍ତ୍ରଚାଳିତ ଯାନ ହେଲେ ମଧ୍ୟ ଶିଶୁଚକ୍ଷୁରେ ସେ ସଜୀବ—ରାକ୍ଷସ । ତାକୁ ( ଶିଶୁକୁ ) ଭୋକ ଶୋଷ ଲାଗିଲା ପରି ସେହି ରାକ୍ଷସକୁ ମଧ୍ୟ ଭୋକ ଶୋଷ ଲାଗେ ।

## ସହଜରେ ବିଶ୍ୱାସ

ଶିଶୁର କଳ୍ପନାଶକ୍ତିର ପ୍ରଖରତା ହେତୁ ସେ ସବୁକୁ ସହଜରେ ବିଶ୍ୱାସ କରିଯାଏ । ଯୁକ୍ତିର ଡୋର ତାକୁ ବାନ୍ଧି ରଖିପାରେନା । ଯିଏ ଯାହା ଶୁଣେ ବା ଦେଖେ ତାହା ସତ୍ୟ ବୋଲି ତା ମନରେ ସଙ୍ଗେ ସଙ୍ଗେ ପ୍ରତିଷ୍ଠିତ ହୋଇଯାଏ । ଏହାକୁ ଶିଶୁ ମନୋବିଜ୍ଞାନଶାସ୍ତ୍ରରେ "To make believe" ବୋଲିଯାଇ-ଥାଏ । ତେଣୁ ସବୁ ଅସମ୍ଭବତାକୁ ସମ୍ଭବ ପର୍ଯ୍ୟାୟରେ ଗ୍ରହଣ କରିନିଏ । ଅତଏବ ମଣିଷର କ୍ରିୟାକଳାପକୁ ପଶୁପକ୍ଷୀମାନଙ୍କ ଉପରେ ଆରୋପିତ କରିଦିଏ । ତା ପକ୍ଷରେ ପଶୁପକ୍ଷୀ କଥାବାର୍ତ୍ତା କରିପାରନ୍ତି—ଇତ୍ୟାଦି । ତେଣୁ ରାମଚନ୍ଦ୍ରଙ୍କର ଲଙ୍କାକୁ ସେତୁବନ୍ଧ ନିର୍ମାଣ ସମୟରେ ଗୁଣ୍ଡୁଚିମୂଷା ଯଥାଶକ୍ତି ସାହାଯ୍ୟ କରିଛି ଏବଂ ଶ୍ରୀରାମଚନ୍ଦ୍ରଙ୍କଠାରୁ ମଧ୍ୟ ପାଦଧୂଳି ନେଇ ଆଶିଷ ଭିକ୍ଷା କରିଛି :

"ଶ୍ରେଷ୍ଠ ସେ ଗୁଣ୍ଡୁଚି ମୁଖ ନୋଇଁ ଲାଜେ
କହିଲା ବନସ୍ଥ ଗୁଣ୍ଡେ,
'ମହାଭାଗ, ମୋତେ ଧନ୍ୟ କର, ଦେଇ
ଶ୍ରୀପଦଧୂଳି ମୋ ମୁଣ୍ଡେ ।
ତୁମୁଙ୍କର ସେବା କରି ହେଉଛନ୍ତି
ପବିତ୍ର ଜଗତ ଜନେ,
ମୁଁ କି ତୁମୁଙ୍କର ସେବା ନ ପାରିବି
କରି ? ଭାବିଲି ମୁଁ ମନେ !
× × ×
ଶ୍ରେଷ୍ଠ ଦେହ ମୋର ଯାହା ମୁଁ ପାରିବି
ତା ଯେଣି ତୁମୁଙ୍କ ସେବା
କରିବି ବୋଲି ମୁଁ ବାହାରି କରୁଛି
ବନ୍ଧେ ଏ ବାଲି ଝାଡ଼ିବା ।"

( ପୃ. ୬୭୧ )

ଟିକେ ସୂକ୍ଷ୍ମଦୃଷ୍ଟିକୋଣରୁ ବିଚାର କଲେ ଶିଶୁର କଳ୍ପନା, ସର୍ବପ୍ରାଣବାଦ (Animism) ଓ ସହଜରେ ବିଶ୍ୱାସ (To make believe)—ଏ ସମସ୍ତ ଗୋଟିଏ ଫୁଲର ପାଖୁଡ଼ା । କାରଣ ଗୋଟିକର ଅଭାବରେ ଅନ୍ୟଟିର ପୂର୍ଣ୍ଣାଙ୍ଗପ୍ରାପ୍ତି ହୁଏନା ।

## ଅନର୍ଥକ ପଦ ବା ପ୍ରସଙ୍ଗହୀନତା

ଏହା ଶିଶୁ-ସାହିତ୍ୟର ଏକ ବୈଶିଷ୍ଟ୍ୟପୂର୍ଣ୍ଣ ଲକ୍ଷଣ । ଏହି ଅନର୍ଥକ ପଦ ଓ ପ୍ରସଙ୍ଗହୀନତା ପ୍ରୟୋଗର ଚାରୋଟି କାରଣ ରହିଛି, ଯଥା—(୧) ଶିଶୁର କର୍ଣ୍ଣ କୁହରରେ ଶବ୍ଦର ଲହରୀ ସୃଷ୍ଟି କରି ଶିଶୁକୁ ଆକର୍ଷିତ କରିବା; (୨) ଅନର୍ଥକ ପଦମଧ୍ୟରେ ଥିବା ବିଭିନ୍ନ ଶବ୍ଦ ବା ବସ୍ତୁ ସହିତ ତା'ର ପରିଚୟବୋଧ ସଂଘଟିତ ହୋଇଥାଏ; (୩) ଅଳ୍ପବୟସ୍କ ଶିଶୁର ସ୍ପଷ୍ଟ ଉଚ୍ଚାରଣ, କଥା କହିବାର ଅଭ୍ୟାସ ତଥା ବିଭିନ୍ନ ଭଙ୍ଗୀରେ ଜିହ୍ୱା ଓ ଓଷ୍ଠର ଉତ୍ଥାନ-ପତନ ଆଦିର ଅଭ୍ୟାସ ଘଟିଥାଏ; (୪) କେତେକ ଯୁକ୍ତାକ୍ଷରର ଉଚ୍ଚାରଣ ଯାହାକି ଅଳ୍ପବୟସ୍କ ଶିଶୁ ପକ୍ଷରେ କଷ୍ଟକର ହୁଏ, ତାହାର ଶିକ୍ଷା ଦେବା ମଧ୍ୟ ଏହାଦ୍ୱାରା କାର୍ଯ୍ୟକାରୀ ହୋଇଥାଏ । ଅତଏବ ପଦର ପ୍ରଥମ ପାଦ ସହିତ ଦ୍ୱିତୀୟ ପାଦର ସମ୍ପର୍କ ନ ଥାଇ ବି ପାରେ । କବି ମାନସିଂହଙ୍କର 'ଦରୋଟି ଗୀତ'ଟି ଏହାର ଉତ୍କୃଷ୍ଟ ଦୃଷ୍ଟାନ୍ତ । ଏହି 'ଦରୋଟି ଗୀତ'ରୁ ଶିଶୁଉପଯୋଗୀ ବିଜ୍ଞାନସମ୍ମତ, ଶୃଙ୍ଖଳିତ କବିତା ଯେ କବି ଲେଖିଥିଲେ ତା'ର ପ୍ରମାଣ ମିଳେ । ଏହାର ବ୍ୟାଖ୍ୟା କରିବାକୁ ଯାଇ କବି ମାନସିଂହ ଏହାର ପାଦଟୀକାରେ କହିଛନ୍ତି, "ଛୋଟ ପିଲା ବର୍ଣ୍ଣମାଳା ଶିଖିସାରିଲା ପରେ ନାନା ଭାବରେ ବର୍ଣ୍ଣଗୁଡ଼ିକ ସହିତ ପରିଚିତ ହେବାପାଇଁ ପ୍ରଥମେ କେତୋଟି ପଦ୍ୟ ପଢ଼ିବା ଦରକାର । ସେହି ପଦ୍ୟଗୁଡ଼ିକର କୌଣସି ଅର୍ଥ ନ ଥାଇପାରେ । କାରଣ ଶିଶୁର କର୍ଣ୍ଣ, ଶବ୍ଦର ଝଙ୍କାର ଖୋଜେ ।" (୧୦) ଦୃଷ୍ଟାନ୍ତ ଦେଲେ କଥାଟି ସହଜରେ ବୁଝିହୋଇ ଯିବ ।

"ଚମ୍ପା ନାମୀ ନେଇଗଲା ଗଣ୍ଡା କମ୍ବଳ
ଝେ ଚଳେ ଖୁଲିଗଲା ଠୁଣ୍ଟା ବାଙ୍ଗର ।

× × ×

ଖାଦ୍ୟ ଅଣ୍ଡା ଉପକାରୀ ମହାନଦୀ ଜଳ
ଓଡ଼ିଶାର ଅନ୍ୟ ନାମ ଅଟଇ ଉତ୍କଳ ।"

(ପୃ: ୬୪୩)

(୧୦) ମାନସିଂହ ଗ୍ରନ୍ଥାବଳୀ—(୧ମ ଖଣ୍ଡ)—ପୃ. ୬୪୨

ଏହି ଅନର୍ଥକ ପଦ କେତୋଟି ଶିଶୁର କର୍ଣ୍ଣ କୁହରରେ ସୁମଧୁର ଧ୍ୱନି ସୃଷ୍ଟି କରିଥାଏ । 'ଗପ୍ପା', 'କମ୍ବଳ', 'ମହାନଦୀ', 'ଝିଙ୍କଲ' ଆଦି ପଦ ଶିଶୁର 'ବସ୍ତୁ ପରିଚୟ' ଘଟିଥାଏ । 'କମ୍ପା' 'ଶଙ୍ଖ', 'ବାଙ୍ଗର', 'ସ୍ୱାଦୁ', 'ଅଣ୍ଡା', 'ଉତ୍କଳ' ଆଦି ଯୁକ୍ତାକ୍ଷର ମିଶ୍ରିତ ଶବ୍ଦର ଉଚ୍ଚାରଣ ମଧ୍ୟ ଶିଶୁର ଅଭ୍ୟାସ ହୋଇଥାଏ ।

## ଧ୍ୱନ୍ୟାତ୍ମକ ଶବ୍ଦ

ଶିଶୁ-ମନୋବୈଜ୍ଞାନିକମାନେ ପରୀକ୍ଷା କରି ମତ ପ୍ରକାଶ କରିଛନ୍ତି ଯେ, ଶିଶୁ ଅବସ୍ଥାରେ 'ଧ୍ୱନି' ତାକୁ ବହୁ ଆକର୍ଷଣ କରେ । ତେଣୁ 'ଶିଶୁ ସାହିତ୍ୟ' କ୍ଷେତ୍ରରେ ଏହାର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ବହୁ ଧ୍ୱନି (Sound)ର ଶବ୍ଦ (Word) ଏଥିରେ ବ୍ୟବହୃତ ହୋଇଥାଏ (୧୧) । ଶିଶୁ ଉଚ୍ଚାରଣ କରି ପାଠ କଲେ, ତାହା କର୍ଣ୍ଣକୁହରରେ ନିନାଦିତ ହୋଇ ତା'ର କଳ୍ପନା ଜଗତକୁ ଉଦ୍ରେଜିତ କରିଦେବ ।

'ଧ୍ୱନି' ଯେ କେବଳ ଶ୍ରବଣେନ୍ଦ୍ରିୟକୁ ସୁଖ ଦିଏ, ତା ନୁହେଁ । ଏହି ଧ୍ୱନି କବିତାରେ ୩ଟି କାର୍ଯ୍ୟ କରିଥାଏ : (୧) କଳ୍ପନାକୁ ଶୀଘ୍ର ଗ୍ରହଣ କରିବା ପାଇଁ ସାହାଯ୍ୟ କରେ; (୨) କବିତା ମଧ୍ୟସ୍ଥ ଚିନ୍ତାକୁ ପରିସ୍ଫୁଟ କରିବା ପାଇଁ ସାହାଯ୍ୟ କରେ; (୩) କବିତାର ଆବେଗ (Emotion) ଶ୍ରୋତାର କର୍ଣ୍ଣକୁହର ଦେଇ ମନରେ ଶୀଘ୍ର ସଞ୍ଚାରିତ କରିବାରେ ମଧ୍ୟ ସାହାଯ୍ୟ କରେ (୧୨) । ସୁତରାଂ ଶିଶୁ-ସାହିତ୍ୟ କ୍ଷେତ୍ରରେ ଏହି ଧ୍ୱନ୍ୟାତ୍ମକ ଶବ୍ଦର ଆବଶ୍ୟକତା ଯେ ଅପରିହାର୍ଯ୍ୟ ଏହା ସନ୍ଦେହଶୂନ୍ୟ । କବି ମାନସିଂହଙ୍କ ଦୃଷ୍ଟିକୋଣରୁ ଏହା ମଧ୍ୟ ବାଦ ଯାଇପାରି ନାହିଁ । ତାଙ୍କର 'ରେଲଗାଡ଼ି' (ପୃ. ୬୪୮) ଶିଶୁ-କବିତାରେ ବହୁ ଧ୍ୱନ୍ୟାତ୍ମକ ଶବ୍ଦର ଏକତ୍ର ସମାବେଶ ଘଟିଛି । ଯଥା—ଭସଭସ୍, ଭୁଷଭୁଷ୍, ଘର୍‌ଘର୍, ଥର୍‌ଥର୍, ସାଇଁସାଇଁ, ଧାଉଁଧାଉଁ, ଭକଭକ୍, ଗହଗହ ପ୍ରଭୃତି ।

---

(୧୧) Children's Literature in the Elementary School—By Charlotte S. Huck, Dorries A. Young—P. 320

(୧୨) The Appreciation of Poetry—P. Gurrey—Oxford University Press—7th Edition—1968—Chapter—VII—(Sound)—P. 69

**ଛନ୍ଦ** 'Rhythm) :

## ଗଳ୍ପାଂଶ ଓ ଚରିତ୍ର (Plot and Character)

ଶିଶୁ ସବୁ ବିଷୟରେ ଏକ କାହାଣୀ ଖୋଜିବସେ । ଏପରିକି ଗୀତରେ ମଧ୍ୟ । ତେଣୁ 'ଗାଥା କବିତା' ପ୍ରତି ସେ ଅତ୍ୟଧିକ ମାତ୍ରାରେ ଆକର୍ଷିତ ହୋଇଥାଏ । ଏହି ଗଳ୍ପାଂଶର ମାଂସକୁ ଧରି ରଖିବା ପାଇଁ କେତୋଟି ଚରିତ୍ର ତ ନିହାତି ଦରକାର ! ନ ହେଲେ ଚରିତ୍ର ବିନା ଗଳ୍ପାଂଶ (Plot) ଶୂନ୍ୟରେ ରହିପାରିବ ବା କିପରି ? ଏହି ଚରିତ୍ରଗୁଡ଼ିକ ହେଲେ ଗଳ୍ପାଂଶର ଧାରକ । ଅତଏବ କୌଣସି କଥା ଶିଶୁକୁ ବୁଝାଇବାକୁ ହେଲେ ଦୃଷ୍ଟାନ୍ତସ୍ୱରୂପ ଏକ ଗପ କହିବାକୁ ପଡ଼ିଥାଏ, ପୂର୍ବରୁ କହିଥିବା କଥାର ସମର୍ଥନ ତଥା ହୃଦୟବୋଧ ପାଇଁ । ଏଣୁ ଶିଶୁ-ସାହିତ୍ୟ କ୍ଷେତ୍ରରେ ଏହାର ସ୍ଥାନ ସ୍ୱତନ୍ତ୍ର । କବି ମାନସିଂହଙ୍କ ଏକାଧିକ ଶିଶୁ କବିତାରେ ଏହି 'ଗଳ୍ପାଂଶ'ର ପଦଚିହ୍ନ ପରିଦୃଷ୍ଟ ହୁଏ । ମୁଖ୍ୟତଃ ତାଙ୍କର 'ଉଡ଼ିଯାଏ ଗେଣ୍ଡାଳିଆ, ପଡ଼ିଯାଏ ଗୁଳି', 'ବଣଭୋଜି', 'ଶୁକଦେଈ', 'ଗୁଣ୍ଡୁଚି ମୂଷା', 'ଚେଷ୍ଟା', 'କର୍ତ୍ତବ୍ୟ', 'ଭଲ ଓ ମନ୍ଦ ପିଲା' ପ୍ରଭୃତିରେ ଏହାର ପଦଶବ୍ଦ ସୁସ୍ପଷ୍ଟ । ଶିଶୁମାନଙ୍କର ଗ୍ରହଣ କରିବାର ପରିମାଣ ଏହି ଗଳ୍ପାଂଶ ଓ ଚରିତ୍ର ଉପରେ ନିର୍ଭର କରିଥିବାରୁ ଶିଶୁ-ସାହିତ୍ୟିକମାନଙ୍କ ଦାୟିତ୍ୱବୋଧ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଉଠେ ଏହି ବିଷୟରେ । ଏ ଦୃଷ୍ଟିକୋଣରୁ କବି ମାନସିଂହ ଯେ ସଫଳତା ଅର୍ଜନ କରିଛନ୍ତି ଏହା କହିବା ନିଷ୍ପ୍ରୟୋଜନ । ସେ ଶିଶୁର ପାରିପାର୍ଶ୍ୱିକ ( ବଣଭୋଜି, କର୍ତ୍ତବ୍ୟ, ଭଲ ଓ ମନ୍ଦ ପିଲା ) ପରିସ୍ଥିତିରୁ ଗଳ୍ପାଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ପୌରାଣିକ ( ଗୁଣ୍ଡୁଚି ମୂଷା ଆଖ୍ୟାନ ) ଓ ଐତିହାସିକ ବିଷୟ ( ଶୁକଦେଈ ) ଆଦିକୁ ମଧ୍ୟ ଗ୍ରହଣ କରିଛନ୍ତି ।

## ପ୍ରଶ୍ନୋତ୍ତର

ଶିଶୁ ମନରେ ଜିଜ୍ଞାସା ପ୍ରବୃତ୍ତିକୁ ମନୋବୈଜ୍ଞାନିକମାନେ ସ୍ୱୀକୃତି ପ୍ରଦାନ କରିଛନ୍ତି । ସବୁକିଛି ଜାଣିବାର ଆକାଙ୍‌କ୍ଷା ତା ମନରେ ଦ୍ୱିଗୁଣରେ ଉଦ୍ରେକ ହୋଇଥାଏ । କେତେକ ସମୟରେ କୌତୂହଳରେ ମଧ୍ୟ ଶିଶୁ ବିଭିନ୍ନ ପ୍ରଶ୍ନମାନ ପଚାରିବସେ—

"ବୋଉ ମୁହିଁ କେଉଁଠି ଥିଲି
କେଉଁଠାରୁ ଆସିଲି ମତେ,
ନଈରେ କି ଭାସୁଥିଲି ବା
ପଡ଼ିଥିଲି କେଉଁ ଅପଥେ ?"

( ଶିଶୁର ପ୍ରଥମ ପ୍ରଶ୍ନ—ପୃ. ୬୪୪ )

'ଶିଶୁ ସାହିତ୍ୟ'ରେ 'ଧ୍ୱନି' ଯେତେବେଳେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନାଧିକାର କରିବସେ ଧ୍ୱନିକୁ ଗ୍ରହଣ ପାଇଁ, ସେତେବେଳେ ତା'ର ଛନ୍ଦ ମଧ୍ୟ ଆଲୋଚନାର ପରିସରକୁ ଆପେ ଆପେ ଚାଲିଆସେ । ସଙ୍ଗୀତ ବା ଗୀତର ଲହରି ପ୍ରତି ଶିଶୁର ଆକର୍ଷଣ ତା'ର ମା' କୋଳରୁ ଆରମ୍ଭ ହୋଇଯାଇଥାଏ । ତେଣୁ କବିତାର ସ୍ୱର ବା ଛନ୍ଦ ଶିଶୁସାହିତ୍ୟ କ୍ଷେତ୍ରରେ ଏକ ଉପେକ୍ଷାର ବିଷୟ ନୁହେଁ । ଶିଶୁ-ସାହିତ୍ୟରେ କବିତାଗୁଡ଼ିକ କେବଳ 'ପାଠ୍ୟ' ନୁହେଁ 'ଗେୟ' ମଧ୍ୟ । ତେଣୁ ଏଗୁଡ଼ିକ 'ଗୀତିକବିତା' (Lyric) ଶୈଳୀରେ ରଚିତ ।

ମୁଖ୍ୟତଃ ଶିଶୁର ଛନ୍ଦରେ ତାଳ ଦ୍ରୁତ ହୋଇଥାଏ । ଅର୍ଥାତ୍ ଅଳ୍ପ ବ୍ୟବଧାନରେ ଯତିପାତ ହୋଇଥାଏ । ଯଥା—

"ସାଧବ ପୁଅ
        କୁଆଡ଼େ ଯାଅ
                ହୋଇ ଦରିଆ ପାରି,
ତମ ବୋଇତେ
        ନେବ କି ମତେ
                ଯିବି ମୁଁ ଘର ଛାଡ଼ି ।"
                        ( ସାଧବ ପୁଅ—ପୃ. ୬୫୧ )

ଅଥବା—

ବରଷକ ଫଳ            କରିବ ଅମଳ
        ଚଷା ମନ ଛନ ଛନ,
ଦୂର ଗସ୍ତରେ            ପବନ ଲହରେ
        ଦୋଳିଉ କିଆରି ଧାନ ।"

( ଧାନକଟା—ପୃ. ୭୬୩ )

ଶିଶୁ ପକ୍ଷରେ ଏହି ଦ୍ରୁତତାଳବିଶିଷ୍ଟ ଛନ୍ଦ ଅପେକ୍ଷାକୃତ ଅଧିକ ପ୍ରିୟ ହୋଇ ଉଠିବାର କାରଣ ହେଲ—ତା'ର ଦୁଇ ହାତ ତାଳି ଚାପୁଡ଼ାର ଧ୍ୱନି ଓ ସେହି ତାଳି ଚାପୁଡ଼ାର ବ୍ୟବଧାନ । ସେ ଅଳ୍ପ ବ୍ୟବଧାନରେ ତାଳି ଚାପୁଡ଼ା ମାରିଥାଏ ଏବଂ ସେହି ତାଳି ଚାପୁଡ଼ାର ଛନ୍ଦରେ ପାଟି ର ଗୁଣୁଗୁଣୁ ହୋଇ ଗୀତ ଧରେ । ସେଥିପାଇଁ ତା'ର ଛନ୍ଦ ଲହରି ଦ୍ରୁତ ହୋଇଯାଏ । ଉପରୋକ୍ତ କବିତାଂଶମାନଙ୍କରେ ଏ ସମସ୍ତ ଉପାଦାନ ସଂରକ୍ଷିତ ହୋଇ ରହିଛି । ତେଣୁ ମାନସିଂହଙ୍କ ଶିଶୁକବିତାରେ ଛନ୍ଦ ଯେ ଶିଶୁ ଉପଯୋଗୀ ହୋଇପାରିଛି, ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ।

ଏହି ଛନ୍ଦ ପ୍ରସଙ୍ଗରେ ଶିଶୁସାହିତ୍ୟର ଅନ୍ୟ ଏକ ଆଲୋଚ୍ୟ ବିଷୟ ହେଲା— 'ପୁନରାବୃତ୍ତି' । କୌଣସି ଗୀତର ଗୋଟିଏ ପଦ ବା ଗୋଟିଏ ପଦର କିଛି ଅଂଶର ପୁନରାବୃତ୍ତି ହୋଇଥାଏ । ଏହି ଅଂଶର ବାରମ୍ବାର ଆବୃତ୍ତି ଯୋଗୁଁ ଶିଶୁର କର୍ଣ୍ଣକୁହରରେ ସେହି ଧ୍ୱନିଗୁଡ଼ିକ କ୍ରମେ ପରିଚିତ ହେବା ସଙ୍ଗେ ସଙ୍ଗେ ସେହି ବିଷୟ ପ୍ରତି ଶିଶୁର ଅସ୍ଥିରମତି ମନ କେନ୍ଦ୍ରୀଭୂତ ହୋଇ ରହେ । ତେଣୁ ଶିଶୁ-ସାହିତ୍ୟ ତଥା କବିତାରେ ପୁନରାବୃତ୍ତି ବା Repetition ଏକ ଅଧିକ କଥା ନୁହେଁ । ଶିଶୁର ସ୍ୱଭାବସୁଲଭ ପ୍ରକୃତି ମଧ୍ୟ କବି ମାନସିଂହଙ୍କ ଦୃଷ୍ଟିକୋଣରୁ ବାଦ୍ ପଡ଼ିଯାଇନାହିଁ । ତାଙ୍କର 'ଆମର ଗାଆଁ ବୁଢ଼ୀ' କବିତାରେ "ଆମ ଗାଆଁ ବୁଢ଼ୀ ବୋଲି ଡାକ ତାର ନାଆଁ" ପାଦଟି ୫ଟି ପଦର ଶେଷ ପାଦରେ ବାରମ୍ବାର ଆବୃତ୍ତି ହୋଇଛି । କେବଳ ସେତିକି ନୁହେଁ; 'ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଗୁଳି' କବିତାରେ "ଉଡ଼ିଗଲେ ଗେଣ୍ଡାଳିଆ ପଡ଼ିଯାଏ ଗୁଳି" ଅଂଶଟିର ୬ ଥର ପୁନରାବୃତ୍ତି କରାଯାଇଛି । ଏହି ପୁନରାବୃତ୍ତି ବିରକ୍ତିବ୍ୟଞ୍ଜକ ନୁହେଁ, ବରଂ ଶ୍ରୁତିମଧୁର ଏବଂ ସେହିପରି ପୂର୍ବପ୍ରସଙ୍ଗକୁ ଫେରାଇ ଆଣିବାରେ ଚଞ୍ଚଳମତି ଶିଶୁକୁ ବହୁ ସାହାଯ୍ୟ ମଧ୍ୟ କରିଛି । ଏ ପ୍ରସଙ୍ଗରେ ଅନ୍ୟ ଗୋଟିଏ ବଡ଼ କଥା ହେଲା—ଏହି ପୁନରାବୃତ୍ତି କାହାଣୀ ବା ଗପକୁ ଭାଗବିଭାଗ କରି ଟିକେ ସହଜ କରିଦିଏ । ସେ ନିଶ୍ୱାସ ନେବାକୁ ସ୍ଥାନ ପାଏ ଏବଂ ନିଜେ ବିଭିନ୍ନ କ୍ରିୟା (Action) ଶିକ୍ଷା କରିବାକୁ ସୁଯୋଗ ଲାଭ କରେ (୧୩) ।

## ପ୍ରକୃତି

ଶିଶୁର ମନଜଗତରେ ପ୍ରକୃତି ପ୍ରତି ଏକ ତୀବ୍ର ଆକର୍ଷଣ ରହିଥିବାର ଶିଶୁ-ମନୋବିଜ୍ଞାନର ବୈଜ୍ଞାନିକମାନେ ଲକ୍ଷ୍ୟ କରିଥାନ୍ତି । ଏହାର କାରଣ, ପ୍ରକୃତିର ପରିବର୍ତ୍ତନଶୀଳତା । ଦିନର ବିଭିନ୍ନ ସମୟରେ ବିଶେଷତଃ ବର୍ଷର ବିଭିନ୍ନ ସମୟରେ ପ୍ରକୃତିର ଯେଉଁ ପରିବର୍ତ୍ତନ ପରିଲକ୍ଷିତ ହୁଏ, ସେଥିରେ ସେ ଆଶ୍ଚର୍ଯ୍ୟ ହୋଇଯାଏ ଏବଂ ଫଳରେ ସେଥିପ୍ରତି ତା'ର ଆଗ୍ରହ ସୃଷ୍ଟି ହୁଏ । ଦିନର ସକାଳ, ଦ୍ୱିପ୍ରହର, ସନ୍ଧ୍ୟା, ରାତି ଏବଂ ବର୍ଷକର ଗ୍ରୀଷ୍ମ, ବର୍ଷା, ଶୀତ, ବସନ୍ତ ଆଦି ଋତୁରେ ପ୍ରକୃତିର

(୧୩) "The repetition of refrains helps to devote a story into simpler units—to furnish a breathing space, as it were, for the child to coach up with at acnion of the story"—An Introduction to Child Study—Ruth Strang—P. 188

ପରବର୍ତ୍ତୀନ ତା ମନରେ ବହୁ ଜିଜ୍ଞାସା ଓ ଉତ୍ସାହର ବାର୍ତ୍ତା ନେଇ ଆସେ । ହିସାବ କରି ଦେଖାଯାଇଛି ଯେ "ଗୋଟିଏ ବିଷୟରେ ମୁଁ ଆଶ୍ଚର୍ଯ୍ୟ ହୁଏ" ଶୀର୍ଷକରେ ଏକ ଶିଶୁ ପତ୍ରିକା ପ୍ରାୟ ୭,୩୦୦ରୁ ଊର୍ଦ୍ଧ୍ୱ ସଂଖ୍ୟକ ପ୍ରଶ୍ନ ପାଇଥିଲା ପ୍ରକୃତି ଓ ବିଜ୍ଞାନକୁ ନେଇ । ଏଣୁ ଶିଶୁଚକ୍ଷୁରେ ପ୍ରକୃତି ଯେ କିପରି ଆଶ୍ଚର୍ଯ୍ୟ ଓ ଆଗ୍ରହର ପ୍ରତୀକ ଏଥିରୁ ତାହା ଅନୁମେୟ (୧୪) ।

ଏଣୁ ପାଗ ବା ବିଭିନ୍ନ ଋତୁରେ ପ୍ରକୃତିର ଦୃଶ୍ୟ ତଥା ଦିନର ବିଭିନ୍ନ ସମୟରେ ପ୍ରକୃତିର ରୂପଚିତ୍ରର ବର୍ଣ୍ଣନା ଏଥିରେ ଏକ ବିଶେଷ ଅଂଶ ଗ୍ରହଣ କରିବସେ । ଏଣୁ ମାନସିଂହ ତାଙ୍କର 'ପଲ୍ଲୀସନ୍ଧ୍ୟା'ରେ ଲେଖିଛନ୍ତି—

"ପର୍ବତ ଉହାଡ଼େ ରବି ଅସ୍ତ ଯାଏ ଧୀରେ
ଶ୍ରାନ୍ତ ପକ୍ଷୀ ଆସି ବସେ ବନସ୍ପତି ଶିରେ ।
ଦୋଳେ କ୍ଷୁଦ୍ର ଢେଉ ତୋଳି ସ୍ୱଚ୍ଛତୋୟ ସର
ଚର୍ଚ୍ଚିତ ହୋଇଛି ଜଳ, ପଙ୍କ ରବିକର ।"

( ପୃ. ୭୭୨ )

'ସାଗରତୀରେ' କବିତାରେ ସେ ପୁଣି ପ୍ରଭାତର ବର୍ଣ୍ଣନା କରି ଲେଖିଛନ୍ତି—

"ସାଗର ସେ ପାରୁ ଉଠନ୍ତି
ରବି ସିନ୍ଦୂର-ଲାଲ,
ଫୁଟକ ଉଠଇ କରଣ
ଛୁଇଁ ଲହରୀମାଳ ।
ସମୀରଣ ବହିଆସଇ
ସ୍ୱର୍ଣ୍ଣ ତପନ ତଳୁ,
ଭସିଆସେ ତହିଁ ଶୀକର
ଶୀତ ସାଗର ଜଳୁ ।"

( ପୃ. ୭୫୪ )

ବର୍ଷାଋତୁର ବର୍ଣ୍ଣନା କରିବାକୁ ଯାଇ କବି ମାନସିଂହ କରିଛନ୍ତି—

"କଳା ମେଘ ମାଡ଼ିଆସେ ଆକାଶେ
ଚଉଦିଗ ଘୋର ଅନ୍ଧାର ଦିଶେ,

---

(୧୪) A Teachers' Guide to Children's Books—Nancy Larrick—Chapter—9—P. 129

ଅଣଗୃଣ ବନ୍ଧେ ବାଆ ବତାସି
ଜଗତକୁ ଅବା ଯିବ ଗରାସି
ଦୋହଲାଇ ଗଛ
ବରଷା ଆସଇ ପବନ ପଛ ।"

( ପୃ. ୬୬୪ )

× × ×

"ଘଡ଼ଘଡ଼ି ଚଡ଼ଚଡ଼ି ମାରଇ,
ବିଜୁଳି ବେଳେ ବେଳେ ଚମକଇ,
ବାଟ ଘାଟ ବଲ ବୁଡ଼ଇ ଜଳେ,
ନଈବଢ଼ି ଉଠେ ବୁଡ଼ାଇ କୂଳେ,
ଗମନାଗମନ,
ଗାଆଁରୁ ଗାଆଁକୁ ହୁଏ କଷଣ ।"

( ପୃ. ୬୬୫ )

ଯୌବନର 'ବସନ୍ତ' ହୁଏତ ଋତୁରାଜ ହୋଇପାରେ, କିନ୍ତୁ ଶିଶୁମାନଙ୍କର ଅତି ପ୍ରିୟ ଋତୁ ହେଲା– ବର୍ଷା । ତେଣୁ 'ଓଡ଼ିଆ ଶିଶୁ ସାହିତ୍ୟ' (ଲିଖିତ)ରେ ବର୍ଷାର ସ୍ଥାନ ଯେପରି ସ୍ୱତନ୍ତ୍ର, ସେହିପରି ସଂଖ୍ୟାଧିକ ମଧ୍ୟ ।

## ଭାଷା

'ଶିଶୁ-ସାହିତ୍ୟ'ରେ ଭାଷା ଯେପରି ସରଳ ହେବ, ସେହିପରି ସହଜରେ ଉଚ୍ଚାରିତ ହେବା ଅତ୍ୟାବଶ୍ୟକ । କାରଣ ଶିଶୁ କଥା କହିବାର ଶକ୍ତି ଓ ଅଭ୍ୟାସ ପୂର୍ଣ୍ଣତା ପ୍ରାପ୍ତ କରି ନ ଥାଏ । ଏଥିପାଇଁ ଶିଶୁର ପରିଚିତ ଭାଷା ଉପରେ ଅଧିକ ଗୁରୁତ୍ୱ ଦିଆଯାଏ । ମାନସିଂହଙ୍କ ଶିଶୁ କବିତାରେ ଏହାର କେତୋଟି ଦୃଷ୍ଟାନ୍ତ ଦେଖନ୍ତୁ—

"ଲଙ୍କା ଗଡ଼େ ବଙ୍କା ମୁହାଁ ମାଙ୍କଡ଼ ପଶିଲେ,
ସୀତା ଦେବୀ, ଚନ୍ଦ୍ରା ତେଜି ଆନନ୍ଦେ ହସିଲେ ।"

( ଦଶ୍ରେଣି ଗୀତ—ପୃ ୬୪୨ )

"କାହାର ଅଛି ରେ ବୋଉ ମୋ ବୋଉ ପରି
ଖୁଆଇବ କିଏ ଏତେ ଆଦର କରି ?"

( ବୋଉ—ପୃ ୬୪୫ )

"ସଞ୍ଜ ହେଲେ ବୁଢ଼ୀ ପାଖେ ଗାଆଁ ସାକ ପିଲ
ଶୁଣିବାକୁ ଗପ କରୁଥିବେ ଚଲବଲ,
ଗପ ଶୁଣି ଭୁଲଯାନ୍ତି ପିଲେ ଖିଆପିଆ,
"ଆମ ଗାଆଁ ବୁଢ଼ୀ" ବୋଲି ଡାକ ତାର ନାଆଁ ।"

( ଆମ ଗାଆଁ ବୁଢ଼ୀ—ପୃ ୬୫୭ )

ମାତ୍ର ତାଙ୍କ ଶିଶୁ କବିତାର କେତେକ ସ୍ଥାନରେ ବହୁ କଠିନ ଶବ୍ଦ ( ହୁଏତ ଯାହାର ଅର୍ଥ ଶିଶୁ ଜାଣେନା ) ବ୍ୟବହୃତ ହୋଇଛି । ସେଇ କେତୋଟି ହେଲା—କେଦାର, କେବଣ, ତବ, ସଦ୍ଭଶ, ତପନ, ବହ୍ନବେ, ସିନ୍ଧୁ, ସୈକତେ, ସୀମନ୍ତମାଗଣ, ସ୍ୱଚ୍ଛତୋୟ, ଶ୍ରାନ୍ତପକ୍ଷୀ, ଶୁଭ୍ରଲବଦନ, ବନିତା, ଉର୍ଣ୍ଣନାଭ, ଯଷ୍ଟି, ଗାତ୍ରେ, ନେତ୍ର ଓ ଆଗାର ପ୍ରଭୃତି । ଏଗୁଡ଼ିକ ହୁଏତ ଶୁଦ୍ଧ, ସାହିତ୍ୟିକ ଶବ୍ଦ । ଅବଶ୍ୟ ଅନ୍ୟ ଏକ ଦୃଷ୍ଟିକୋଣରୁ ବିଚାର କଲେ ଏହା ଯଥାର୍ଥ । ତାହା ହେଲା—ଶିଶୁର ନୂତନ ଶବ୍ଦ ଶିକ୍ଷା ବା ଯୁକ୍ତାକ୍ଷର ଶିକ୍ଷା । ପୁଣି ଶିଶୁ କ୍ରମେ କ୍ରମେ ନୂଆ ଶବ୍ଦ ଶିଖିବା ଏକାନ୍ତ ଆବଶ୍ୟକ । ନଚେତ୍ ଭାଷା ଆରମ୍ଭ ହେବ କିପରି ?

କେତେକ ସ୍ଥାନରେ କବି ମାନସିଂହ ଯୁକ୍ତାକ୍ଷର ଶିକ୍ଷା ଶିଶୁଙ୍କ ପକ୍ଷରେ କଷ୍ଟକର ହେବ ବୋଲି ତାକୁ ଯଥାସମ୍ଭବ ଏଡ଼ାଇବାକୁ ଚେଷ୍ଟାକରିଛନ୍ତି । ତା'ର କେତୋଟି ଉଦାହରଣ ନିଅନ୍ତୁ—ସଁଜ, କଂକାଳ, ଆଁକୁଡ଼ା, ପହଁଚବଣି, ପିଁଧିବ ଇତ୍ୟାଦି ।

ଭାଷାରେ ସେ ଶିଶୁର ପ୍ରିୟ ଆଇମା କାହାଣୀ ବା ଗୀତ (Mother Goose)ର କେତୋଟି ବହୁ ଉଚ୍ଚାରିତ ଶବ୍ଦକୁ ମଧ୍ୟ ଗ୍ରହଣ କରିଛନ୍ତି ଶ୍ରୀଯୁକ୍ତ ମାନସିଂହ । କାରଣ ପୂର୍ବରୁ ତ କୁହାଯାଇଛି ଆଇମା କାହାଣୀ ଶିଶୁ ଉପରେ ବହୁ ପ୍ରଭାବ ପକାଇଥାଏ, ଯଥା—ଅଗ୍ନାଅଗ୍ନି ବନନ୍ତ, ଦେଣ୍ଟ୍, ଗମ୍ଭୀର ପ୍ରଭୃତି ।

## ଛନ୍ଦ ଓ ଅକ୍ଷର

ଶିଶୁ-ସାହିତ୍ୟ କ୍ଷେତ୍ରରେ ଏ ଦୁଇଟି ଉପାଦାନର ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ସମସ୍ତଙ୍କୁ ଗୋଚର । ସମୀକ୍ଷକମାନେ ମତପ୍ରକାଶ କରି କହନ୍ତି ଯେ, ଶିଶୁ ପକ୍ଷରେ ଛନ୍ଦହିଁ ଏକମାତ୍ର ସହଜ ସରଳ ଉପାୟ ଯାହାଦ୍ୱାରା ଶିଶୁ ଗ୍ରହଣ କରିବା ସହଜ ହୁଏ । ଏହା ବହୁରଙ୍ଗୀ ହୋଇଥିଲେ ତ କଥା ନାହିଁ ।

ଏହି ଚିତ୍ରହିଁ ଶିଶୁର ପଠନଶକ୍ତିକୁ ତ୍ୱରାନ୍ୱିତ କରିଥାଏ । ଚିତ୍ରକୁ ବୁଝିବାର ଆଗ୍ରହ ତାକୁ ପଢ଼ିବାକୁ ବାଧ୍ୟ କରିଥାଏ । (୧୫)

ମାନସିଂହଙ୍କର ଏହି 'ଶିଶୁ କବିତା'ଗୁଡ଼ିକୁ ଆଲୋଚନା କରାଯାଉଛି 'ଗ୍ରନ୍ଥାବଳୀ' (୧ମ ଖଣ୍ଡ)ରୁ, ମୂଳ ପୁସ୍ତକରୁ ନୁହେଁ । ଏହି ଗ୍ରନ୍ଥାବଳୀରେ ଆଦୌ ଚିତ୍ରର ସ୍ଥାନ ନାହିଁ । ତେଣୁ ଶିଶୁ-ସାହିତ୍ୟ (କବିତା)ର ଏହି ବିଭାଗଟି ଏଠାରେ ମର୍ମାହତ । କେବଳ ସେତିକି ନୁହେଁ, ଶିଶୁମାନଙ୍କ ପାଇଁ ବଡ଼ ଟାଇପ୍‌ର ଅକ୍ଷର ଖଞ୍ଜାଯିବା ଆବଶ୍ୟକ । ମାତ୍ର ଏଠାରେ ଶିଶୁ-ସାହିତ୍ୟର ସେ ନିୟମକୁ ପାଳନ କରାଯାଇନାହିଁ । ଅକ୍ଷରଗୁଡ଼ିକ ଏତେ ଗ୍ଳେଟ ଯେ ଶିଶୁମାନଙ୍କ ପକ୍ଷରେ ଏହା ପଢ଼ାଯିବା ଏକ କଷ୍ଟକର ବ୍ୟାପାରରେ ପରିଣତ ହୋଇଅଛି । ଏଥିପାଇଁ ଅବଶ୍ୟ ଉପରୋକ୍ତ ଦୁଇଟି ଉପାଦାନ (ଚିତ୍ର ଓ ଅକ୍ଷର) ପାଇଁ ଲେଖକ ବା କବି ଦାୟୀ ନୁହନ୍ତି, ପ୍ରକାଶକ ଦାୟୀ । ଏଠାରେ ଯୁକ୍ତି ହୋଇପାରେ ଯେ 'ଗ୍ରନ୍ଥାବଳୀ'ଟି ବୟସ୍କ ବିଦଗ୍ଧ ପାଠକମାନଙ୍କ ପାଇଁ ଉଦ୍ଦିଷ୍ଟ । ସେମାନଙ୍କଠାରେ ମାନସିଂହଙ୍କର ପୂର୍ଣ୍ଣାଙ୍ଗ ପ୍ରତିଭାର ସୂଚନା ଦେବାପାଇଁ ଏହି ଶିଶୁ କବିତା ବିଭାଗ (କିଶୋର କବିତା)ଟି ସଂଯୋଜିତ କରାଯାଇଛି । ତେବେ ସେ ଯାହାହେଉ, 'ଚିତ୍ର ଓ ଅକ୍ଷର' ଦିଗରୁ ଏଠାରେ କେବଳ ନୀରବ ରହିବା ଶ୍ରେୟସ୍କର ।

## କବିତାର ବିଷୟ (Theme)

ଶିଶୁ ସାହିତ୍ୟର ବିଷୟକୁ ଏକ ବାକ୍ୟରେ କହିବାକୁ ଗଲେ ମୁଖ୍ୟତଃ ଏହା ଉପଦେଶାତ୍ମକ ବା ଜ୍ଞାନବର୍ଦ୍ଧକ, ମନୋରଞ୍ଜକ । ଏହି ଦୃଷ୍ଟିରୁ ଦେଖିବାକୁ ଥିଲେ ଶ୍ରୀଯୁକ୍ତ ମାନସିଂହଙ୍କ ଶିଶୁ କବିତାଗୁଡ଼ିକୁ ମଧ୍ୟ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ ।

(କ) ଉପଦେଶାତ୍ମକ
(ଖ) ମନୋରଞ୍ଜକ

**(କ) ଉପଦେଶାତ୍ମକ :** ଏହି ଉପଦେଶାତ୍ମକ ଶିଶୁ କବିତାକୁ ପୁନଶ୍ଚ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ—

---

(୧୫) "Since young children's appreciation and interest level for surpass their reading ability, picture books are importont—" Children's litetature in the Elementary school—p. 88.

(୯) ଦେଶ ନମିତ୍ତ
(୨) ସ୍ୱଜୀବନ ନମିତ୍ତ

ଦେଶର ସୁରକ୍ଷା ଓ ସମ୍ମାନ ପାଇଁ ଶିଶୁକଣ୍ଠରେ ଉପଦେଶିଛନ୍ତି କବି ମାନସିଂହ—

"ଜାତିର ପତାକା ଉଚ୍ଚ
ରଖିବାକୁ, ପଛ ଘୁଞ୍ଚ
ନାହିଁ ଦେବୁ, ଯିବ ପଛେ ପ୍ରାଣ,
ହେସ୍ତୁ ଆମେ, ତା ନହିଁଲେ,
ମାନ ତାର ଏ ମହୀରେ
ରଖି ନାହିଁ ଆମର ସମ୍ମାନ ।"

( ଦେଶ-ମା'ର ଆହ୍ୱାନ—ପୃ : ୧୭୩ )

କୁହାଯାଏ, କବି ମାନସିଂହଙ୍କ ପ୍ରତିଭା ଏହି ସ୍ୱଦେଶପ୍ରୀତିକୁ ନେଇ ପ୍ରଥମେ ଗଠିତ ହୋଇଥିଲା (୧୬) । ଏହି ଧାରାର କ୍ଷୀଣ ଉପଧାରା ତାଙ୍କ ଶିଶୁ-କବିତାରେ ମଧ୍ୟ ବହିଆସିଛି—

ହୁଏଁ ନେତା, ହୁଏଁ ମନ୍ତ୍ରୀ, ହୁଏଁ ରାଜ୍ୟପାଳ,
ହୁଏଁ ବା କୃଷକ, ମୋଚି, ଗ୍ରାମ ଜଗୁଆଳ,
ସେବକ ମୁଁ ସବୁ ସ୍ଥାନେ
ଆଗେ ଦେଶ, ମୁହିଁ ପଛେ, ଥିବ ସଦା ଧ୍ୟାନେ ।"

( ବାପୁଜୀଙ୍କ ଶିଷ୍ୟ/ପୃ. ୬୭୨ )

କବି ମାନସିଂହଙ୍କ ରଚିତ ଶିଶୁ-କବିତାରେ ଶିଶୁର 'ସ୍ୱଜୀବନ ନମିତ୍ତ' ଉପଦେଶାତ୍ମକ କବିତା ସଂଖ୍ୟାଧିକ । ଶିଶୁ ଜୀବନକୁ ଶୃଙ୍ଖଳିତ, ଆଦର୍ଶପୂର୍ଣ୍ଣ କରି ଗଢ଼ିବା କବିଙ୍କର ଲକ୍ଷ୍ୟ । କଅଁଳ ବୟସରୁ ପିଲାଙ୍କୁ ଗଢ଼ିବା ପାଇଁ ସେ ଏଥିରେ ଶିକ୍ଷକ ଦାୟିତ୍ୱ ଦେଇ—କର୍ତ୍ତବ୍ୟପରାୟଣ, ପରିଶ୍ରମ, ଉଦ୍ୟମ, ଅପରକୁ ସାହାଯ୍ୟଦାନ ଆଦି

(୧୬) ଓଡ଼ିଆ ସାହିତ୍ୟର ଇତିହାସ—ଡଃ ମାୟାଧର ମାନସିଂହ—ପରିଶିଷ୍ଟ—୧—ଓଡ଼ିଆ ସାହିତ୍ୟରେ ମାୟାଧର ମାନସିଂହ—ଶ୍ରୀ ଚନ୍ଦ୍ରମଣି ବେହେରା—ପୃ. ଖ ।

କରିବା ବିଷୟରେ ଉପଦେଶ ଦେଇଛନ୍ତି । ଏଥିପାଇଁ କେତେକ ସ୍ଥାନରେ କଥାବସ୍ତୁର ମଧ୍ୟ ସଂଯୋଜନା କରିଛନ୍ତି । ଏଥିରୁ କେତୋଟିର ଦୃଷ୍ଟାନ୍ତ ନିଅନ୍ତୁ—

"ବଡ଼ କାମ କର     ବଡ଼ ପରଶଂସା
ପାଇବା ନ ଲୋଡ଼ ମନେ,
ପାଖ ପଡ଼ିଶାଙ୍କ     କଷଣକୁ ହର
ଧନ୍ୟ ହୁଅ ଏ ଜୀବନେ ।"

( ନୀରବ ସେବା/ପୃ. ୬୫୭ )

କୀଟର ସାଧନା ଦେଖି     ହତାଶ ଭାବ ଉପେକ୍ଷି
ହରଷେ ଉଠିଲେ ରଜା ଅସ୍ତ୍ର ଝଙ୍କାରି
ଭାବିଲେ ସେ ମନେ ମନେ     ଚେଷ୍ଟା ହିଁ ସକଳ କର୍ମେ
ଦୁଃସାଧ୍ୟ ସିଦ୍ଧିକି ଆଣେ ପାଶେ ହକାରି ।
ଅନୁଚିତ ହେବା ନିରାଶ,
ପୁଣି ଲଢ଼ି, ଦେଶୁଁ କଲେ ବଇରି ନାଶ ।"

( ଚେଷ୍ଟା/ପୃ. ୬୬୬ )

"ବିଘ୍ନ-ବିପଦ ନ ମାନି ଚାଲ
ନାଶିବା ତମିର ହୋଇ ମଶାଲ
ଢାଳି ଚାରିପାଶେ କରୁଣା ଧାର
ଚାଲରେ ଚାଲ, ଆଗେଇ ଚାଲ ।"

( ଚାଲରେ ଚାଲ/ପୃ. ୬୭୮ )

କେତୋଟି କବିତାରେ କବି ସ୍ୱତନ୍ତ୍ର କଥାବସ୍ତୁ ନିଜେ ସୃଷ୍ଟି କରିଛନ୍ତି । ଯଥା—'ଭଲ ଓ ମନ୍ଦ ପିଲ୍ଲା', 'କର୍ତ୍ତବ୍ୟ' ଆଦି ।

(ଖ) **ମନୋରଞ୍ଜକ—**

ଏହାର କେତୋଟି ଦୃଷ୍ଟାନ୍ତ ହେଲେ ଦଶହରା ଗୀତ, ଆମ ଗାଆଁ ବୁଢ଼ୀ, ରେଳଗାଡ଼ି ଓ ବଣଭୋଜି ଇତ୍ୟାଦି ।

## ପରିଶେଷ

ଶ୍ରୀଯୁକ୍ତ ମାନସିଂହଙ୍କ ଶିଶୁ-କବିତାଗୁଡ଼ିକ ମଧ୍ୟରେ 'ପକ୍ଷିପ୍ରୀତି', ଶିଶୁର 'ଅଭିଜ୍ଞତା' ଓ ଶିଶୁର 'ପରିବେଶ' ଆଦି ସ୍ୱଚ୍ଛନ୍ଦ ଭାବରେ ପରିଦୃଷ୍ଟ ହୁଏ । କେବଳ

ଗୁଣ୍ଡୁଚିମୂଷା, କର୍ତ୍ତବ୍ୟ, ପରିଶ୍ରମ ଓ ରାତିକ ସ୍ୱପ୍ନ ଆଦି କେତୋଟି କବିତାକୁ ବାଦ୍ ଦେଲେ ବାକି ସବୁଗୁଡ଼ିକ ସଂକ୍ଷିପ୍ତ । ଉପରୋକ୍ତ କବିତାଗୁଡ଼ିକ ଗାଥାପ୍ରଧାନ ହେତୁ ସାମାନ୍ୟ ଦୀର୍ଘ ହୋଇଯାଇଛି ।

ଶିଶୁର ଅଭିଜ୍ଞତାକୁ ନେଇ କବି "ଶିଶୁର ପ୍ରଥମ ଦୁଃଖ", "ବଣଭୋଜି", "ମେଘୁଆ ଦିନ" ଓ "ଝିଇ ପାଖକୁ ଚିଠି" ଆଦି କବିତାଗୁଡ଼ିକ ରଚନା କରିଛନ୍ତି । ଶିଶୁ ପ୍ରଥମେ ଦୁଃଖ କରେ ପାଠକୁ ଯିବାରୁ, 'ବଣଭୋଜି'ର ଆୟୋଜନ, ରନ୍ଧା ମଧ୍ୟରେ ଶିଶୁ ଜୀବନରେ ବ୍ୟତିକ୍ରମ ଦେଖାଦେଇ ଉତ୍ସାହ ପ୍ରଦାନ କରେ । 'ମେଘୁଆ ଦିନ'ରେ ସ୍କୁଲ ନ ଯାଇ "ବୋଉ କୋଳେ ଶୋଇ, ମୁଠି ମୁଠି ଭଜା ଗୁଡ଼ିଲ ଖାଇ" "ରଜାପୁଅ, ମନ୍ତ୍ରୀପୁଅ କଥାକୁ" ଶୁଣିବାକୁ ଭଲ ପାଏ । ନିଜ ବ୍ୟବହାର୍ଯ୍ୟ ଜିନିଷ ପାଇଁ ସହରରେ ଥିବା ବଡ଼ ଝିଇ ପାଖକୁ ଏକ ଚିଠି ଦିଏ । ମାତ୍ର ଝିଇ ନ ଆଣିବାରୁ ଅଭିମାନ କରିବସେ—

"ଛୁଟିରେ ଆସିବେ ଯେବେ ଗାଆଁ ଏଥର
ନ ମିଶିବି ନ ଦେଲେ ସେ ଖାତା ପତର ।"

( ଝିଇ ପାଖକୁ ଚିଠି/ପୃ. ୬୭୫ )

ଶିଶୁ ତା'ର ପାରିବାରିକ ପରିବେଶ ମଧ୍ୟରେ ଯାହା ସଂସ୍ପର୍ଶରେ ଆସେ ବା ଦେଖିବାକୁ ପାଏ, କବି ମାନସିଂହ ସେହି 'ବୋଉ', 'ଆମ ଗାଁ ବୁଢ଼ୀ' ଆଦି କଥା କହି ଶିଶୁକୁ ସନ୍ତୁଷ୍ଟ କରିବାପାଇଁ ଲେଖିଛନ୍ତି ।

ଏହି ସମସ୍ତ ଦୃଷ୍ଟିକୋଣରୁ ସୂକ୍ଷ୍ମ ଭାବରେ ପର୍ଯ୍ୟବେକ୍ଷଣ କଲେ 'ଓଡ଼ିଆ ଶିଶୁ-କବିତା' ଦିଗରେ ପଦ୍ମଶ୍ରୀ ମାନସିଂହଙ୍କର ଦାନ ଭୁଲିବାର ନୁହେଁ । ଏହି ଶିଶୁ-କବିତା ମଧ୍ୟରେ ଶିଶୁ (ଗ୍ରାମ) ପ୍ରତି ତାଙ୍କର ଯେଉଁ ଦରଦୀ ହୃଦୟ ରହିଛି, ତାହା ତାଙ୍କର 'ଶିକ୍ଷାବିତ୍ତର ଗାଥା"ରୁ ସ୍ପଷ୍ଟ ସୂଚନା ପାଉ । ତେବେ, ସେ ଯାହା ହେଉ, ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ମାନସିଂହ କେବଳ ଯୌବନର କବି ନୁହନ୍ତି ସେ ଶୈଶବ ଓ କୈଶୋରର କବି ମଧ୍ୟ । କାବ୍ୟ, ନାଟକ, କବିତା ମଧ୍ୟରେ ଏହି ଶିଶୁ-କବିତା ପର୍ଯ୍ୟାୟଟି ଅପେକ୍ଷାକୃତ ସ୍ୱଳ୍ପ ହେଲେ ମଧ୍ୟ ଓଡ଼ିଆ ଶିଶୁ-ସାହିତ୍ୟ ( ଲିଖିତ ) କ୍ଷେତ୍ରରେ ଏହାର ସ୍ଥାନ ଉଚ୍ଚରେ । କବି ମାନସିଂହଙ୍କ ବିଶାଳ ଶାଖାପ୍ରଶାଖାବିଶିଷ୍ଟ ବଟବୃକ୍ଷର କବିପ୍ରତିଭା ମଧ୍ୟରେ ଏହି ବିଭାଗଟି ଏକ କାକଳିପୂର୍ଣ୍ଣ ଚିତ୍ତାକର୍ଷକ, ଅଥଚ କ୍ଷୁଦ୍ର ଶାଖାଟିଏ ମାତ୍ର ।

●

# ନାଟ୍ୟକାର ଭୂମିକାରୁ କବି ମାନସିଂ

## ଏକ ଦୃଷ୍ଟିପାତ

ଅଧ୍ୟାପକ—ଡକ୍‌ଟର ନାରାୟଣ ଶତପଥୀ, ଏମ୍.ଏ., ଏଲ୍.ଏଲ୍.ବି.

ଚିରଗିରିବସ୍ତିତ ଚିଲିକାର କମନୀୟ କୋଡ଼ରେ ୧୯୦୭ରେ ପ୍ରଖ୍ୟାତଯଶା କବି ଶ୍ରୀ ମାୟାଧର ମାନସିଂଙ୍କର ଜନ୍ମ । ଅଭିନବ ପ୍ରକୃତିର ଅପରୂପ ପରିବେଶରୁ ବୋଧହୁଏ କବିପ୍ରତିଭା ପାଇଛି ସ୍ୱପ୍ନାନୁଭୂତିର ବିଭୂତି । ବ୍ୟକ୍ତି ଜୀବନର ନିପୀଡ଼ନ, ସାଧାରଣ ବ୍ୟକ୍ତି ଅବ୍ୟକ୍ତ ଅନୁଭୂତି ଓ ବହୁପାଠ ଅଭିଜ୍ଞତାକୁ କରିଛି ସାନ୍ଦ୍ର ଓ ଗମ୍ଭୀର । ଫଳରେ ଭାବାବେଗ ଓ ପରିବେଶରୁ ସୃଷ୍ଟି ହୋଇଛି ଅଜସ୍ର କାବ୍ୟ-କବିତା । ମାନବିକ ଭାବାବେଗ ଜୀବନ ମୂଲ୍ୟବୋଧରେ ରସାଣିତ ମାନସିଂ କାବ୍ୟ କବିତାକୁ କୌଣସି ଗୋଟିଏ ଯୁଗୀୟ କଥାବସ୍ତୁ ବା ସାମାଜିକ ଚେତନାରେ ସୀମିତ କରିବା କଷ୍ଟକର ହୁଏ ବରଂ ସମସ୍ୟାନୁସାରୀ ଉପସ୍ଥାପନ ରୀତି ଓ ଭାବ ସଚେତନତା ଦୃଷ୍ଟିକୁ ସବୁଜ କରି ରଖିବାର ସଫଳତା ଅର୍ଜନ କରେ । ପରିଣାମରେ କବି ମାନସିଂଙ୍କ ସ୍ୱାକ୍ଷର ସୃଷ୍ଟି ସନନ୍ଦରେ ଏପରି ଉତ୍କୀର୍ଣ୍ଣ ହୁଏ, ଯାହାଫଳରେ ଅଗଣିତ ଓଡ଼ିଆ ପାଠକପାଠିକାଙ୍କ ନିକଟରେ କବି ଭାବେ ସେ ଅକ୍ଷୁଣ୍ଣ ଗୌରବର ଆସନ ଲାଭ କରନ୍ତି ।

କବି ମାନସିଂଙ୍କ ସୃଷ୍ଟି, କାବ୍ୟ-କବିତାର ଭଲମନ୍ଦ ଦିଗ ପ୍ରତ୍ୟକ୍ଷ ଓ ପରୋକ୍ଷରେ ବହୁଭାବେ ଆଲୋଚିତ ସମାଲୋଚିତ ହୋଇସାରିଛି । କଳଙ୍କ ସତ୍ତ୍ୱେ ଚନ୍ଦ୍ରମା ସ୍ପୃହଣୀୟ । ସ୍ପୃହଣୀୟ ହୋଇଛି କବିଙ୍କ କାବ୍ୟ-କବିତା । ଏତେ ପ୍ରତିଷ୍ଠା, ସଫଳତା, ସାର୍ଥକତା, ଦକ୍ଷତା ସତ୍ତ୍ୱେ କବିମାନସର ସୃଷ୍ଟିଧାରା ସେତିକରେ ସନ୍ତୁଷ୍ଟ ନ ହୋଇ ସୃଷ୍ଟିର ବିଭିନ୍ନ ଦିଗନ୍ତ ପ୍ରତି ହୋଇଛି ଆକୃଷ୍ଟ । ତରଳ ଲେଖନୀ ସୃଷ୍ଟି କରିଛି ସମାଲୋଚନା, ପ୍ରବନ୍ଧ, ଭ୍ରମଣ ବୃତ୍ତାନ୍ତ, ନାଟକ, ନାଟିକା, ଏକାଙ୍କିକା, ଶିକ୍ଷା-ଧର୍ମ ସମ୍ବନ୍ଧୀୟ ବିଭିନ୍ନ ଚିନ୍ତାର ସାହିତ୍ୟିକ ରୂପାୟନ ଅନୁବାଦ ଇତ୍ୟାଦି । ଏହାର ପଶ୍ଚାତରେ କବିଙ୍କର ବହୁ ଭାଷା ସାହିତ୍ୟର ପଠନର ସୁଯୋଗ, ବହୁ ସ୍ରଷ୍ଟାଙ୍କର ବିଭିନ୍ନ ସାହିତ୍ୟିକ ଦିଗ ପ୍ରତି ଆକର୍ଷଣ ଥିବା ପରି କବିମାନସରେ

ବାସନା ଥିବା ସମ୍ଭବ । ଏହି ସମ୍ଭାବ୍ୟ ସତ୍ୟରେ ପରିଣତ ହୁଏ ଯେତେବେଳେ ମାନସିଂ ତାଙ୍କ 'କବି ଓ କବିତା' ସମାଲୋଚନା ପୁସ୍ତକରେ ରବୀନ୍ଦ୍ରନାଥଙ୍କ ସମ୍ପର୍କରେ ଲେଖନ୍ତି—"ପ୍ରତିଭାସମ୍ପନ୍ନ କଳାକାର ସାରସ୍ୱତ ବୀଣାର ପ୍ରତିକ ତାରରେ ଅଙ୍ଗୁଳି ଚାଳନା କଲେ ମଧ୍ୟ ଗୋଟିଏ ତାରରେ ଥାଏ ଓସ୍ତାଦୀ । ମାତ୍ର କବିଗୁରୁ ପ୍ରତ୍ୟେକଟି ତାରରେ ନିଜର ଓସ୍ତାଦୀ ଦେଖାଇଛନ୍ତି ।" କବି ମାନସିଂ-ମାନସର ଆଲୋଚନାମୂଳକ ଏଇ ଚନ୍ଦ୍ରାଲୁ ଧରି ନାଟ୍ୟକାର ଭୂମିକାରୁ କବି ମାନସିଂଙ୍କୁ ଅବଲୋକନ କରିବା ଏ ଆଲୋଚନାଟିର ଲକ୍ଷ୍ୟ ।

କବି ମାନସିଂ ଜଣେ ପ୍ରତିଭାସମ୍ପନ୍ନ ପୋଖତ କଳାକାର—ଏଥିରେ ବିରୋଧ ରହିପାରେନା । ପ୍ରତ୍ୟେକ କଳାକାର ପ୍ରତିଟି ତାରରେ ଅଙ୍ଗୁଳି ଚାଳନା କରିବା ପରି ସାହିତ୍ୟର ବିଭିନ୍ନ ବିଭାଗକୁ ସ୍ପର୍ଶ କରିଛନ୍ତି ମାନସିଂ । ପ୍ରତ୍ୟକ୍ଷ ଓ ପରୋକ୍ଷରେ ମାୟାଧର ଜାଣନ୍ତି ତାଙ୍କର 'ଓସ୍ତାଦୀ' ଓ ଲୋକପ୍ରିୟତା କାବ୍ୟ କବିତାର ବିମୋହନ ରାଜ୍ୟରେ । ତଥାପି ବହୁ ତାରକୁ ମାୟାଧରଙ୍କ ସ୍ପର୍ଶ ପ୍ରଚେଷ୍ଟା ଯେ କୌଣସି ସଚେତନ ପାଠକ ଉପଲବ୍ଧି କରେ । ସ୍ୱୀକାର୍ଯ୍ୟ ମାୟାଧରୀ ଭାଷା-କାରିଗରୀ, କାବ୍ୟଧର୍ମୀ-ମନୋଜ୍ଞ-ପ୍ରକାଶ ପାଠକମାନଙ୍କ ଅନୁରାଗଲେପିତ ଦୃଷ୍ଟିକୁ ଯେ କୌଣସିଟି ସୃଷ୍ଟି ପ୍ରତି ଆକର୍ଷିତ କରେ ।

କବି ମାନସିଂ ପ୍ରଳାପଧର୍ମୀ, ନୃତ୍ୟଧର୍ମୀ, ଗୀତଧର୍ମୀ ଅନେକ କାବ୍ୟ କବିତା ଲେଖିଛନ୍ତି । କାବ୍ୟ କବିତାର ଏ ସମସ୍ତ ଗୁଣ ନାଟ୍ୟ କୋଟୀର ହେବା ପାଇଁ ଯେଭଳି ସହାୟକ ଠିକ୍ ସେହିପରି ନାଟକ ତ ପୁଣି କାବ୍ୟ, ନାଟିକା, ଗୀତି-ନାଟ୍ୟ ବି ତ ପୁଣି କାବ୍ୟଧର୍ମୀ । ତେଣୁ ଏସବୁର ପ୍ରଣେତା ମଧ୍ୟ କବି—ନାଟ୍ୟକାର । କବି ନାଟ୍ୟକାର ମାୟାଧରଙ୍କ ସୂଚନାମତେ ତାଙ୍କ ନାଟ୍ୟ-ନାଟିକା-ନୃତ୍ୟଧର୍ମୀ-ସୃଷ୍ଟିର ସ୍ଥୂଳ ପରିଚୟ ହେଉଛି 'ରାଜକବି ଉପେନ୍ଦ୍ର', 'ପୁଷ୍ପାଭିନୟ', 'ପୁଷ୍ପିତା', 'ବୁଦ୍ଧଦ୍ୟୁତି', 'ଦୁର୍ଭିକ୍ଷ', 'ପୂଜାରିଣୀ', 'ନଷ୍ଟନୀଡ଼', 'ବାରବାଟୀ', 'ବୁଦ୍ଧ' ଓ 'ଶାସନ ଚକ୍ର' ।

ସୂଚିତ ସୃଷ୍ଟିଚକ୍ରରୁ 'ରାଜକବି ଉପେନ୍ଦ୍ର', 'ପୁଷ୍ପାଭିନୟ', 'ପୁଷ୍ପିତା' ଓ 'ବୁଦ୍ଧଦ୍ୟୁତି' ଗୀତିନାଟ୍ୟ । ପ୍ରାଚୀନ ଅଳଙ୍କାର ଶାସ୍ତ୍ର ସୂଚନାରେ ଗୀତିନାଟ୍ୟ 'ନୃତ୍ୟ ପ୍ରକାର' ବା 'ଉପରୂପକର' ଅନ୍ତର୍ଗତ । କାରଣ ଗୀତିନାଟ୍ୟ ଏକାନ୍ତଭାବେ ନୃତ୍ୟଗୀତପ୍ରଧାନ ଏବଂ ଭାବାଶ୍ରୟୀ । କବିର ଭାବପ୍ରକାଶ ପାଇଁ ଏହା ଯେପରି ଏକ ସହାୟକ ଶୈଳୀ ସେହିପରି ଭାବର ପ୍ରସାରଣ ଓ ସଞ୍ଚାରଣ ପାଇଁ ନୃତ୍ୟ-ଗୀତ-ବାଦନ ଅଧିକ ସହାୟକ । ୧୯୬୮ ମସିହାରେ ରୂପାୟିତ 'ରାଜକବି ଉପେନ୍ଦ୍ର' ଗୀତିନାଟ୍ୟ ମୁଖବନ୍ଧରେ କୁହାଯାଇଛି "ଉପେନ୍ଦ୍ରଙ୍କ ରହସ୍ୟମୟ ଜୀବନର ଇତିବୃତ୍ତି

ଲେଖକ ମନରେ ପ୍ରହେଳିକା ସୃଷ୍ଟି କରିଛି" । ଏହି ରହସ୍ୟ ଓ ପ୍ରହେଳିକାର ଦ୍ୱାର ଉଦ୍‌ଘାଟନ କରିବାକୁ, ମାନସିଂ ନିଜସ୍ୱ ଭଙ୍ଗୀରେ ଗୀତିନାଟ୍ୟଟିରେ ପ୍ରଚେଷ୍ଟା କରିଛନ୍ତି ।

'ରାଜକବି ଉପେନ୍ଦ୍ର'ରେ ସମୁଦାୟ ଛଅଟି ଦୃଶ୍ୟର ପରିକଳ୍ପନା କରାଯାଇଛି, ଯଥା :—ନଦୀ ଧାର, ସଚନ୍ଦ୍ର ଶୃଙ୍ଗାଟକ, କାନନ ପଥ, କାନନ, ନଦୀତଟ, ଉପବନ । ମଞ୍ଚରେ ଏ ସମସ୍ତ ସଜ୍ଜାକୁ ଯେତେ ସଂକ୍ଷିପ୍ତ ଓ ଦ୍ରୁତ କଲେ ମଧ୍ୟ ମଞ୍ଚର ଗତିକୁ ଅବ୍ୟାହତ ରଖିବା ଅସମ୍ଭବ ହୋଇପଡ଼େ । ତେଣୁ ଗୀତିନାଟ୍ୟଟିର ସଫଳ ଉପସ୍ଥାପନ ପାଇଁ ବର୍ଣ୍ଣିତ ଦୃଶ୍ୟସଜ୍ଜାକୁ ଏଡ଼ିଦେଇ ପରିବେଶ ପାଇଁ ସାଙ୍କେତିକ ବା ସୂଚନାତ୍ମକ ଦୃଶ୍ୟକୁ ଗ୍ରହଣ କରାଯାଇପାରେ । ଗୀତିନାଟ୍ୟରେ ସଙ୍କେତ ହିଁ ସ୍ପନ୍ଦନ ।

ଆଲୋଚ୍ୟ ଗୀତିନାଟ୍ୟଟିରେ ସାତୋଟି ପୁରୁଷ, ଦୁଇଟି ନାରୀ ଏବଂ ନାଗରିକଗଣ, ବନ୍ୟ ବାଳକବାଳିକାଗଣଙ୍କୁ ଚରିତ୍ର ରୂପେ ଗ୍ରହଣ କରାଯାଇଛି ।

ପ୍ରଥମ ଦୃଶ୍ୟଟି, ଶରତ ପ୍ରକୃତିର ଆରଣ୍ୟକ ସୁଷମା—ନିସଙ୍ଗ ବନାନୀ—ବନ୍ୟ ବାଳକ, ବାଳିକାମାନଙ୍କ କଥୋପକଥନ ଓ ଗୀତରେ ଉନ୍ମୋଚିତ ହୋଇଛି । ରାଜକୁମାର ଉପେନ୍ଦ୍ର ଶୁଣିଛନ୍ତି ପ୍ରକୃତିର ଆହ୍ୱାନ । ଖୁବ ଦୂରରୁ ଭାସିଆସିଛି ସଙ୍ଗୀତର ମୂର୍ଚ୍ଛନା—"ବହୁତ ଦିନରୁ ସଖୀ.........ଆଜି ଆସି ଦେଲ ଦେଖା" ଇତ୍ୟାଦି । ସତେ ଯେମିତି ଏହା Wordsworth ପ୍ରକୃତିର ଆହ୍ୱାନ । କିଶୋର କବି ବିମୁଗ୍ଧ ଏ ରହସ୍ୟରେ—ଏ ଦୃଶ୍ୟରେ । ମନପ୍ରାଣ ପ୍ରକୃତି ନିକଟରେ ସମର୍ପିତ । ଦ୍ୱିତୀୟ ଦୃଶ୍ୟ—ରାଜପ୍ରାସାଦର ଶୃଙ୍ଗାଟକ । ସୈନ୍ୟଚାଳନା, ଉଦ୍‌ବୋଧନ ଗୀତ, ସିଂହାସନ ପାଇଁ ଅନ୍ତର୍ବିବାଦ—କ୍ଷମତା ଲାଳସାର ଦ୍ୱନ୍ଦ୍ୱ ଚରମରେ ରସାଳ । ଚତୁର୍ଥ ଦୃଶ୍ୟରେ ସିଂହାସନର ପ୍ରଲୋଭନ ପ୍ରତି ଉପେନ୍ଦ୍ରଙ୍କ କଟାକ୍ଷ । ସରସ୍ୱତୀଙ୍କ ଆବିର୍ଭାବ, ଉପେନ୍ଦ୍ରଙ୍କୁ ବୀଣା ପ୍ରଦାନ ଓ ଭବିଷ୍ୟତ ସୂଚନା ଇତ୍ୟାଦି ବେଶ ମଞ୍ଚମାୟା ସୃଷ୍ଟି କରିବାରେ ସାହାଯ୍ୟ କରେ । ପରବର୍ତ୍ତୀ ଦୃଶ୍ୟମାନଙ୍କରେ ପରିଚିତ । ପ୍ରଖ୍ୟାତ କବି ଉପେନ୍ଦ୍ର ଏବଂ ବିଭିନ୍ନ ନାରୀ ଚରିତ୍ରମାନଙ୍କ ଅବତାରଣା, ପ୍ରେମାଞ୍ଜଳିର ମୂର୍ତ୍ତି ଓ ପରିବେଶମାନଙ୍କରେ କଥାନକ ଅଗ୍ରଗାମୀ ଏବଂ ସମ୍ପ୍ରସାରିତ ହୁଏ । ପ୍ରତିଟିରେ ତୀବ୍ର ଅଥଚ ଗୂଢ଼ ଭାବର ବହୁଳ ପ୍ରକାଶ, ସଙ୍ଗୀତ ବିଭୂତି ନାୟକ କବି ସମ୍ରାଟ ଭଞ୍ଜଙ୍କ ଜୀବନ ରହସ୍ୟକୁ ଅଧିକ ରହସ୍ୟାବୃତ୍ତ କରେ ଏବଂ ତାର ଭିତରେ କବି ଉପେନ୍ଦ୍ରଙ୍କ ମହତ୍ତ୍ୱର ଜୀବନର ଗୋଟିଏ ଗୋଟିଏ ଦିଗ ହୁଏ ଉନ୍ମୋଚିତ । ଏ ସମସ୍ତ ସାତ୍ତ୍ୱିକ ଅଭିନୟକୁ ସମ୍ପୂର୍ଣ୍ଣରୂପେ ଉପସ୍ଥାପିତ କରି ଦୃଶ୍ୟମାନଙ୍କୁ ସମଭାବେ ସଫଳ କରିବା ସହଜ ନୁହେ । ଗିରିଜାବାବୁଙ୍କ ଭାଷାରେ "ଏସବୁକୁ ଅଭିନୟ ଦ୍ୱାରା ଦର୍ଶକମାନଙ୍କ

ହୃଦୟରେ ଅଙ୍କିତ କରିବା ସହଜ ବ୍ୟାପାର ନୁହେଁ XXX ପୁଣି ଏଥିରେ ଥିବା ଦ୍ଵନ୍ଦ୍ଵର ଆଶ୍ରୟ ସମ୍ପୂର୍ଣ୍ଣ ମାନସିକ ।”

‘ପୁଷ୍ପାଭିନୟ’ ଓ ‘ପୁଷ୍ପିତା’ ଗୀତିନୃତ୍ୟ ଭାବେ କେତେକ ସ୍ଥଳରେ ପରିବେଶିତ ହୋଇଥିଲେ ମଧ୍ୟ ଏଥିରେ ଲେଖକ ଦୃଶ୍ୟ ସଙ୍କେତ ପାଇଁ କୌଣସି ପ୍ରକାର ବିଶିଷ୍ଟ ସୂଚନା ଦେଇ ନାହାନ୍ତି । ସମୟ, ସ୍ଥାନ, ପାତ୍ରପାତ୍ରୀଙ୍କ ପ୍ରବେଶ ପ୍ରସ୍ଥାନର ଯନ୍ତ୍ରକୌଶଳ ସୂଚନା ମଧ୍ୟରେ ଏ ଦୁଇଟି ଗୀତିନୃତ୍ୟ ରୂପାୟିତ ହୋଇଛୁ । ‘ପୁଷ୍ପାଭିନୟ’ର ସୂତ୍ରଧର ମାଧ୍ୟମରେ ଲେଖକ କୁମାରୀ ଜୀବନର ମାନସିକ ଓ ଦୈହିକ ବିକାଶର ସଙ୍କେତ ଦେଇ କଳିକା, ରବିକର, ବାୟୁ, ପ୍ରଜାପତି, ଭ୍ରମର, ଫୁଲ ଇତ୍ୟାଦିଙ୍କୁ ଚରିତ୍ର ରୂପେ ଗ୍ରହଣ କରିଛନ୍ତି । ‘ପୁଷ୍ପିତା’ର ସାତୋଟି ଦୃଶ୍ୟରେ ଦୁଇଟି ସ୍ଥାନର ପରିକଳ୍ପନା କରାଯାଇଛି :—ମଧ୍ୟବିତ୍ତ ଗୃହସ୍ଥର ଅଗଣା ଓ ବକୁଳବନ । ଅଗଣାରେ କିଶୋରୀମାନଙ୍କର କଥୋପକଥନ । ବସନ୍ତ ମଳୟ ଚରିତ୍ରରୂପେ ସଙ୍ଗୀତର ଆବେଶ ସୃଷ୍ଟି କରିବା, ଶେଷ ଦୃଶ୍ୟରେ ମଦନ—ରତିର ନୃତ୍ୟ ଗୀତରେ କିଶୋରୀ ଜୀବନର ରୂପ ଓ ଭାବାନ୍ତରକୁ କୋରକ—ପୁଷ୍ପ—ସୌରଭ କ୍ରମରେ ସଙ୍କେତ କରାଯାଇଛି । କୁମାରୀ ଜୀବନର ମାନସିକ ବିକାଶ ଓ ପ୍ରକାଶର ପ୍ରତୀକ ଭାବେ ବ୍ୟବହୃତ ଚରିତ୍ର ମାଧ୍ୟମରେ କେତୋଟି ଗଦ୍ୟ ସଂଳାପ ସ୍ଥାନ ପାଇଥିଲେ ମଧ୍ୟ ବସ୍ତୁତଃ ଏଗୁଡ଼ିକ ଗୀତିଧର୍ମୀ, ଭାବାଶ୍ରୟୀ । କଥାବସ୍ତୁ ଅପେକ୍ଷା ଭାବ ପ୍ରକାଶ ଏଥିରେ ଅଧିକ ଭାବେ ସଂଗଠିତ ହୋଇଛି । ତେଣୁ ଉଭୟ ଗୀତିନୃତ୍ୟ ପରସ୍ପରର ପରିପୂରକ । ସତେ ଯେପରି ଗୋଟିଏ ଭାବ-ପୁଷ୍ପର ଦୁଇଟି ପାଖୁଡ଼ା, ସୌରଭ ବର୍ଣ୍ଣ ଆକୃତି ପ୍ରକୃତିରେ ପ୍ରାୟ ଏକ ଓ ଅଭିନ୍ନ ।

‘ବୁଦ୍ଧଦ୍ୟୁତି’ ଗୀତିନାଟ୍ୟଟିରେ ଛଅଟି ଦୃଶ୍ୟକୁ ଲେଖକ ଛଅଟି ପାଖୁଡ଼ାରୂପେ ବର୍ଣ୍ଣନା କରିଛନ୍ତି । ଏଭଳି ରୁଚି ଏକାନ୍ତ କବିର । କବି ମାୟାଧରଙ୍କ ଜୀବନକୁ ବୁଦ୍ଧଚରିତ, ବୁଦ୍ଧଜୀବନ, ବୁଦ୍ଧ ଆଦର୍ଶ ବହୁଭାବେ ପ୍ରଭାବିତ କରିଥିବା କଥା ସେ ମାନସିଂ ବହୁସ୍ଥାନରେ ପ୍ରକାଶ କରିଛନ୍ତି । ଏ ପ୍ରଭାବର ଆଦର୍ଶ ‘ବୁଦ୍ଧଦ୍ୟୁତି’, ଏ ପ୍ରଭାବ ସହିତ ଓଡ଼ିଶା ଇତିହାସର ଦନ୍ତପୁର, ପ୍ରଚଳିତ ଲୋକଶ୍ରୁତି, ରାଜବାଳା, ହେମମାଳା ‘ବୁଦ୍ଧଦ୍ୟୁତିର’ ରୂପାୟନ ପାଇଁ କବିଙ୍କୁ ପ୍ରଲୁବ୍ଧ କରିଥିବା ଅନୁମିତ ହୁଏ । ବୋଇତ, ସାଧବ, ସିଂହଳ ଇତ୍ୟାଦି ରୋମାଣ୍ଟିକ୍ ଚିନ୍ତାଧାରା ଓଡ଼ିଆ ପ୍ରାଣକୁ ଏବେବି ସ୍ପନ୍ଦିତ କରେ । ‘ସାଧବ ଝିଅର ପ୍ରଣୟଙ୍କ ପାଇଁ ଏସବୁର ରୂପାନ୍ତର ‘ବୁଦ୍ଧଦ୍ୟୁତି’ କହିଲେ ବରଂ ବେଶି ଭୁଲ ହେବ ନାହିଁ ବୋଲି ମନେହୁଏ । ସମସ୍ତ ଗୀତିନାଟ୍ୟର ଏକନିଷ୍ଠ ଅନୁଧ୍ୟାନରୁ ମନେହୁଏ ଏମାନେ ଶାସ୍ତ୍ରୀୟ ‘ହରିଶଙ୍କ’ର ନିକଟବର୍ତ୍ତୀ । ଏଥିରେ ଥିବା ଭାବାବେଗ ଅନେକ ସ୍ଥଳରେ ସାଧାରଣଙ୍କୁ ଅସାଧାରଣ, ସାମାନ୍ୟକୁ ଅସାମାନ୍ୟରେ ପରିଣତ କରିଛି । ସସୀମ ଦୀପଶିଖାରେ ଅସୀମ ଉଦ୍‌ଭାସିତ ହୋଇଉଠିଛି । ତାଳ,

ଲକ୍ଷ୍ୟ, ମାତ୍ରା ଯାହେଉନା ଆଙ୍ଗିକ ପ୍ରକୃତିରେ ନାଟ୍ୟକାର ମାନସିଂଙ୍କ କବିପ୍ରାଣ ପ୍ରଭାବ ବିସ୍ତାର କରିଛି । ତେଣୁ ଏ ସମସ୍ତଙ୍କୁ କବି ମନର, କାବ୍ୟ ଭାବନାର ଏକ ସଫଳ ଆଙ୍ଗିକ ପ୍ରକାଶ କହିବା ଅଧିକ ଯୁକ୍ତିଯୁକ୍ତ ହେବ । ଶ୍ରୀଯୁକ୍ତ ନିତ୍ୟାନନ୍ଦଙ୍କର ଭାଷାରେ, "କେତେଗୁଡ଼ିଏ ନାଟକ କେବଳ ପଢ଼ିବା ପାଇଁ ଲେଖା, ସେମାନଙ୍କର ଅଭିନୟ ଦ୍ୱାରା ସାଧାରଣ ଲୋକଙ୍କର ଚିତ୍ତବିନୋଦନ ନାନା କାରଣରୁ ଅସମ୍ଭବ ଓ ସେମାନଙ୍କ କାବ୍ୟରସ ଗ୍ରହଣ ହିଁ ସେମାନଙ୍କୁ ଉପଭୋଗ କରିବାର ଏକମାତ୍ର ଭିତ୍ତି ହୋଇପାରେ ।

ଉପରୋକ୍ତ ଗୀତିନାଟ୍ୟ ବ୍ୟତୀତ ସ୍ୱତନ୍ତ୍ର ଭଙ୍ଗୀରେ ରୂପାୟିତ 'ଦୁର୍ଭିକ୍ଷ' ଓ 'ପ୍ରକାଶିନୀ' ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରେ । ଏ ଦୁଇଟିଙ୍କୁ କବି-ନାଟ୍ୟକାର ମାନସିଂ ନିଜେ କାବ୍ୟ ନାଟିକା ନାମରେ ନାମିତ କରିଛନ୍ତି । ଶାସ୍ତ୍ରୀୟମତେ ନାଟିକାର କଥାବସ୍ତୁ ଇତିହାସସମ୍ଭୂତ ବା କଳ୍ପିତ । ଏଥିରେ ଅଙ୍କ ସଂଖ୍ୟା ଚାରି ଏବଂ ସ୍ତ୍ରୀ ଚରିତ୍ରର ପ୍ରାଚୁର୍ଯ୍ୟ ଦୃଷ୍ଟ ହୁଏ । ଏହାର ନାୟକ ପ୍ରଖ୍ୟାତନାମା ଧୀର ଲଳିତ ରାଜା ଏବଂ ନାୟିକା ଅପୂର୍ବ ରୂପ-ଲାବଣ୍ୟମୟୀ ସଙ୍ଗୀତପ୍ରବୀଣା ନବାନୁରାଗବତୀ ରାଜକନ୍ୟା । ଏହାର ଅଙ୍ଗୀରସ, ଶୃଙ୍ଗାର ଏବଂ ବୃତ୍ତି କୌଶିକୀ (କୋମଳ ମଧୁର) । ଏଇ ଭିତ୍ତିରେ ନାଟିକା ଦୁଇଟି ବିରଚିତ ।

'ପ୍ରକାଶିନୀ' ନାଟିକାର ରଚନା ସମୟ ପ୍ରାୟ ୧୯୨୯-୩୦, ଲେଖକ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ଲୋକଶ୍ରୁତି ଏବଂ ଖଣ୍ଡକାବ୍ୟ 'ଚିଲିକା' ବର୍ଣ୍ଣିତ "ଦ୍ୱୀଜକନ୍ୟା ଲକ୍ଷ୍ମୀ' ଆଖ୍ୟାନ, କାବ୍ୟରୂପ ପାଇବା ପାଇଁ କବି ମାନସିଂଙ୍କୁ ପ୍ରଭାବିତ ଓ ପ୍ରଲୁବ୍ଧ କରିଛି । ଲୋକଶ୍ରୁତିର ଏଇ ରୋମାଣ୍ଟିକ୍ ଭାବଟି ସ୍ରଷ୍ଟା ମାନସରେ ସଞ୍ଚାରିତ ହେବା ପରେ ଏହାର ରୂପଲେଖ ନାଟିକା ରୂପରେ ଆତ୍ମପ୍ରକାଶ କରିଛି । ନାଟିକାର ଅଧିକାଂଶ ଲକ୍ଷଣ ଏଥିରେ ପ୍ରତିଫଳିତ ହୋଇଛି । ତେଣୁ ଏହାକୁ ଏକ ସଫଳ ନାଟିକା କୁହାଯିବା ପାଇଁ ଯଥେଷ୍ଟ କାରଣ ଅଛି । ନାଟିକାଟିର ମୁଖ୍ୟ ଚରିତ୍ର ହେଲେ ଦ୍ୱିଜକନ୍ୟା ଲକ୍ଷ୍ମୀ, ଗୋପାଳକୃଷ୍ଣ, ବେଲେଶ୍ୱର ପତିପତ୍ନୀ । ଏତଦ୍‌ବ୍ୟତୀତ ଗ୍ରାମବାସୀ, ସୁନାଆ, ପୂଜକ, ଲକ୍ଷ୍ମୀର ଅନ୍ତରଙ୍ଗ ସଖୀଗଣ ଆବଶ୍ୟକୀୟ ଚରିତ୍ର ଭାବେ ସ୍ଥାନ ପାଇଛନ୍ତି । ସମଗ୍ର ନାଟିକାଟିର ପରିକଳ୍ପନା ପାଇଁ ସତ୍ୟବାଦୀ ମନ୍ଦିର ସନ୍ନିକଟ କେତୋଟି ସ୍ଥାନକୁ ଅଭିନୟ କ୍ଷେତ୍ର ରୂପେ ଲେଖକ ସୂଚିତ କରିଛନ୍ତି । ଯଥା :—ବକୁଳବନ, ମନ୍ଦିର, ବେଲେଶ୍ୱର ଅଗଣା ଓ ସୁନାଆ ଘର । ବେଲେଶ୍ୱର ଅଗଣା ଓ ସୁନାଆ ଘର ପଶ୍ଚାତ୍ ମଞ୍ଚ ସାଜସଜ୍ଜା ପାଇଁ ଅବସର ଦେବାକୁ ଏକାଧିକବାର ବ୍ୟବହାର ହୋଇଛି । ଫଳରେ କାବ୍ୟ ନାଟିକାଟିର ଆଠୋଟି ଦୃଶ୍ୟକୁ ଯଥାକ୍ରମରେ ମଞ୍ଚସ୍ଥ କରିବା ପାଇଁ, ଆଲୋକସଜ୍ଜା, ଦେବତାର ଆବିର୍ଭାବ ପରି କେତୋଟି ମଞ୍ଚ ମାୟାର ସୁନ୍ଦର ପରିକଳ୍ପନା କରାଯାଇଛି ।

ନାଟିକାର ବିଷୟବସ୍ତୁ :—ଲୋକଶ୍ରୁତି ଅନୁସାରେ ଦେବୀଶୂନ୍ୟା ମନ୍ଦିରର ଦେବତା ଗୋପାଳ କୃଷ୍ଣ, ଦ୍ୱିଜ କନ୍ୟା ଲକ୍ଷ୍ମୀର ଭକ୍ତି ଓ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୁଅନ୍ତି । ଅନେକ ଅଲୌକିକ ଘଟଣା ସଂଗଠିତ ହୁଏ । ସରଳା ଲକ୍ଷ୍ମୀ ନାଁରେ ତୁଣ୍ଡ ବାଇଦ ରଟିଯାଏ ସହସ୍ର କୋଶ । ତେଣୁ ଦେବୀ ପ୍ରତିମା ନିର୍ମାଣର ଆୟୋଜନ ହୁଏ । ପ୍ରତିମା ନିର୍ମାଣ ଦିନଠାରୁ ଲକ୍ଷ୍ମୀ ହୁଏ ଜ୍ୱରାକ୍ରାନ୍ତା । ଯେଉଁଦିନ ପ୍ରତିମାର ଜୀବନ୍ୟାସ ହୁଏ ସେଇଦିନ ସେଇ ମୁହୂର୍ତ୍ତରେ ଲକ୍ଷ୍ମୀ ମରଶରୀର ବିସର୍ଜନ କରେ । ଜ୍ୱରାକ୍ରାନ୍ତା ଲକ୍ଷ୍ମୀର ଆବେଦନ ଶୁଣି ଠାକୁର ତାଙ୍କ ପାଖକୁ ନେଇଥିଲେ କି ନାହିଁ ? ପ୍ରକୃତରେ ଲୋକାପବାଦର ଅବସାଦ ହେଲା କି ନାହିଁ ? ସେସବୁର ଏକ ଅଲୌକିକ ସମାଧାନ ନାଟିକାଟିର ଶେଷରେ ଶେଷରେ ସମାହିତ ହୋଇଛି । ଲକ୍ଷ୍ମୀ ଆଉ ମାନବୀ ନୁହେଁ—ସେ ଦେବୀ—ପୂଜ୍ୟା । ମାନବୀୟ କଳ୍ପନାର ଅତିକ୍ରାନ୍ତା ସେ ।

ନାଟିକାଟିରେ ଲୋକପ୍ରଚଳିତ ଏ ବିଷୟବସ୍ତୁ ସହିତ ବଂଶୀନିନାଦ ନୂପୁର ନିକ୍ୱଣ, ହୃଦୟ ଚନ୍ଦ୍ରରେ ବକୁଳ ବନ, ବକୁଳ ବନର ମର୍ମର, ସଂଗୀତର ସୁରଝଙ୍କାର ଇତ୍ୟାଦି ରହସ୍ୟମୟ ରୋମାଞ୍ଚକର ମୁହୂର୍ତ୍ତକୁ ସୁନିବିଡ଼ ଭାବେ ସମନ୍ୱିତ କରାଯାଇଛି । ନାଟିକାଟିରେ ରୋମାଣ୍ଟିକ ଚିନ୍ତାର ସଫଳ ରୂପାୟନ ନାଟିକାଟିର ସାର୍ଥକତାରେ ଯେତିକି ସାହାଯ୍ୟ କରେ, 'ଦୁର୍ଭିକ୍ଷ' ପାଇଁ ଏଇ ମାଧ୍ୟମକୁ ଉପଯୋଗ କରିବାକୁ ସେତିକି ଉତ୍ସାହିତ କରେ—ଯଦିଓ 'ଦୁର୍ଭିକ୍ଷ'ର ଚରିତ୍ର ଓ ପରିବେଶ ସ୍ୱତନ୍ତ୍ର ତଥାପି ଶୈଳୀ ଏକ ଓ ଅଭିନ୍ନ ।

ନାଟିକା 'ଦୁର୍ଭିକ୍ଷ'ର ବିଷୟବସ୍ତୁ ଓଡ଼ିଶାର ପରିଚିତ ନ' ଅଙ୍କ ଘଟଣା । ଅଭାବ, ଅନଟନ, କ୍ଷୁଧା, ହା ଅନ୍ନର ଚିତ୍କାର ଓଡ଼ିଶା ପାଇଁ ବରଂ ଅଧିକ ଐତିହାସିକ । ଚରିତ୍ର ସନାତନ ପ୍ରତ୍ୟେକ ଓଡ଼ିଆ ନିକଟରେ ପରିଚିତ । ପରିଚିତ ସନାତନ କାହାଣୀର ଆଦର୍ଶ, ନଅଙ୍କର ବର୍ଣ୍ଣନା ଓ ଚିତ୍ରଣ ଲେଖକଙ୍କୁ ଆକ୍ରାନ୍ତ କରିଥିବା ସମୟରେ ଲେଖକଙ୍କ ଆଖିରେ ପଡ଼େ ଡକ୍ଟର ଆଇଜାକ୍ ସାନ୍ତ୍ରାଙ୍କ ସମ୍ପାଦିତ 'ପ୍ରଭାତ'ରେ ଅନନ୍ତ ଦାସଙ୍କ ଆତ୍ମଜୀବନୀ । ସେଥିରେ ବର୍ଣ୍ଣିତ କ୍ଷୁଧାର ଚିତ୍ର ଲେଖକଙ୍କୁ ପ୍ରଭାବିତ କରିଥିବା ଲେଖକଙ୍କ ଉକ୍ତିରୁ ଜଣାଯାଏ । ଏ ସମସ୍ତକୁ ଏକତ୍ରିତ କରି 'ଦୁର୍ଭିକ୍ଷ' ରୂପାୟିତ । ସମଗ୍ର ନାଟକଟିରେ କ୍ଷୁଧା, କାନ୍ଦ, ଯନ୍ତ୍ରଣା ଓ ଅଭାବ-ବୋଧର ଚିତ୍ର ଚିତ୍ରିତ ହେବା ସଙ୍ଗେ ସଙ୍ଗେ ସନାତନକୁ ପୀଠିକା କରି ଏକ ମହତ୍ତର ଚିନ୍ତା ରୂପାୟିତ ହୋଇଛି ଯାହା ମାନବିକ ଭାବବୋଧରେ କମ୍ପନ ସୃଷ୍ଟି କରେ ।

କାବ୍ୟ ନାଟିକାର ସାତୋଟି ଦୃଶ୍ୟରେ ବଳଦେବ ମନ୍ଦିର, ସନାତନ ଘର ଓ ପଥକୁ ନାଟିକାର ଅଭିନୟ ପାଇଁ, ନିର୍ଦ୍ଦିଷ୍ଟ ସ୍ଥାନ ରୂପେ ଗ୍ରହଣ କରାଯାଇଛି ।

ଏଥିରେ ଗୃହେଟି ନାରୀ, ଆଠୋଟି ପୁରୁଷ ଏବଂ କାଙ୍ଗାଳଦଳ ଚରିତ୍ର ରୂପେ ସ୍ଥାନ ପାଇଛନ୍ତି ।

ନାଟିକାଟିର ପ୍ରଥମ ଦୃଶ୍ୟରୁ ତୃତୀୟ ଦୃଶ୍ୟ ପର୍ଯ୍ୟନ୍ତ ବ୍ରାହ୍ମଣ ସନାତନ ପରିବାରରେ ଅଭାବ ସତ୍ତ୍ୱେ, ସାତ୍ତ୍ୱିକତାର ଆନେକ. ସ୍ନେହ, ଶ୍ରଦ୍ଧା, ଭକ୍ତିର ଉତ୍ସ ଅତୁଟ ରହିଥିବା ଚିତ୍ର ବର୍ଣ୍ଣିତ ହୋଇଛି । ଅନ୍ୟ ପକ୍ଷରେ ନନ୍ଦ ଓ ଭାଣୀ ଚରିତ୍ର ମାଧ୍ୟମରେ ଅଭାବ, ଅନଟନ ଆତଙ୍କଗ୍ରସ୍ତ ପରିସ୍ଥିତିର ପରିଚୟ ପରିବେଷଣ କରାଯାଇଛି । ଶିବାନନ୍ଦ ଓ ଜୀବନାନନ୍ଦ କଥୋପକଥନରେ ହିନ୍ଦୁଧର୍ମରେ ଥିବା ରକ୍ଷଣଶୀଳତାର ସମ୍ୟକ୍ ସୂଚନା ମଧ୍ୟ ଦିଆଯାଇଛି । କାବ୍ୟ ନାଟିକାର ଚତୁର୍ଥ ଓ ପଞ୍ଚମ ଦୃଶ୍ୟରେ କଥାବସ୍ତୁରେ କେବଳ ନାଟକୀୟ ପରିସ୍ଥିତି ଓ ମୁହୂର୍ତ୍ତ ସୃଷ୍ଟି ହୋଇନି ବରଂ ଆବେଗ-ଆଦର୍ଶର ସମନ୍ୱୟ ଭିତରେ ଦର୍ଶକମାନଙ୍କ ନିକଟରେ ସାଧାରଣ ଓ ଅନନ୍ୟସାଧାରଣଙ୍କୁ ଏକାକାର କରିଦିଆଯାଇଛି । ସନାତନ ଭିକ୍ଷା ମାଗି ଫେରିବାବେଳେ କେତେକ ଅଭାବଗ୍ରସ୍ତ ଲୋକ ତା ମନରେ ପ୍ରେମ କରିବା ପ୍ରଲୋଭନ ସୃଷ୍ଟି କରିଥିଲେ । ମାତ୍ର ସନାତନ ଏହାକୁ ଏଡ଼ିଦେବାରୁ ବରକ୍ତରେ ଭୋଖିଲା କାଙ୍ଗାଳମାନେ ତା'ଠାରୁ ସଂଗୃହୀତ ଚାଉଳ ଛଡ଼ାଇ ନେଇଛନ୍ତି । ଠିକ୍ ଏତିକବେଳେ ପାଦ୍ରୀଦ୍ୱୟ ଆସି ଲୋକଙ୍କୁ ଚାଉଳ ସାହାଯ୍ୟ ଦେଇ ଧର୍ମାନ୍ତର ହେବାକୁ ପ୍ରବର୍ତ୍ତାଇଛନ୍ତି । କେତେକ ସ୍ୱୀକୃତିସୂଚକ ଭାବ ଦେଖାଇଛନ୍ତି । ମାତ୍ର ସନାତନ 'ସ୍ୱଧର୍ମେ ନିଧନ ଶ୍ରେୟ'କୁ ଆଦର୍ଶ ମଣି ତାହାହିଁ ପ୍ରକାଶ କରିବାରୁ ପାଦ୍ରୀଦ୍ୱୟ ବହୁ ଅବାନ୍ତର ଯୁକ୍ତି ଦର୍ଶାଇ ଆହ୍ୱାନ ଦେଇଛନ୍ତି । ଗଣର ଡାକ, ଜବ ସେବାରେ ବିମୁଗ୍ଧ ସନାତନର ଆହ୍ୱାନର ଉତ୍ତରରେ ସଂଗୃହୀତ ତଣ୍ଡୁଳ କାଙ୍ଗାଳ ଦଳ ଉଦ୍ଦେଶ୍ୟରେ ଦେଇଦେଇଛି । ହତବାକ୍ ହୋଇଛନ୍ତି ପାଦ୍ରୀଦ୍ୱୟ । ଏହି ଚେତନା ଉପସ୍ଥିତ କେତେକ ହୃଦୟରେ ପରିବର୍ତ୍ତନ ଆଣିଛି । ଧର୍ମାନ୍ତରକୁ ଅସ୍ୱୀକାର କରି ସେମାନେ ସ୍ଥାନ ପରିତ୍ୟାଗ କରିଛନ୍ତି । ପଞ୍ଚମ ଦୃଶ୍ୟରେ ବେପଥୁ ସନାତନ ମୃତ୍ୟୁବରଣ କରିଛି ଉଦର ଜ୍ୱାଳାରେ । ଅଥଚ ଜୀବନାନନ୍ଦଙ୍କ ଅନ୍ନ ନିଜ ପାଇଁ ଗ୍ରହଣ କରିପାରିନାହିଁ । କାରଣ ତାର କର୍ତ୍ତବ୍ୟ ରହିଛି—କାରଣ, ମଣିଷ ତା ପାଇଁ ଏକାନ୍ତ ନୁହେଁ । ଫଳରେ କର୍ମ, କର୍ତ୍ତବ୍ୟ, ଧର୍ମ ଓ ତ୍ୟାଗ ନିକଟରେ ମୃତ୍ୟୁ ତୁଚ୍ଛାତିତୁଚ୍ଛ ଏହାହିଁ ପ୍ରତିପାଦିତ ହୋଇଛି । ଶେଷ ଦୃଶ୍ୟରେ ତରୁଣ ସନ୍ନ୍ୟାସୀ ଜୀବନାନନ୍ଦଙ୍କ ସନାତନ କାହାଣୀ ବର୍ଣ୍ଣନାରେ ସ୍ୱାମୀ ଶିବାନନ୍ଦଙ୍କ ଅନ୍ତର ଥରିଉଠିଛି । ସେ ତାଙ୍କ ମନରେ ଥିବା ରକ୍ଷଣଶୀଳତାର ଆବୁରୁକୁ ଫିଙ୍ଗି ଦେଇ ସନାତନକୁ ପ୍ରଣାମ କରିଛନ୍ତି । ସମଗ୍ର କାବ୍ୟ ନାଟକଟିରେ ଏହିଭଳି ଅନେକ ଦ୍ୱନ୍ଦ୍ୱ ଓ ତାର ସମାଧାନର ଚିତ୍ର ଦିଆଯାଇଛି । ମଙ୍ଗଳ ହୋମ ହୋଇ ନଥିବାରୁ ଶାଶୁ-ଶ୍ୱଶୁର ଘରକୁ ଆସିପାରି ନଥିବା ସନାତନର ପତ୍ନୀ ଯେଉଁଭଳି ଭାବେ ଶେଷ ମୁହୂର୍ତ୍ତରେ ସନାତନକୁ ହଠାତ୍ ଦେଖିଛି ଏବଂ ସନାତନର ମୃତ୍ୟୁରେ ତାର ଯେପରି ଆକସ୍ମିକ ମୃତ୍ୟୁ ହୋଇଛି—

ଏକାନ୍ତ ଅସମ୍ଭବ ନହେଲେ ମଧ୍ୟ ନିତାନ୍ତ ନାଟକୀୟ-ଅସ୍ୱୀକାର କରି ହୁଏନା । ତଥାପି କାବ୍ୟ ନାଟିକାଟିର କାବ୍ୟ ଯାଥାର୍ଥ୍ୟ ଦୃଷ୍ଟିରୁ ଏହାକୁ ଗ୍ରହଣ କରାଯାଇପାରେ ।

କାବ୍ୟ ନାଟିକାଟିର ଅମିତ୍ରାକ୍ଷର ଛନ୍ଦ ଏବଂ ଶବ୍ଦ ସଂଯୋଗ ପାଠମୁଖୀ ହୋଇପାରିନି । ଏହାର କାରଣ ଚରିତ୍ର ଅପେକ୍ଷା ନାଟିକାଟିରେ ଚେତନାର ପ୍ରାଧାନ୍ୟ ଦେଖିବାକୁ ମିଳେ । ଏଠାରେ କବି ଲେଖନୀ କାବ୍ୟମୁଖୀ ହେବାରେ ଆଶ୍ଚର୍ଯ୍ୟ ବା କଣ ଅଛି ? ତେଣୁ ସମସ୍ତ ପ୍ରକାର ନାଟକୀୟ ଦ୍ୱନ୍ଦ୍ୱ ଉତ୍କଣ୍ଠା ଏବଂ ଗତିର ପ୍ରଖରତା ସତ୍ତ୍ୱେ ସଂଳାପ ଓ ଚେତନା ଦୃଷ୍ଟିରୁ ନାଟିକାଟି ଅଧିକ କାବ୍ୟପ୍ରାଣ ଏବଂ କାବ୍ୟ ସ୍ପନ୍ଦନକୁ ସଂବର୍ଦ୍ଧନ କରେ ।

ଏ ସମସ୍ତ ପର୍ଯ୍ୟାଲୋଚନା ଭିତରେ ମନକୁ ଆସେ—ନାଟକ ବା ନାଟିକା ତ କାବ୍ୟ ଅନ୍ତର୍ଗତ । ତେବେ ଲେଖକଙ୍କଦ୍ୱାରା ସୂଚିତ କାବ୍ୟ ନାଟିକା କଣ ? ପ୍ରସଙ୍ଗ ଦୃଷ୍ଟିରୁ କ୍ଷୁଦ୍ରରେ କୁହାଯାଇପାରେ ଯେ ଲେଖକ ଏଗୁଡ଼ିକର ମଞ୍ଚ ସଫଳତା ପ୍ରତି ସଚେତନ ନୁହଁନ୍ତି । ବରଂ କାବ୍ୟ ରୂପ, ନାଟିକା—ଆଙ୍ଗିକ ସାହାଯ୍ୟରେ ରୂପାୟିତ ହୋଇଛି । ତେଣୁ ଏକ ଗଭୀର ପ୍ରତ୍ୟୟ ସହିତ ଏହାକୁ କାବ୍ୟ ନାଟିକା ବୋଲି ଘୋଷଣା କରାଯାଇଛି । ଫଳରେ କବି ମାନସିଂଙ୍କ 'ଓସ୍ତାଦୀ' ନାଟ୍ୟକାର 'ଓସ୍ତାଦୀ'କୁ ସ୍ପଷ୍ଟ ଭାବେ ନାଟିକାରେ ବଦଳି ପଡ଼ି ନାହିଁ କି ?

ଗୀତିନାଟ୍ୟ, ନାଟିକାକୁ ଛାଡ଼ି କବି ନାଟ୍ୟକାର ମାନସିଂଙ୍କର ଗୋଟିଏ ଏକାଙ୍କିକା ପାଠକମାନଙ୍କ ଦୃଷ୍ଟିକୁ ଆକର୍ଷଣ କରେ । ଏକାଙ୍କିକାଟିର ରୂପାୟନ ସମୟ ହେଉଛି ୧୯୫୧ । ସାଧାରଣତଃ ଏକାଙ୍କିକାଗୁଡ଼ିକ ଆକାର ଗତ ଉପସ୍ଥାପନା, ଘଟଣା ପ୍ରବାହ ପ୍ରାରମ୍ଭ ଏବଂ ପରିଣତି ଦୃଷ୍ଟିରୁ ସ୍ୱତନ୍ତ୍ର ହେଲେ ମଧ୍ୟ ନାଟ୍ୟକଳାର ଅଙ୍ଗବିଶେଷ । ତେଣୁ କବି ନାଟ୍ୟକାର ମାନସିଂଙ୍କ ଏକାଙ୍କିକା 'ଶାସନ ଚକ୍ର' ଆଲୋଚ୍ୟ ।

୧୯୫୧ ବେଳକୁ ବହୁସଂଖ୍ୟକ ଏକାଙ୍କିକା ସୃଷ୍ଟି ହୋଇ ନଥିଲେ ମଧ୍ୟ ସଫଳ ଏକାଙ୍କୀ ଲେଖକ ଭାବେ କେହି କେହି ପ୍ରତିଷ୍ଠା ଲାଭ କଲେଣି । ଏକାଙ୍କିକାର ଲୋକପ୍ରିୟତା ବେଶ୍ ଆସନ ଜମେଇ ବସିଲାଣି । ଏତିକିବେଳକୁ ନାଟ୍ୟକାର କବି ମାନସିଂ ଦଶୋଟି ଚରିତ୍ର ଏବଂ ଶବବାହୀ ଦଳ, ବାଳକଗଣ ଓ ବାଳିକାଗଣଙ୍କ ମାଧ୍ୟମ କରି 'ଶାସନ ଚକ୍ର' ସୃଷ୍ଟି କରନ୍ତି । ଏଥିରେ ଚାରୋଟି ସ୍ଥାନର ସୂଚନା ଅଛି । ଏବଂ ସମୁଦାୟ ଦୃଶ୍ୟ ସଂଖ୍ୟା ଆଠୋଟି । ଲେଖକଙ୍କର ସୂଚନା ମତେ ମଞ୍ଚ ସଜ୍ଜୀକରଣ କରାଗଲେ ଏହା ଅବାରିତ ଭାବେ ମଞ୍ଚସ୍ଥ ହେବା ସମ୍ଭବ ନୁହେଁ । କାରଣ ପ୍ରଥମ ତିନୋଟି ଦୃଶ୍ୟ ଯଥାକ୍ରମେ ରାଜଭବନ, ଲିଭିଙ୍ଗ୍ ରୁମ୍, କବାଟୀରକୁ

ଉପସ୍ଥାପନରେ ଗତି ବ୍ୟାହତ ହେବା ସ୍ୱାଭାବିକ । ପୁଣି ଏତେବେଳକୁ ଏକାଙ୍କିକାଟିରେ ଏତେଗୁଡ଼ିଏ ଦୃଶ୍ୟ, ଚରିତ୍ରର ବହୁଳତା ପ୍ରଯୋଜନାରେ ମଧ୍ୟ ବାଧା ସୃଷ୍ଟି କରେ । ବିଷୟବସ୍ତୁରେ ମଧ୍ୟ ସବିଶେଷ ଆକର୍ଷଣୀୟ ଭାବ ଦୃଷ୍ଟିଗୋଚର ହୁଏ ନାହିଁ । ସମ୍ମାନୀୟ କବି ଯେଉଁ ସମ୍ମାନ ଏବଂ ସାହାଯ୍ୟ ପାଇବା କଥା ତାହା କାହାର ଦୟା ବା ଦାନ ନୁହେଁ । ଏହା ଏକ ଜାତୀୟ କର୍ତ୍ତବ୍ୟ । ଏହାକୁ ଭିତ୍ତି କରି ଏକାଙ୍କିକାଟି ଆରମ୍ଭ ହୋଇଅଛି । ମାତ୍ର ଆଇନ୍‌କାନୁନ୍‌ର ଯୁଆଳୀରେ ବନ୍ଧା ଜନମଙ୍ଗଳ ସ୍ରଷ୍ଟାର ଚିନ୍ତା-ଚେତନା ଯେଭଳି ଶାସନର ରଥଚକ୍ରତଳେ ନିଷ୍ପେଷିତ ହେଉଛି ତାହା ଦେଖାଇବା ପାଇଁ ପୂର୍ବରୁ ସ୍ୱୀକୃତ ହୋଇଥିବା ଜାତୀୟ କର୍ତ୍ତବ୍ୟ-ବୋଧ ଯେଭଳି ଫାଇଲ୍ ଫାଶରେ ଛନ୍ଦା ହୋଇଯାଇଛି ଏବଂ ଫାଇଲ ଗଣ୍ଠିକୁ ଲାଗି ଲାଗି ଫିଟାଇଲାବେଳକୁ ଯେଉଁଭଳି କବି ଜୀବନ-ସଂଘର୍ଷରେ ଅତି ଦୟନୀୟ ଭାବେ ଇହଧାମ ତ୍ୟାଗ କରିଛନ୍ତି, ତାର ଚିତ୍ର ଏକାଙ୍କିକାଟିରେ ଦିଆଯାଇଛି । ଏହାହିଁ ଶାସନଚକ୍ର ? ଏ ପ୍ରକାର ଶିଥିଳତାର ପ୍ରତିବାଦ କରିବାକୁ ଶିକ୍ଷକ-ସନ୍ନ୍ୟାସୀ-ଶିବ୍ୟାନନ୍ଦ ଗ୍ରାମମାନଙ୍କୁ ଧରି ଆଗେଇ ଆସିଛନ୍ତି । ଲେଖକ ସ୍ୱାଧୀନତା ପରବର୍ତ୍ତୀ ଶାସନକାଳର ତ୍ରୁଟି ବିଚ୍ୟୁତିକୁ ଦର୍ଶାଇବାକୁ ଏହାକୁ ସୃଷ୍ଟି କରିଥିଲେ ମଧ୍ୟ ଦର୍ଶାଇଥିବା ପ୍ରତିବାଦ ପଦ୍ଧତି ସ୍ୱାଧୀନତା ପୂର୍ବର ପଦ୍ଧତି ପରି ମନେହୁଏ । ସ୍ରଷ୍ଟାର ଦୂରଦୃଷ୍ଟି ପରିବର୍ତ୍ତିତ ପଦ୍ଧତିର ସୂଚନା ଦେଇଥିଲେ ହୁଏତ ଏହା ଯେପରି ନୂତନ ହୋଇଥାଆନ୍ତା ସେହିପରି ହୋଇଥାଆନ୍ତା ବିପ୍ଳବାତ୍ମକ । ଅନ୍ୟାନ୍ୟ ଦୃଷ୍ଟିରୁ ଏକାଙ୍କିକାର ସଫଳତା ପାଇଁ ଯେଉଁ ତୀକ୍ଷ୍ଣ ଐକ୍ୟ ଆକସ୍ମିକତା, ବିସ୍ମୟବୋଧ ଏବଂ ଶକ୍ତିଶାଳୀ ସଂଳାପର ଆବଶ୍ୟକତା ହୁଏ, ତାହା 'ଶାସନ ଚକ୍ର'ରେ ଦେଖିବାକୁ ମିଳେ ନାହିଁ, ବରଂ ଶିବ୍ୟାନନ୍ଦ, କବିପତ୍ନୀ; କବି, ସୁକାନ୍ତଙ୍କ ସଂଳାପରେ ଦିଆଯାଇଥିବା ଭାବପ୍ରବଣତାରେ କବି ମାନସିଂହଙ୍କ ମନ ପ୍ରତିଫଳିତ । ତେଣୁ ବ୍ୟାହତ ଗତି ଏହି ଏକାଙ୍କିକାଟିକୁ ମଞ୍ଚରେ ଦେଖିବା ଅପେକ୍ଷା ପଢ଼ିବାକୁ ଅଧିକ ଭଲ ଲାଗେ ।

ଉପରୋକ୍ତ ପର୍ଯ୍ୟାଲୋଚନାରେ କବି ନାଟ୍ୟକାର ମାନସିଂହଙ୍କ ପ୍ରତିଭା ସୀମିତ ନୁହେଁ । ନାଟ୍ୟକାର ପ୍ରତିଭା ଆଲୋଚନା କଲାବେଳେ ଲେଖକଙ୍କ ତିନୋଟି ପୂର୍ଣ୍ଣାଙ୍ଗ ମୌଳିକ ନାଟକ ଏବଂ ଗୋଟିଏ ଅନୂଦିତ ନାଟକ ପାଠକର ଦୃଷ୍ଟି ଆକର୍ଷଣ କରେ । ସୃଷ୍ଟି କ୍ରମରେ ସେମାନେ ହେଲେ 'ନଷ୍ଟ ନୀଡ଼'—ସାମାଜିକ ନାଟକ—ସୃଷ୍ଟି ସମୟ ୧୯୩୮; 'ବାରବାଟୀ' ଐତିହାସିକ ନାଟକ; 'ବୁଦ୍ଧ' ଜୀବନୀ ନାଟକ—ସୃଷ୍ଟି କାଳ ୧୯୫୧ ଏବଂ ପରବର୍ତ୍ତୀ ନାଟକ ହେଉଛି ଅନୂଦିତ 'ଅଥେଲୋ' ।

**ନଷ୍ଟନୀଡ଼ :—**

ନଷ୍ଟନୀଡ଼ର ସୃଷ୍ଟି ପଶ୍ଚାତରେ ପ୍ରତିଯୋଗିତା ଭାବ ରହିଥିବା ଲେଖକଙ୍କ ମୁଖବନ୍ଧରୁ ଜଣାଯାଏ । ଓଡ଼ିଆରେ ସାମାଜିକ ନାଟକ ଲେଖିବା ପାଇଁ ଓଡ଼ିଆ

ସାହିତ୍ୟ ସମାଜର ଆହ୍ୱାନ କରି ନାଟ୍ୟକାର ମାନସିଂହଙ୍କ ଏକ ପୂର୍ଣ୍ଣାଙ୍ଗ ସାମାଜିକ ନାଟକ 'ନଷ୍ଟନୀଡ଼' ରଚନାରେ ବ୍ରତୀ କରିଛି । ଅବଶ୍ୟ ଏହାର ବହୁପୂର୍ବରୁ ଅଧ୍ୟୟନ ସମୟରେ ଲେଖକ ସେକ୍ସପିୟର, ଯ', ଇବସନ୍ ପ୍ରଭୃତି ପ୍ରଖ୍ୟାତ ନାଟ୍ୟକାର-ମାନଙ୍କ ସୃଷ୍ଟିଦ୍ୱାରା ସମ୍ପୂର୍ଣ୍ଣ ପ୍ରଭାବିତ ହୋଇଥିବା ମୁଖବନ୍ଧରେ ସୂଚିତ କରିଛନ୍ତି । ପାଶ୍ଚାତ୍ୟର ବଳିଷ୍ଠ ବିୟୋଗାନ୍ତକ ନାଟକ କରି ମନରେ ଯେଉଁ କମ୍ପନ ସୃଷ୍ଟି କରିଥିଲା ତାର ସତ୍ୟତା ମାନସିଂହଙ୍କ ମନରେ ବହୁଦିନ ଯାଏ ଥିଲା । ୧୯୩୮ରେ 'ନଷ୍ଟନୀଡ଼' ସମାପ୍ତ କରି ମୁଖବନ୍ଧରେ ନାଟ୍ୟକାର କହନ୍ତି—"XXX ଟ୍ରାଜେଡ଼ିର ଘ୍ରମକାନ୍ତ ମହିମା ଅନୁଭବ କରାଯାଇପାରେ । ଦୁଃଖର, ପତନର, ଅନୁତାପର ଯେ ଗୋଟାଏ ଅପୂର୍ବ ସୌନ୍ଦର୍ଯ୍ୟ ଅଛି ତାହା ଆଉ ବୁଝାଇବାକୁ ପଡ଼ିବ ନାହିଁ । XX ବୋଧହୁଏ ଓଡ଼ିଆରେ ଏହା ପ୍ରଥମ ଟ୍ରାଜେଡ଼ୀ ।" ବସ୍ତୁତଃ 'ନଷ୍ଟନୀଡ଼' ସୃଷ୍ଟି ସମୟକୁ ସାମାଜିକ ନାଟକ ନ ଥିଲା ନୁହେଁ, ମାତ୍ର ତାର ସୌନ୍ଦର୍ଯ୍ୟ, ଗମ୍ଭୀରତା, ବ୍ୟାପକତା ତଥା ବିୟୋଗାନ୍ତକ ଗମ୍ଭୀରତା ପୌରାଣିକ ବା ଐତିହାସିକ ନାଟକରେ ଥିବା ପରି ନ ଥିଲା । ପାଶ୍ଚାତ୍ୟ ଚେତନା ନେଇ ରଚିତ ବିୟୋଗାନ୍ତକ ସାମାଜିକ ନାଟକ 'ନଷ୍ଟନୀଡ଼' ବିରଳ ।

**ନଷ୍ଟନୀଡ଼ର ବିଷୟବସ୍ତୁ** :—ମଧୁବାବୁ କଟକର କୌଣସି ଏକ ସ୍କୁଲରେ ଶିକ୍ଷକ । ନିଜ ଆଦର୍ଶରେ ସେ ତାଙ୍କର ଏକମାତ୍ର କନ୍ୟା ମାଧୁରୀକୁ ବଢ଼ାଇ ଆଣିଥାନ୍ତି । ମଧୁବାବୁଙ୍କର ଜନୈକ ଛାତ୍ର ଆଦର୍ଶବାଦୀ ପୂର୍ଣ୍ଣ ମାଧୁରୀକୁ ଭଲପାଏ । ମାଧୁରୀ ମଧ୍ୟ ପୂର୍ଣ୍ଣକୁ ଅନୁରାଗ ଦୃଷ୍ଟିରେ ଦେଖେ । ମଧୁବାବୁ ଏ ଦୁହିଁଙ୍କ ବିବାହ କରିଦେଇ ଏକପ୍ରକାର ନିଶ୍ଚିତ ହେବା ଆଶା ମନରେ ବାନ୍ଧିଥାନ୍ତି । ଦିନେ ପୂର୍ଣ୍ଣର ସାଙ୍ଗ ବିତ୍ତଶାଳୀ କିଶୋର ବନ୍ଧୁପତ୍ନୀଙ୍କୁ ଦେଖିବାକୁ ଆସି ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ବିବାହ କରିବାକୁ ମନେ ମନେ ଠିକ୍ କଲେ । ଦୁର୍ଭାଗ୍ୟବଶତଃ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପୂର୍ଣ୍ଣ ସେ ବର୍ଷ ଅକୃତକାର୍ଯ୍ୟ ହେବା ସୁଯୋଗ ନେଇ କିଶୋର ମଧୁବାବୁଙ୍କ ଶଶୁର କୃଷ୍ଣମୋହନବାବୁଙ୍କ ମଧ୍ୟସ୍ଥତାରେ ମାଧୁରୀକୁ ବିବାହ କରେ । ବିବାହ ପରେ ନବପରିଣୀତା ପତ୍ନୀର ମନୋଭାବ ନବୁଝି କିଶୋର ସନ୍ଦେହ କରିବା ଆରମ୍ଭ କରିବାରୁ କ୍ରମେ ତା ପାଇଁ ତନଗୁଞ୍ଜିକ ଘୃଣା ଓ ସନ୍ଦେହରେ ଭାରାକ୍ରାନ୍ତ ହୋଇଉଠନ୍ତି । ଅନ୍ୟ ପକ୍ଷରେ ପୂର୍ଣ୍ଣ ହରିଜନ ବସ୍ତିରେ କିଛି ସଂଗଠନ କାମ କରି ପରୀକ୍ଷା ପାଇଁ କଟକକୁ ଆସି ମାଧୁରୀକୁ ଦେଖେ । ସେ ଦୁହିଁଙ୍କର ଦେଖା କିଶୋର ମନକୁ ଅଧିକ ସନ୍ଦେହୀ କରେ । ଫଳରେ ମାଧୁରୀ ପ୍ରତି ବ୍ୟବହାରରେ ସେ ହୁଏ ଅଧିକ ରୁକ୍ଷ । ନାରୀର ସମ୍ମାନରୁ ବଞ୍ଚିତା ମାଧୁରୀ ଭୋଗ ସାମଗ୍ରୀ ରୂପେ ବଞ୍ଚିବାଟାକୁ ଦୁଷ୍କର ମଣେ । କରେ ଆତ୍ମହତ୍ୟା ।

ନାଟକଟିର ପ୍ରସ୍ତାବନା ଏବଂ ଯବନିକା ପରେ ନଟୀ ଦୃଶ୍ୟକୁ ଛାଡ଼ି ଦେଇ ସମଗ୍ର ନାଟକଟି ପାଞ୍ଚୋଟି ଅଙ୍କରେ ବିଭକ୍ତ ହୋଇଛି । ପ୍ରତ୍ୟେକ ଅଙ୍କର ଦୃଶ୍ୟ

ବିଭାଜନରେ ବିଷମତା ପରିଲକ୍ଷିତ ହୁଏ । ପ୍ରଥମ ଅଙ୍କରେ ଗୋଟିଏ, ଦ୍ୱିତୀୟ ଅଙ୍କରେ ତିନୋଟି, ତୃତୀୟ ଅଙ୍କରେ ପାଞ୍ଚୋଟି, ଚତୁର୍ଥ ଅଙ୍କରେ ଗୋଟିଏ ଏବଂ ପଞ୍ଚମ ଅଙ୍କରେ ପାଞ୍ଚୋଟି ଦୃଶ୍ୟର ବ୍ୟବସ୍ଥା ରହିଛି । ନାଟକଟିରେ ସୂତ୍ରଧର ନଟ ଓ ନଟୀଙ୍କ ଛଡ଼ା ସ୍ତ୍ରୀ ଚରିତ୍ର ସାତୋଟି ଏବଂ ପୁରୁଷ ଚରିତ୍ର କୋଡ଼ିଏଟିର ଅବତାରଣା କରାଯାଇଛି । ଦୃଶ୍ୟ ସଜ୍ଜା ବିଭାଜନାରେ ଅସମତା ଥିଲେ ମଧ୍ୟ ଚତୁର୍ଥ ଅଙ୍କ ଶେଷ ପର୍ଯ୍ୟନ୍ତ ସ୍ଥାନର ଅଖଣ୍ଡତା ପ୍ରତି ଦୃଷ୍ଟି ଦିଆଯାଇଛି । ମାତ୍ର ଶେଷ ଅଙ୍କଟିରେ କିଶୋରର ଗ୍ରାମ ଓ ମଧୁବାବୁଙ୍କ ଘର ଏ ଐକ୍ୟକୁ ସୁରକ୍ଷିତ କରିପାରେନି । ପୁନଶ୍ଚ ପଞ୍ଚମ ଅଙ୍କର ପାଞ୍ଚୋଟି ଦୃଶ୍ୟରେ ପାଞ୍ଚୋଟି ସ୍ଥାନ, ଯଥା :—କିଶୋରର ଗାଁ ଘର, ହଷ୍ଟେଲ ରୁମ୍, ମଧୁବାବୁଙ୍କ ଘର ହଷ୍ଟେଲ ଓ ମଧୁବାବୁଙ୍କ ଘର ଦୃଶ୍ୟକୁ; ଗତି ଅବ୍ୟାହତ ରଖି ଉପସ୍ଥାପିତ କରିବା ମଞ୍ଚ ସଜ୍ଜୀକରଣ ଦୃଷ୍ଟିରୁ ସମ୍ଭବ ନୁହେଁ । ସମଗ୍ର ଚତୁର୍ଥ ଅଙ୍କଟିର ବିଷୟବସ୍ତୁ ପଥ ଦୃଶ୍ୟରେ ଦିଆଯାଇଛି, ଏହା ନାଟ୍ୟକଳା ଦୃଷ୍ଟିରୁ ଯେତିକି ଅସୁନ୍ଦର ସେତିକି ଦୋଷାବହ । 'ନଷ୍ଟନୀଡ଼' ସୃଷ୍ଟି ସମୟକୁ ବହୁ ନାଟକରେ ଦୃଶ୍ୟ ସଜ୍ଜୀକରଣ ସଫଳତା ଦେଖିବାକୁ ମିଳେ । ଚରିତ୍ରର ବହୁଳତା ସବୁବେଳେ ପ୍ରଯୋଜକଙ୍କ ପାଇଁ ଏକ ଏକ ସମସ୍ୟା । ତେଣୁ ଚରିତ୍ର ଓ ସଜ୍ଜା ଦୃଷ୍ଟିରୁ 'ନଷ୍ଟନୀଡ଼'ର ମଞ୍ଚୋପଯୋଗୀତା କମ, ଅସ୍ୱୀକାର କରି ହେବ ନାହିଁ । ନାଟ୍ୟଶାସ୍ତ୍ର ମତେ ପ୍ରତ୍ୟେକଟି ଚରିତ୍ର ଯଥାଶୀଘ୍ର ଅନ୍ତତଃ ପ୍ରଥମ ଅଙ୍କ ମଧ୍ୟରେ ଦର୍ଶକମାନଙ୍କ ସହିତ ପରିଚିତ ହୋଇଯିବା ବିଧେୟ । ମାତ୍ର ଆଲୋଚିତ ନାଟକଟିର ଚତୁର୍ଥ ଅଙ୍କ ଶେଷ ପର୍ଯ୍ୟନ୍ତ ପରିଚୟ ସ୍ରୋତ ଲାଗି ରହିଛି । ସଂଳାପଗୁଡ଼ିକ ପାତ୍ର ଓ ପରିବେଶ ମୁଖୀ ହୋଇଛି ସତ ମାତ୍ର ଅନେକଟା ନାଟକୀୟ ରୁଚି, ବିସ୍ମୟ ବୋଧ ଓ ଆକସ୍ମିକତା ଅପେକ୍ଷା ସ୍ୱାଭାବିକତା ଓ ରସବ୍ୟଞ୍ଜିତ ଥିବାରୁ ନାଟକଟିର ଗତି ରସୋତ୍ତୀର୍ଣ୍ଣ ମୁହୂର୍ତ୍ତରେ ମଧ୍ୟ ମନ୍ଥର ହୋଇଯାଇଛି । ତଥାପି ରାଧୀ, ନଟବୋଉ, କମଳୀ, ସୁମାତ୍ରା ପ୍ରଭୃତିଙ୍କ ସଂଳାପ ସୁନ୍ଦର ଓ ମନୋଜ୍ଞ ହୋଇଛି । କଲେଜ ହଷ୍ଟେଲ୍ ଓ ରାସ୍ତାରେ କଲେଜ ସହପାଠୀମାନଙ୍କର କଥାବାର୍ତ୍ତା ବେଶ୍ ହୃଦ୍ୟ ହୋଇଛି । ପୂର୍ଣ୍ଣ ଓ ମାଧବୀଙ୍କ କଥୋପକଥନରେ ଯେଉଁ କାବ୍ୟିକ ଛଟା ରୋମାଣ୍ଟିକ୍ ଆବେଶ ଦେଖ ଯାଏ ତାହାଠାରୁ ଅଧିକ କିଛି ଯେ କୌଣସି ଦର୍ଶକ ବା ପାଠକ ପ୍ରେମିକ-କବି ମାନସିଂହଙ୍କଠାରୁ ଆଶା କଲେ ଭୁଲ୍ ହେବ ନାହିଁ । ପଞ୍ଚମ ଅଙ୍କ ପ୍ରଥମ ଦୃଶ୍ୟରେ ଯେଉଁ ସନ୍ଦେହ ସଂଶୟ ବେଶ୍ ଗମ୍ଭୀରତର ହୋଇଛି ତାର ଉପସ୍ଥାପନା ସ୍ୱତରେ କୌଣସି ପ୍ରକାର ନାଟକୀୟତା ନଥିବାରୁ ଏହା ସମପରିମାଣରେ ଉତ୍କଣ୍ଠା ଓ ଆବେଗ ସୃଷ୍ଟି କରିବାରେ ଅସମର୍ଥ ହୁଏ । କିଶୋର ଆସୁ ଆସୁ ଆରମ୍ଭ କରିଛି "ତୁମ ଚରିତ୍ରରେ ମୋର ସନ୍ଦେହ ହୋଇଛି । ତୁମେ ପରା ସନ୍ତ୍ରା ।" ଏତିକି ପ୍ରକାଶ କରିବାକୁ ନାଟ୍ୟକଳା ଯେଉଁ ତୀବ୍ର ତୀକ୍ଷ୍ଣ ମୁହୂର୍ତ୍ତକୁ ଅପେକ୍ଷା ରଖେ ତାହା କେବଳ ଏହି ଦୃଶ୍ୟଟିରେ କାହିଁକି ସମଗ୍ର ନାଟକଟିରେ ଦେଖାଯାଏ ନାହିଁ । ବରଂ ପରେ

ପରେ ନାଟକର ଗତି ମନ୍ଥର ହୋଇପଡ଼ିଛି ଯେତେବେଳେ କିଶୋରକୁ ଉତ୍ତରରେ ମାଧୁରୀ କହୁଛି, "ମୋର ପ୍ରତିବାଦର କ୍ଷମତା ନାହିଁ ବୋଲି କିନା ତୁମେ ଏହା କହୁଛ ? × × କିନ୍ତୁ ଏ ପ୍ରକାର ସନ୍ଦେହ ଅତ୍ୟନ୍ତ ଅପମାନଜନକ । ମୁଁ ସମସ୍ତ ମିଥ୍ୟାଚାରକୁ ଘୃଣା କରେ । ତୁମର ସନ୍ଦେହ ସ୍ନେହର ଚିହ୍ନ ନୁହେଁ, ସ୍ନେହ ଅଭାବର ଚିହ୍ନ । ସ୍ନେହ ତ ବିଶ୍ୱାସ ଉପରେ ପ୍ରତିଷ୍ଠିତ । × ×" ସ୍ନେହ କାହା ଉପରେ ପ୍ରତିଷ୍ଠିତ ତାହାର ତାତ୍ତ୍ୱିକତା ଜାଣିବାକୁ ଏଠାରେ ଦର୍ଶକମାନେ ଆଗ୍ରହୀ ନୁହଁନ୍ତି, ବରଂ ଦ୍ୱନ୍ଦ୍ୱ, ନାଟକୀୟ ବାତାବରଣ, ଉତ୍କଣ୍ଠା ଦର୍ଶକର କାମ୍ୟ ! ପଞ୍ଚମ ଅଙ୍କର ତୃତୀୟ ଦୃଶ୍ୟ ହିଁ ନାଟକଟିରେ ସମାପ୍ତି ପୂର୍ବ ଚରମ ମୁହୂର୍ତ୍ତ । ଏହିଠାରେ ହିଁ ପ୍ରାଗ୍‌ବିବାହକାଳୀନ, ମାଧୁରୀ ପାଖକୁ ପୂର୍ବରୁ ଚିଠି କିଶୋର ଦେଖି ବ୍ୟଭିଚାରିଣୀ ଆଖ୍ୟାରେ ମାଧୁରୀକୁ ଆଖ୍ୟାୟିତ କରିଛି । ମାତ୍ର ମାଧୁରୀର ପ୍ରତିବାଦ ତୀବ୍ରତର ନୁହେଁ । ନାରୀର ସମ୍ମାନରେ ଆଞ୍ଚ ଅସିବାରୁ ସେ କହୁଛି "ଯାହା ସମ୍ଭବ ମନେ କରୁଛ କର—ତୁମେ ଯଦି ପଣ୍ଡିତ ପୁରୁଷ ତେବେ ତୁମର ସ୍ତ୍ରୀକୁ ଏପରି ପ୍ରଶ୍ନ କରିବା ତୁମ ନିଜର ଅପମାନ ।" କିଶୋର ସ୍ୱାମୀତ୍ୱର ଜାହିର୍ କରିବାରୁ ମାଧୁରୀ କହୁଛି "ସ୍ୱାମୀତ୍ୱର ସୀମା ଅଛି ।" ଏହି ଦୃଶ୍ୟରୁ ହିଁ ମାଧୁରୀ ଚରମ କଥା ସ୍ଥିର କରି ନେଇଛି ଯାହା ଦର୍ଶକମାନେ ଚତୁର୍ଥ ଦୃଶ୍ୟରେ ମାଧୁରୀ ଚିଠିରୁ ଜାଣନ୍ତି । ମୃତ୍ୟୁ ପୂର୍ବରୁ ହିଁ ମାଧୁରୀର ଚରିତ୍ର ଉଦ୍‌ଘାଟିତ ହୋଇଛି । ସେ ହିନ୍ଦୁ ନାରୀର କର୍ତ୍ତବ୍ୟ କରି ପରାଜିତ । ତେଣୁ ଲେଖିଛି, "ମୋ ଆଗରେ ଶଶୁର ଘରର ବିଭାଘରିଆ ପାଟ ମୋଡ଼ା ହୋଇ ଥୁଆ ହୋଇଛି । ଯେଉଁଥିରେ ଜୀବନର ଦୁଃଖ ଆରମ୍ଭ ହୋଇଥିଲା ସେଇଥିରେ ସେ ଦୁଃଖର ଅବସାନ ହେଉ ।"

ପଞ୍ଚମ ଅଙ୍କର ପ୍ରଥମ ଓ ତୃତୀୟ ଦୃଶ୍ୟରେ କିଶୋର ଓ ମାଧୁରୀଙ୍କ କଥୋପକଥନରେ ଭିକ୍ଷନଙ୍କ ନାୟିକା ନୋରାର ଚିନ୍ତା ଚେତନା, ନାରୀର ସମ୍ମାନ ଓ ମର୍ଯ୍ୟାଦାର ଚିତ୍ର କିଞ୍ଚିତ୍ ପ୍ରତିଫଳିତ । ମାତ୍ର ଇବସନ୍‌ଙ୍କର ଶାଣିତ ସଂଳାପ, ବଳିଷ୍ଠ ନାଟକୀୟ କଥୋପକଥନ, ତୀବ୍ର ବିଶ୍ୱଜନୀନ ଆବେଦନ ଏଥିରେ ଦେଖାଯାଏ ନାହିଁ । ଟ୍ରାଜେଡ଼ିର ଅନ୍ତର୍ଦ୍ୱନ୍ଦ୍ୱ ଓ ସଂଘର୍ଷ ଆଲୋଚ୍ୟ ନାଟକଟିରେ ଅତି କ୍ଷୀଣ ଭାବେ ଉପସ୍ଥାପିତ କରାଯାଇଛି । ଗ୍ରୀକ୍‌କାନ୍ତ ସୌନ୍ଦର୍ଯ୍ୟରେ ବିମଣ୍ଡିତ ହେବା ମୁହୂର୍ତ୍ତଗୁଡ଼ିକ ନାଟକରେ ମଳିନ ପଡ଼ିଯାଇ ପ୍ରଭାବଶାଳୀ କ୍ୟାଥେରସିସ୍ ସୃଷ୍ଟି ହୋଇପାରି ନାହିଁ । କେବଳ ଦୁଃଖାତ୍ମକ ସମାପ୍ତିରେ ହିଁ ନାଟକଟି ଶେଷ ହୋଇଛି । ଟ୍ରାଜେଡ଼ି ଭାବେ 'ନଷ୍ଟନୀଡ଼'ର ମୁଖ୍ୟ ଚରିତ୍ର ପୂର୍ଣ୍ଣ ସ୍ଥିର ନକ୍ଷତ୍ର ବା ବଳିଷ୍ଠ ନୁହଁ । ଦୁଷ୍ଟ ନାୟକ କିଶୋର ମନରେ ସନ୍ଦେହର ତାଡ଼ନା ଅଛି, ମାତ୍ର ତୀବ୍ରତା ନାହିଁ । କିଶୋର ପାଇଁ ମାଧୁରୀର ମୃତ୍ୟୁ ସତେ ଯେମିତି ଏକ ସୁନ୍ଦର ସମାପ୍ତି । ତେଣୁ ନାଟକଟିର ଆବେଦନ ବଳିଷ୍ଠ ନୁହେଁ ।

ସମଗ୍ର ନାଟକଟିରେ ଛଅଟି ଗୀତର ସଂଯୋଗ ଦେଖିବାକୁ ମିଳେ । ଗୋଟିଏ ଉଦ୍‌ବୋଧନ ସଙ୍ଗୀତ, ଗୋଟିଏ ନାୟିକା ମାଧୁରୀ ଦ୍ୱାରା, ଅନ୍ୟ ଚାରୋଟି ନଟୀ ଦ୍ୱାରା ଆବୃତ୍ତ ହୋଇଛୁ । ନଟୀର ଗୀତଗୁଡ଼ିକ ବିଷୟ ବିନ୍ୟାସ ଉପସ୍ଥାପନ ପାଇଁ ଉପଯୋଗୀ ହୋଇଥିଲେ ମଧ୍ୟ ଏହାର ଏକାନ୍ତ ଆବଶ୍ୟକତା ଉପଲବ୍ଧି ହୁଏ ନାହିଁ । ନାଟକଟିର ପ୍ରସ୍ତାବନା ସଂସ୍କୃତ ଶାସ୍ତ୍ରୀୟ ଶୈଳୀରେ ଦିଆଯାଇଥିବା ନାଟ୍ୟକାର ଉଲ୍ଲେଖ କରିଛନ୍ତି ଏବଂ ଏହାଦ୍ୱାରା କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ଲେଖକ ଆଶା କରନ୍ତି । ଏହି ପଦ୍ଧତି ବହୁପୂର୍ବରୁ କେତେକ ନାଟକରେ ପରିତ୍ୟାଗ କରାଯାଇଥିବାରୁ ଏହାକୁ ଗ୍ରହଣ କରିବା ଓ ନ କରିବା ପ୍ରଶ୍ନ, ବିଚାର ଆଲୋଚନା ପରିସୀମାକୁ ଆସୁ ନାହିଁ ।

**ବାରବାଟୀ :—**

ବସ୍ତୁତଃ ବାରବାଟୀ ଓ ବାରବାଟୀର ଇତିକଥା ଓଡ଼ିଆ ଜୀବନର ତଥା ଓଡ଼ିଶାର ସୁଦୀର୍ଘ କାଳର ଇତିହାସ । ହଲିନ୍‌ସେଡ୍‌ଙ୍କ କ୍ରନିକଲ ବା ପ୍ଲୁଟାର୍କଙ୍କ ଜୀବନୀମାଳା ସାହାଯ୍ୟରେ ସେକ୍‌ସପିୟରର ତାଙ୍କ ପ୍ରଖ୍ୟାତ ଐତିହାସିକ ନାଟକ ରଚନା କରିଥିବା ଭଳି ବାରବାଟୀର ପତନ ଅଭ୍ୟୁତ୍ଥାନକୁ ମାଧ୍ୟମ କରି ଗଙ୍ଗ, ସୂର୍ଯ୍ୟ ଓ ଭୋଇ ବଂଶର ଇତିହାସକୁ ନାଟ୍ୟରୂପ ଦେବା ପରିକଳ୍ପନାର ଅସ୍ମିମାରମ୍ଭ ହେଉଛୁ 'ବାରବାଟୀ' । ନାଟକଟିର ସମୟ ଗଙ୍ଗବଂଶର ରାଜତ୍ୱ । ଗଙ୍ଗବଂଶର ରାଜତ୍ୱରେ ଘଟିଥିବା କେତେ ଘଟଣା ନାଟ୍ୟକାର କୃପାସିନ୍ଧୁଙ୍କ 'ଉତ୍କଳ ଇତିହାସ'ରୁ ଗ୍ରହଣ କରିଛନ୍ତି । ପାଇକ ଅଞ୍ଚଳରେ ଜନ୍ମ ଏବଂ ବିଭିନ୍ନ ଗଡ଼ଜାତରେ ପରିଭ୍ରମଣ ସୁଯୋଗ ଲେଖକଙ୍କୁ ବହୁ ପାଇକ କାହାଣୀ ଜାଣିବାକୁ ଅବକାଶ ଦେଇଛୁ ।

**ବିଷୟ** :—ଅନଙ୍ଗଭୀମଦେବଙ୍କ ରାଜତ୍ୱ ବେଳେ ମୁସଲମାନଙ୍କ ଗୌଡ ବିଜୟ, ଗୌଡ ରାଜା ଲକ୍ଷ୍ମଣ ସେନଙ୍କୁ ରାଜପଥ ଦରବାରର ରାଜନୈତିକ ଆଶ୍ରୟ ପ୍ରଦାନ, ଜଗନ୍ନାଥଙ୍କର ନୂତନ ମନ୍ଦିର ପ୍ରତିଷ୍ଠା, ସିଂହଦ୍ୱାର ନିକଟରେ ପତିତପାବନ ମୂର୍ତ୍ତି ସ୍ଥାପନା, ବିଦ୍ରୋହ ଦମନ ପାଇଁ ନରସିଂହ ଦେବଙ୍କ ତାମ୍ରଲିପ୍ତି, ମାଳବ, ତେଲେଙ୍ଗାନା ଯାତ୍ରା, ଦାକ୍ଷିଣାତ୍ୟରେ ବାରଙ୍ଗଲ, କୁଲବର୍ଗ ଇତ୍ୟାଦିର ପତନ, ଅନଙ୍ଗଭୀମଦେବଙ୍କ ଦ୍ୱାରା ମୁସଲମାନଙ୍କ ପରାଜୟ ମାଳବ ରାଜକନ୍ୟାଙ୍କ ସହ ବାରବାଟୀରେ ନରସିଂହ ଦେବଙ୍କ ବିବାହ ଇତ୍ୟାଦି ନାଟକଟିକୁ ବିଷୟ ବହୁଳ କରିଛୁ ।

ସାଧାରଣତଃ ଐତିହାସିକ ନାଟକରେ ସମକାଳୀନ ଶାସନ ତଥା ରାଜନୀତି ଦର୍ଶନ ରହିବା ବିଧେୟ ହେଲେ ମଧ୍ୟ ସାହିତ୍ୟର ଅଙ୍ଗ ଭାବେ ଏହା ବିଶ୍ୱ ମାନବିକ

ଚେତନା ଓ ଅନୁରାଗକୁ ସ୍ପର୍ଶ କରୁଥିବା ଉଚିତ୍ । ଐତିହାସିକ ନାଟକ ଦର୍ଶକମାନଙ୍କ ଅତୀତର ଗୌରବାବହ ପରମ୍ପରାକୁ ପରିବେଷଣ କରୁଥିବାରୁ , ତାହା ଦର୍ଶକ ଚିତ୍ତକୁ ଆଲୋଡ଼ିତ କରିବା ସ୍ୱାଭାବିକ୍ । ଐତିହାସିକ ନାଟକର ପରିଣତି ମିଳନାନ୍ତକ ବା ବିୟୋଗାନ୍ତକ କରିବା ବଡ଼ କଥା ନୁହେଁ, କାରଣ ବର୍ଣ୍ଣିତ ଚରିତ୍ର ଓ ଘଟଣାବଳୀ ଦର୍ଶକ ମାନଙ୍କ ପାଖରେ ସମସ୍ତ ପ୍ରକାର ଗୋପନୀୟତା ବନ୍ଧ ପୂର୍ବରୁ ହରାଇ ବସିଥାଏ । ଅତୀତର ହେଲେ ମଧ୍ୟ ଲକ୍ଷ୍ୟ ଓ ସାଧନ ବର୍ତ୍ତମାନ ପାଇଁ ଉଦ୍ଦିଷ୍ଟ । ଏହି ସମସ୍ତ ଦୃଷ୍ଟିରୁ 'ବାରବାଟୀ'ରେ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପରିପୂର୍ଣ୍ଣ ଆକାରରେ ରହିଥିବା ହୃଦ୍‌ବୋଧ ହୁଏ । ଗଙ୍ଗ ବଂଶର ମହାପ୍ରତାପୀ ଅନଙ୍ଗଭୀମ ଦେବଙ୍କର ଶାସନ, ନରସିଂହ ଦେବଙ୍କର ବିଜୟଦ୍ଧି ସମଗ୍ର ଜାତିର ପ୍ରତାପ ପ୍ରତିଷ୍ଠା ଓ ପ୍ରାଚୁର୍ଯ୍ୟ । ଏହି ଚେତନା ପଶ୍ଚାତରେ ସ୍ୱାଧୀନତା ପ୍ରତି ଅନୁରାଗ, ସ୍ୱତନ୍ତ୍ରତା ପ୍ରତି ସଚେତନତା ରହିପାରିଥାଏ । ମାତ୍ର ଇଂରେଜୀ ଐତିହାସିକ ନାଟକ ନାଟ୍ୟକାର ମାନସିଂଙ୍କୁ 'ବାରବାଟୀ' ପରି ନାଟକ ସୃଷ୍ଟି କରିବା ପାଇଁ ପ୍ରରୋଚିତ କରିଥିବାରୁ ଉପରୋକ୍ତ ଯୁକ୍ତି ଦୁର୍ବଳ ହୁଏ । ସେ ଯାହା ହେଉନା କାହିଁକି 'ବାରବାଟୀ' ନାଟକର କଥାବସ୍ତୁ ଏଭଳି ଘଟଣା ବହୁଳ ଯେ ସେ ସବୁକୁ ଉପସ୍ଥାପିତ କରିବାରେ ପ୍ରଯୋଜକଙ୍କୁ ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ । ନାଟ୍ୟକାର କୁଶଳୀ ହେଲେ ଘଟଣାର ସୂତାଖିଅକୁ ଧରି ଏପରି ପରିସ୍ଥିତି ସୃଷ୍ଟି କରନ୍ତି ଯାହା ମୂଳ ଘଟଣାର ଏକ ଶକ୍ତିଶାଳୀ ରୂପ ରୂପେ ଦର୍ଶକକୁ ଆଲୋଡ଼ିତ କରେ । ଇତିହାସ ହୁଏ ସଜୀବ । ନାଟକ ହୁଏ ସଫଳ । ମାତ୍ର 'ବାରବାଟୀ' ଦେଖିଲେ କେତୋଟି ଐତିହାସିକ ଘଟଣା ଜାଣିବା ଛଡ଼ା କୌଣସି ପ୍ରକାର ଭାବାନ୍ତର, ଗମ୍ଭୀର କ୍ରିୟା ପ୍ରତିକ୍ରିୟା ମନରେ ଜନ୍ମ ହୁଏ ନାହିଁ ।

ନଚ୍ଛକ ନାଟ୍ୟକଳା ଦୃଷ୍ଟିରୁ ନାଟକଟିରେ ଉତ୍କଣ୍ଠା, ଦ୍ୱନ୍ଦ୍ୱ, ଆବେଗ ଓ ନାଟକୀୟ ମୁହୂର୍ତ୍ତମାନ ଯେଭଳି ରହିବା କଥା ସେହି ପରିମାଣରେ ନାହିଁ । ବାଣପୁର ଭ୍ରମରବ ପାଇକ ତୃତୀୟ ଅଙ୍କ ଅଷ୍ଟମ ଦୃଶ୍ୟରେ ଯେଉଁ ଟିକିଏ ଉତ୍ତେଜନା ସୃଷ୍ଟି କରିଛୁ ଯେଉଁଥିଲାଗି ନରସିଂହ ଦେବ କହିଛନ୍ତି "ଭ୍ରମରାଙ୍କର ମୃତ୍ୟୁ କେଭଳୀୟ ତାଙ୍କର ଚିତା ଜଳିବ ଗଜପତିଙ୍କ ବିଜୟ ପତାକା ତଳେ ।" ସେତିକି ସମଗ୍ର ନାଟକ ପାଇଁ ଏତେ କ୍ଷୀଣ ଏବଂ ପକ୍ଷାନ୍ତରରେ ତୃତୀୟ ଅଙ୍କ ଷଷ୍ଠ ଦୃଶ୍ୟରେ ଚିତ୍ରିତ ପାଇକର କନ୍ଦନ, ବିହ୍ୱଳତା, ବାସ୍ତବତା ତଥା ମସ୍ତିଷ୍କର ଦୁର୍ବଳତା ଦୃଷ୍ଟିରୁ ଯେତିକି ସତ୍ୟ, ବୀର୍ଯ୍ୟଶାଳୀ ଜାତିର ପରମ୍ପରା ଓ ବୀରତ୍ୱକେ କଥା ତୁଳନାରେ ସେତିକି ହାସ୍ୟାସ୍ପଦ । ନାଟକଟିରେ ସଙ୍ଗୀତ ସଂଖ୍ୟାନୁସାରେ ବେଶ୍ ଅନୁପାତୀୟ ହୋଇଛି । ମାତ୍ର ଦ୍ୱିତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ପ୍ରାୟ ଏକତ୍ର ଥିବା ତିନୋଟି ସଙ୍ଗୀତ ଉପଭୋଗ କରିହୁଏ ନାହିଁ, ବରଂ ଶିରଚ୍ଛେଦକର ବୋଧହୁଏ । ନାଟକଟିରେ ଏହି ସମସ୍ତ ଦୁର୍ବଳତା କେଉଁ କଳା ବିଭବକୁ ପୂର୍ଣ୍ଣତା-ମୁଖୀ କରୁଛି ଜାଣିବା କଷ୍ଟକର ହୁଏ । ଏହି ନାଟକ

ସମ୍ପର୍କରେ ଡଃ କାହ୍ନୁ ଚରଣ ମିଶ୍ର ମତାମତ ଦେବାକୁ ଯାଇ କହିଛନ୍ତି "ନାଟକଟିର ଗତି ଅତି ମନ୍ଥର × × ଭାଷା ଐତିହାସିକ ନାଟକ ଉପଯୋଗୀ ନୁହେଁ କିମ୍ବା ପାଣ୍ଡମୁଖୀ ନୁହେଁ । ପାଠକ ବା ଦର୍ଶକ ମୁଖରେ ଏ ଭାଷା ଉନ୍ମାଦନା ଓ ଉଦ୍ଦୀପନା ସୃଷ୍ଟି କରେ ନାହିଁ । ଭଗ୍ନ ଭାଷା ସର୍ବନାମ ଭାଷାର ପ୍ରୟୋଗ ଓ ଭାଷଣର ଦୀର୍ଘତା ନାଟକଟିକୁ ଉପାଦେୟ କରିନାହିଁ । ସଂଳାପ ମଧ୍ୟ ଉଚ୍ଚକୋଟୀର ବା ନାଟକୀୟ ନୁହେଁ । ଦୃଶ୍ୟ ସଂଯୋଜନା ଅନେକ ସ୍ଥଳରେ ଆବାନ୍ତର ଓ ଅସଂଗତ ।" ବସ୍ତୁତଃ 'ବାରବାଟୀ' ସୃଷ୍ଟି ପୂର୍ବରୁ ଓଡ଼ିଆରେ ଅନେକ ସଫଳ ଐତିହାସିକ ନାଟକ ଲେଖା ସରିଥିଲା । ତା ପରବର୍ତ୍ତୀ ସୃଷ୍ଟି 'ବାରବାଟୀ' ନାଟକ ଭଗ୍ନ 'ବାରବାଟୀ' ପରି ମନେ ହୁଏ ନାହିଁ କି ? କେବଳ ଘଟଣାର ସ୍ତୂପ । ଚରିତ୍ରରେ ଚମତ୍କାରିତା, ନାଟକୀୟତାର ଅଭାବହିଁ ଅଧିକ ପରିଲକ୍ଷିତ ହୁଏ ।

ନାଟକର ଅନ୍ୟ ଏକ ଦିଗ ମଞ୍ଚ ପ୍ରଯୋଜନା । 'ବାରବାଟୀ' ନାଟକଟି ସାତୋଟି ଅଙ୍କରେ ବା ବାଇଶିଟି ଦୃଶ୍ୟରେ ବିଭକ୍ତ ହୋଇଛି । ପ୍ରଥମ ଅଙ୍କ ସାତୋଟି ଦୃଶ୍ୟ, ଦ୍ୱିତୀୟ ଓ ତୃତୀୟ ଅଙ୍କ ଆଠୋଟି କରି ଦୃଶ୍ୟ ଏବଂ ଶେଷ ଅଙ୍କଟି ଦୁଇଟି ଦୃଶ୍ୟରେ ବିଭାଜିତ ହୋଇଛି । ଦୃଶ୍ୟଗୁଡ଼ିକ ଏପରି ସ୍ୱତନ୍ତ୍ର ହୋଇଛି ଯେ ଯେଉଁଥିରେ ତତ୍କାଳୀନ ସମୟର ମଞ୍ଚ ସାମଗ୍ରୀ ସଜାଇ ଗତିର ଅବ୍ୟାହତ ରଖିବା ଅବକାଶ ବା ସୁଯୋଗ ରହୁନାହିଁ । ଅଭିନୟ ପାଇଁ ସମୁଦାୟ ସ୍ତ୍ରୀ ଚରିତ୍ର ଦଶଟି, ପୁରୁଷ ଚରିତ୍ର ତିରିଶଟି ବ୍ୟତୀତ ନର୍ତ୍ତକୀଗଣ, ଯାଚକଗଣ, ପ୍ରଜାଗଣଙ୍କର ଆବଶ୍ୟକତା ନାଟକକୁ ଜଟିଳ କରିଛି ।

ଐତିହାସିକ ନାଟକରେ ଅତ୍ୟଧିକ କଳ୍ପନା ଇତିହାସକୁ ଉପନ୍ୟାସ କରେ । ତେଣୁ ନାଟକ ହୁଏ କାବ୍ୟ । ପୁନଶ୍ଚ ନାଟକୀୟ ରୂପ ଥାଇ ଗୁଣ ନ ଥିଲେ ଏହା ଇତିହାସ ହୋଇପାରେ ନାହିଁ । ସାହିତ୍ୟ ମଧ୍ୟ ହୋଇପାରେ ନାହିଁ । ଏ ସମସ୍ତ ଆଲୋଚନାରୁ ମନେହୁଏ ଜାତିର ଗୌରବାବହ କାହାଣୀ ନାଟ୍ୟକାରଙ୍କୁ ଯେତେ ପ୍ରଭାବିତ କରିନ ଇଂରେଜୀ ଐତିହାସିକ ନାଟକ ତାଙ୍କୁ ଠାରେ କିଛି ଲେଖାଯିବା ଉଚିତ୍ ଧାରଣାର ପ୍ରଲୋଭନ ମାନସିଂଙ୍କ ମନରେ ମୁଖ୍ୟ ସ୍ଥାନ ଲାଭ କରିଛି । "ନଷ୍ଟନୀଡ଼ 'ଠାରୁ ଏହା ପରବର୍ତ୍ତୀ ସୃଷ୍ଟି ହୋଇଥିବାରୁ ଅଧିକ ଉନ୍ନତ ସୃଷ୍ଟି ଆଶା କରିବା ପାଠକ ବା ଦର୍ଶକର ଧୃଷ୍ଟତା ନିଶ୍ଚୟ ନୁହେଁ । ମାତ୍ର ଏହା କେଉଁ କୂଳର ହୋଇପାରିଛି କିଏ କହି ପାରିବ ?

**ଚୂଡ଼ :—**

ଦେଉଳକୁ ମୁଖଶାଳା ବନେଇଲେ ସୁନ୍ଦର ପୁଣି ଅସୁନ୍ଦର ହୁଏ । ଦାକ୍ଷିଣାତ୍ୟର ଗୋପୁରଂକଳା ଏହିଭଳି ହେଲେ ମଧ୍ୟ ସୁନ୍ଦରର ତ ଅସୁନ୍ଦର ହୋଇନ ।

ବୁଦ୍ଧ ନାଟକଟିର ପ୍ରାକକଥନ 'ସ' ଙ୍କ ମୁଖବନ୍ଧ ପରି ବେଶ ବିସ୍ତୃତ ହୋଇଛି । କିନ୍ତୁ କହିବାକୁ ଗଲେ ବିଭିନ୍ନ ନାଟକରେ ଯାହା ନାଟ୍ୟକାର କହି ପାରି ନାହାନ୍ତି ବା କହିଥିଲେ ବି ତୃପ୍ତି ଲାଭ କରିପାରି ନାହାଁନ୍ତି ସେଠିକି 'ବୁଦ୍ଧ' ନାଟକ ପ୍ରାରମ୍ଭରେ କହିବା ସୁଯୋଗ ନେଇଛନ୍ତି । 'ଦୁର୍ଭିକ୍ଷ' କାବ୍ୟ ନାଟିକାରେ ସନାତନର ସନାତନତ୍ୱ ଅପେକ୍ଷା ସାମାଜିକ ଦୋଷ ଦୁର୍ବଳତା, ରକ୍ଷଣଶୀଳତା ଓ କୁସଂସ୍କାର ଯେପରି ଆଲୋଚିତ ହୋଇଛି, ସେହିପରି ବୁଦ୍ଧ ନାଟକ ମୁଖବନ୍ଧର ଆଲୋଚନାରୁ ଜଣାପଡ଼େ ବୌଦ୍ଧ ଧର୍ମର ମହନୀୟତା ଓ ମାନବିକତା କବି ହୃଦୟକୁ ଆକୃଷ୍ଟ କରିଥିଲେ ମଧ୍ୟ କରୁଣା ସ୍ପର୍ଶ ନାହିଁ । ବୌଦ୍ଧ ଧର୍ମ ଉପରେ ଦୋଷ ଲଦି ଦେଇ ହିନ୍ଦୁଧର୍ମ ସପକ୍ଷବାଦୀଙ୍କର ଯେଉଁ ଭୁଲ୍ ହୁଏ, ବୌଦ୍ଧଧର୍ମ ସମ୍ପର୍କରେ ସୂଚନା ଦେବାକୁ ଯାଇ ନିରପେକ୍ଷ ସ୍ରଷ୍ଟା ମାନସିଂ ହିନ୍ଦୁଧର୍ମ ପ୍ରତି କମ୍ପୃକ୍ତ ଭାବ ପୋଷଣ କରିବା କଣ ସେହି ଭୁଲର ପୁନରାବୃତ୍ତି ନୁହେଁ ? ସେ ଯାହାହେଉ ବିଶ୍ୱ ପରିବ୍ୟାପ୍ତ ବୌଦ୍ଧ ଧର୍ମର କରୁଣା ଯେକୌଣସି ହୃଦୟବାନ୍ ଲୋକଙ୍କୁ ସ୍ପର୍ଶ କରିବ । ପୁନଶ୍ଚ ଏ ଧର୍ମ ସମ୍ପର୍କରେ ବିଭିନ୍ନ ମନୀଷୀମାନଙ୍କ ଚମତ୍କାର ପର୍ଯ୍ୟାଲୋଚନା, ବିଶ୍ଳେଷଣ ଯେ କୌଣସି ପାଠକକୁ ଆମୋଦିତ କରିବ । ଏହିଭଳି ଆମୋଦିରୁ ବୁଦ୍ଧ ଜୀବନୀ, କାବ୍ୟ ବହୁତ ଥିବା ଜାଣି ସ୍ୱତନ୍ତ୍ର ପଥରେ ଯିବାକୁ କବି ମାନସିଂ ସିଦ୍ଧାନ୍ତ ଗ୍ରହଣ କରିଛନ୍ତି ଏବଂ ଆରମ୍ଭ କରିଛନ୍ତି ନାଟକ 'ବୁଦ୍ଧ' ।

**କଥାବସ୍ତୁ** :—ଧରଣୀର ଦୁଃଖରେ ସମବେଦନା ପ୍ରକାଶ କରି ଶଙ୍କର ଗୌରୀ ଧରଣୀକୁ ଆଶୀର୍ବାଦ କରିଛନ୍ତି—ଅଚିରେ ଧରଣୀ ହିରଣ୍ୟଗର୍ଭା ହେବ । ହେବ ମହାମାନବର ଗର୍ଭଧାରଣୀ— । ଏତିକି ସୂଚନା, ପ୍ରସ୍ତାବନାଟିରେ ଦେଇ ନାଟକଟିକୁ କୋଳାହଳ ମଧ୍ୟରେ ଆରମ୍ଭ କରାଯାଇଛି । ଅରଣ୍ୟାନୀର ନିଘଞ୍ଚ କୋଳରେ ବିହଙ୍ଗର ମୃତ୍ୟୁକାଳୀନ ଚିତ୍କାର ଶୁଣି କରୁଣାମୟ ସିଦ୍ଧାର୍ଥ ବିମର୍ଷ ହୋଇପଡ଼ିଛନ୍ତି । ସିଦ୍ଧାର୍ଥଙ୍କ ମନୋଭାବ ଲକ୍ଷ୍ୟ କରି ଆନନ୍ଦ ଶିକାର ନ କରିବାକୁ ଦେବଦତ୍ତଙ୍କୁ ଅନୁରୋଧ କରିଛନ୍ତି । ରାଜପୁତ୍ର ସିଦ୍ଧାର୍ଥଙ୍କର ଏହିଭଳି ଭାବ ସହିତ ସମଗ୍ର ପରିବାର ପରିଚିତ । ରାଜପ୍ରାସାଦର ସମସ୍ତ ବୈଭବ ଓ ଭୋଗ ମଧ୍ୟରେ ସିଦ୍ଧାର୍ଥ ଚିନ୍ତାବିଷ୍ଟ । ମାତ୍ର କେତୋଟି ଘଟଣା ପ୍ରତ୍ୟକ୍ଷ କରି ସିଦ୍ଧାର୍ଥଙ୍କ ମନରେ ବହୁ ପ୍ରଶ୍ନ, ଉପପ୍ରଶ୍ନ ଉଙ୍କି ମାରିଛି । ସେସବୁର ବିଶ୍ଳେଷଣ ଆନନ୍ଦ ଓ ଛନ୍ଦକ କରିଥିଲେ ମଧ୍ୟ ସିଦ୍ଧାର୍ଥଙ୍କ ମନ ତୃପ୍ତ ହୋଇନି । ନିଦ୍ରାରେ ଅଭିଭୂତ ସିଦ୍ଧାର୍ଥ ଜଣେ ସନ୍ନ୍ୟାସୀଙ୍କୁ ଦେଖି ଜୀବନର ଗତିପଥ ପ୍ରାୟ ସ୍ଥିର କରି ନେଇଛନ୍ତି । ନବଜାତ ଶିଶୁ, ପ୍ରାଣପ୍ରିୟା ପତ୍ନୀକୁ ତ୍ୟାଗ କରି ରାଜକୁମାର ରାତ୍ରି କୋଳରେ ନିଜକୁ ମିଶାଇ ଦେଇଛନ୍ତି । ତାପରେ ଦର୍ଶକ ଧ୍ୟାନସ୍ଥ ସିଦ୍ଧାର୍ଥଙ୍କୁ ଦେଖନ୍ତି । ଜ୍ଞାନ ପ୍ରାପ୍ତ ସିଦ୍ଧାର୍ଥଙ୍କର ତଥା ସମଗ୍ର ପୃଥିବୀର ପ୍ରଥମ ବୌଦ୍ଧ ଶିଷ୍ୟ ହୁଅନ୍ତି କଳିଙ୍ଗର ବ୍ୟବସାୟୀ । ପରେ

ପରେ ଅନେକ ବୁଦ୍ଧଜନ୍ମକ, ଆଶ୍ବର୍ଯ୍ୟ, ବ୍ରାହ୍ମଣ, କ୍ଷତ୍ରିୟ, ଶାସକ, ସାଧନାର ସତ୍ୟତା ଉପଲବ୍ଧି କରି ବୌଦ୍ଧଧର୍ମ ଓ ସଂଘର ଶରଣ ନିଅନ୍ତି । ଆମ୍ରପାଳୀ ମନରେ ଦେଖାଦଏ ପରିବର୍ତ୍ତନ । ଚତୁର୍ଦ୍ଦିଗ ଝଙ୍କୃତ ହୋଇଉଠେ—"ବୁଦ୍ଧଂ ଶରଣଂ ଗଚ୍ଛାମି" ସ୍ତୋତ୍ରରେ । ସାଧକ କପିଳବସ୍ତୁ ଫେରି ଆସନ୍ତି । ମାତ୍ର ଶୁଦ୍ଧ-ଜନଙ୍କ ସିଦ୍ଧାର୍ଥ ରୂପରେ ନୁହେଁ, ବିଶ୍ୱନନ୍ଦନ ବୁଦ୍ଧ ରୂପରେ । ସମଗ୍ର କପିଳବସ୍ତୁରେ ବୌଦ୍ଧଧର୍ମର ସ୍ରୋତ । ଗୋପା ହିଁ ପ୍ରଥମ ନାରୀ ଯେ ନବଜୀବନ ଦୀକ୍ଷା, ସ୍ୱାମୀ ନୁହେଁ ସନ୍ନ୍ୟାସୀ ବୁଦ୍ଧଙ୍କଠାରୁ ନିଅନ୍ତି । ଏତିକରେ ନାଟକଟି ସମାପ୍ତି ହୁଏ ।

'ବୁଦ୍ଧ' ନାଟକଟିର ପ୍ରଥମ ଅଭିନୟ ୧୯୫୧ ମସିହାରେ । ସ୍ୱାଧୀନତା ପରେ ବୌଦ୍ଧଧର୍ମ ସମ୍ପର୍କୀୟ ଆଲୋଚନା ଭାରତର ସାଧାରଣଙ୍କ ଭିତରେ ସମଧିକ ପରିମାଣରେ ହୋଇଥିବା ଯେ କେହି ସ୍ୱୀକାର କରିବେ । ସେହି ପ୍ରବାହରେ ଏହାକୁ ମଞ୍ଚସ୍ଥ କରିବାକୁ ମେହେର ମହାବିଦ୍ୟାଳୟର ଅଧ୍ୟକ୍ଷ ମାନସିଂ ସଚେଷ୍ଟ ଥିବା ଅନୁମିତ ହୁଏ । ନାଟ୍ୟକାର ଏଥିରେ ପ୍ରସ୍ତାବନା ସହିତ ଗୋଟିଏ ଅଙ୍କ, ଅଠେଇଶିଟି ଦୃଶ୍ୟର ସାହାଯ୍ୟ ନେଇଛନ୍ତି । ଦୃଶ୍ୟଗୁଡ଼ିକ ନାଟ୍ୟକାରଙ୍କ ପୂର୍ବବର୍ତ୍ତୀ ନାଟକ ଅପେକ୍ଷା ଅଧିକ ସୁଷମ ଭାବେ ବିଭକ୍ତ ହୋଇଛି । ପ୍ରଥମ ଅଙ୍କରେ ଛଅଟି, ଦ୍ୱିତୀୟ, ତୃତୀୟ ଅଙ୍କରେ ସାତୋଟି କରି ଓ ଚତୁର୍ଥ ଅଙ୍କରେ ଆଠୋଟି ଦୃଶ୍ୟ ସୁନ୍ଦର ବିଭାଜନ-ସମତା ଆଣେ । ଦୃଶ୍ୟ ସଜ୍ଜୀକରଣ ଦୃଷ୍ଟିରୁ ତୃତୀୟ ଅଙ୍କ ପ୍ରଥମ ଦୃଶ୍ୟ ଗୋପାଙ୍କ ଶୟନ କକ୍ଷ ପରେ ଦ୍ୱିତୀୟ ଦୃଶ୍ୟ ନିଘଞ୍ଚ ଅରଣ୍ୟର ଧ୍ୟାନସ୍ଥ ବୁଦ୍ଧ ଉପସ୍ଥାପନ ସହଜ ହୋଇପାରେ ନାହିଁ । ଏହି ମାତ୍ର ଉପସ୍ଥାପନ ତ୍ରୁଟି ଛାଡ଼ିଦେଲେ ସମଗ୍ର ନାଟକଟିର ଗତି ଉତ୍କଣ୍ଠା ଆବେଗ ସୁନ୍ଦର ହୋଇଛି । ନାଟକଟିରେ ସନ୍ନିହିତ ଦ୍ୱନ୍ଦ୍ୱ ଦର୍ଶକ ଓ ପାଠକମାନଙ୍କୁ ଯେଉଁଭଳି ପ୍ରଭାବିତ କରେ, ସେହିଭଳି ବହୁ ନାଟକୀୟ ମୁହୂର୍ତ୍ତ ସୃଷ୍ଟି କରିବାରେ ସାହାଯ୍ୟ କରେ । ଏସମସ୍ତ ସଫଳତା ଭିତରେ ବହୁ ଚରିତ୍ରର ସମାବେଶ ନାଟକଟି ପାଇଁ ଏକ ସମସ୍ୟା । ପ୍ରାୟ ବାରଟି ନାରୀ ଚରିତ୍ର, କୋଡ଼ିଏଟି ପୁରୁଷ ଚରିତ୍ର ସହିତ କନ୍ୟାଗଣ, ନର୍ତ୍ତକୀଗଣ, ଭିକ୍ଷୁଗଣ, ବ୍ରାହ୍ମଣଗଣ, ଶବରଗଣ ଇତ୍ୟାଦିର ଆବଶ୍ୟକତା ଏହାକୁ ମଞ୍ଚସ୍ଥ କରିବ ରେ ବାଧକ ହୁଏ । ଏତେଗୁଡ଼ିଏ ଚରିତ୍ରକୁ ମଞ୍ଚରେ ନିୟନ୍ତ୍ରିତ କରିବା କଷ୍ଟକର ବ୍ୟାପାର ହେଲେ ମଧ୍ୟ ବାରବାଟୀଠାରୁ ଏହା ଅଧିକ ଶୃଙ୍ଖଳିତ । ତ୍ରୁଟି ଓ ବିଚ୍ୟୁତି ସତ୍ତ୍ୱେ ଏହା ସଫଳ ନାଟକ ଓ କାବ୍ୟ ଏଥିରେ ସନ୍ଦେହ ନାହିଁ ।

କବି ନାଟ୍ୟକାର ମାନସିଂହଙ୍କଦ୍ୱାରା ଅନୁଦିତ ସେକ୍ସପିୟରଙ୍କ 'ଅଥେଲୋ' ଓଡ଼ିଆ ନାଟ୍ୟ ସାହିତ୍ୟର ଗୌରବ ହେବା ଯେକୌଣସି ଦର୍ଶକ ପାଠକ ଆଶା କରିବ । ମାତ୍ର ନାଟକଟିରେ ମାନସିଂହଙ୍କ ସାଧନା ତାହା ହେଉନା କାହିଁକି ସେକ୍ସପିୟରଙ୍କ ତୀବ୍ରତା, ଗତିଶୀଳତା, ସଂଳାପର ଅପୂର୍ବ ପ୍ରଭାବ ଦ୍ୱନ୍ଦ୍ୱର ପ୍ରଖରତା

ଅନୁଭୂତ ହୁଏ ନାହିଁ । ଏ ସମସ୍ତର କାରଣ ନାଟ୍ୟକାରଙ୍କ ଭାଷା ଓ ସଂଳାପର ଅଭାବ-ବୋଧ । ସମସ୍ତ ଚେଷ୍ଟା ସତ୍ତ୍ୱେ ଭାଷା କାବ୍ୟକ ହୋଇପଡ଼ିଥିବାରୁ ମୂଳ ଲେଖାନୁସାରେ ନାଟ୍ୟକାରଙ୍କ ମୁହୂର୍ତ୍ତିମାନ ଥାଇ ମଧ୍ୟ ଅନୁବାଦ ଲାଗି ଉତ୍କଣ୍ଠା ଓ ଆବେଗକୁ ପ୍ରଖରତା କରିବାରେ ଅସମର୍ଥ ହୋଇଛି । ଫଳରେ ଏକାଡେମୀର ଲକ୍ଷ୍ୟ ଓ ଆମର ଆଶା ପୂର୍ଣ୍ଣ ହେବା ସମ୍ଭବ ହୋଇନ ।

ଏ ସମସ୍ତ ପର୍ଯ୍ୟାଲୋଚନାରୁ ମନେହୁଏ ଯେଉଁଠାରେ ମାନସିଂ ନାଟକର ସଫଳତା ଅଛି, ସେଠାରେ କାବ୍ୟରୁଚି ଓ କାବ୍ୟକଳାର ପ୍ରଭାବ ଯଥେଷ୍ଟ ବେଶି । ତେଣୁ ଏମାନେ ଶ୍ରାବ୍ୟ କାବ୍ୟ ଭାବେ ଗୌରବ ଅର୍ଜନ କରନ୍ତି । ନାଟକର ଆଙ୍ଗିକତା ଭିତରେ ପାଠକ ଚମତ୍କାର ଖଣ୍ଡକାବ୍ୟ, କାବ୍ୟ ପଢ଼ିବାକୁ ଓ ଶୁଣିବାକୁ ପାଉଥିବାରୁ ନାଟ୍ୟକାର ଅପେକ୍ଷା କବି ମାନସିଂ ହୃଦୟରେ ଅଭିଷିକ୍ତ ହୁଅନ୍ତି । ନାଟକ ତ ପୁଣି ରୂପକ ! ନାଟ୍ୟକାର ରୂପକରେ ପାଠକ କବି ମାନସିଂଙ୍କୁ ଦେଖେ । କବି ହିଁ ମୂଳ—ଏ କାରଣରୁ ସ୍ମରଣୀୟ—ନମସ୍ୟ ।

**ସହାୟକ ଗ୍ରନ୍ଥସୂଚୀ—**


ମାନସିଂ ଗ୍ରନ୍ଥାବଳୀ—ଡଃ ମାୟାଧର ମାନସିଂ
କବି ଓ କବିତା—ଡଃ ମାୟାଧର ମାନସିଂ
ଓଡ଼ିଆ ନାଟ୍ୟକଳା—ଶ୍ରୀ ଗିରିଜା ଶଙ୍କର ରାୟ
ପୂର୍ଣ୍ଣଚନ୍ଦ୍ର ଭାଷାକୋଷ—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ
ନାଟକ ବିଚାର—ଶ୍ରୀ ସର୍ବେଶ୍ୱର ଦାସ
ନାଟ୍ୟଶାସ୍ତ୍ର—ଭରତ ମୁନି ( ଏକାଡେମୀ ପବ୍ଲିକେସନ୍ସ )
ଓଡ଼ିଆ ନାଟକ ଓ ନାଟ୍ୟକାର—ଅଧ୍ୟାପକ ନାରାୟଣ ଶତପଥୀ
ସାହିତ୍ୟ ସମୀକ୍ଷା—ଡଃ କାହ୍ନୁଚରଣ ମିଶ୍ର
Shakespeare's Histories—
Mr. Lily B. Campbell.

# ଶିକ୍ଷାବିତ୍ ମାନସିଂହ

ଅଧ୍ୟାପକ—ଗୋଲୋକବିହାରୀ ଧଳ

ମାନସିଂହ ଜଣେ ବଡ଼ କବି ବୋଲି ହାଇସ୍କୁଲରେ ପଢ଼ିଲା ବେଳେ ଆମେ ସବୁ ଜାଣିଥାଉ ଓ ତାଙ୍କର କବିତା ପଢ଼ୁଥାଉ । ଅବଶ୍ୟ ତାଙ୍କର କୌଣସି ପୁସ୍ତକ ସେତେବେଳେ ସ୍କୁଲରେ ଆମ ପାଇଁ ପାଠ୍ୟ ପୁସ୍ତକ ହୋଇ ନଥାଏ କିନ୍ତୁ ବଛିଆ କବିତା ହିସାବରେ ଆମେ ତାଙ୍କ ବହି ପଢ଼ୁଥାଉ । ସେତେବେଳେ ଓ ଆଜିକାଲିପରି ଶହ ଶହ ପୁସ୍ତକ ବାହାରୁ ନଥିଲା, ତେଣୁ ଓଡ଼ିଆ ଅକ୍ଷରରେ ଛପା ନୂଆ ବହି ସ୍କୁଲକୁ ଆସିଲାମାତ୍ରେ ସମସ୍ତେ ଖୁବ ଆଦରରେ ପଢ଼ୁଥିଲେ । ସେ କାଳରେ ମାଇନର ଶ୍ରେଣୀ ପାସ କଲାବେଳକୁ 'ଜୀବନଚିନ୍ତା' ପରି କବିତା ପଢ଼ା ସରିଥାଏ, ତେଣୁ ଓଡ଼ିଆ ବହି ପଢ଼ି ବୁଝିବା କଷ୍ଟକର ନଥାଏ ।

ମୁଁ ଯେତେବେଳେ ନବମ ଶ୍ରେଣୀରେ ପଢ଼ୁଥାଏ ସେତେବେଳେ ପ୍ରଥମେ ଜାଣିଲି ମାନସିଂହ ବିଲାତ ଯାଉଛନ୍ତି । ସେ କାଳରେ ତ ବିଲାତ ଯିବାଲୋକ ଖୁବ କମ । ତାଛଡ଼ା ମାନସିଂହଙ୍କ ପରି ଜଣେ କବି ବିଲାତ ଯାଉଛନ୍ତି ଶୁଣି ଆମ୍ଭେମାନେ ଖୁବ ଖୁସି ହେଉଥାଉ । ସେ କେବେ ବିଲାତରୁ ଫେରିଲେ, କେବେ 'ପଶ୍ଚିମ ପଥିକ' ଲେଖିଲେ ସେ ହିସାବ ମୋ ପାଖରେ ନଥିଲା । କିନ୍ତୁ ମୁଁ ଯେତେବେଳେ ଆଇ. ଏ. ଦ୍ୱିତୀୟ ବର୍ଷରେ ପଢ଼ୁଥିଲି ହଠାତ୍ ତାଙ୍କୁ ଦିନେ କ୍ଲାସରେ ଦେଖିଲି । ବେଶ୍ ସୁସ୍ଥ ସବଳ, ହସ ହସ ମୁହଁ, ପ୍ରସନ୍ନଚିତ୍ତ ବ୍ୟକ୍ତି । କଥା କଥାକେ ହସନ୍ତି, ହସିଲା ବେଳେ ଖୁବ ଜୋରରେ ହୃଦୟ ଖୋଲି ହସନ୍ତି । ବିଲାତରେ ରହି ମଧ୍ୟ ଦାନ୍ତଚିପା ବିଲାତି ହସ ସେ ଜାଣି ନଥାନ୍ତି । ସେ ଆମର ବେଶି ଦିନ କ୍ଲାସ ନେଇ ନଥିଲେ । କିନ୍ତୁ ଇଂରେଜୀ ଅନର୍ସ ପିଲାଙ୍କଠାରୁ ତାଙ୍କ ବିଷୟରେ ମଜା ମଜା କଥାସବୁ ଶୁଣୁଥାଉ । ଖୁବ ଅଳ୍ପ ସମୟ ଭିତରେ ସେ ସେଠୁ ଚାଲିଗଲେ । ସେ ଚାଲିଯିବା ପରେ କେବଳ ଏତିକି ଶୁଣାଗଲା ଯେ ଶିକ୍ଷାବିଭାଗର ଜଣେ ବଡ଼ କର୍ତ୍ତାଙ୍କର ଅନୁଗ୍ରହ ସୀମା ଭିତରେ ନଥିବାରୁ ତାଙ୍କୁ ସେଠି ବେଶିଦିନ ରହିବାକୁ ମିଳିଲା ନାହିଁ । ରେଭେନ୍ସା କଲେଜ ସେତେବେଳେ ଏକମାତ୍ର କଲେଜ ଥିବାରୁ ସେଠୁ ଯେଉଁମାନେ ଯା'ନ୍ତି ସେମାନେ କୁଆଡ଼େ ଯା'ନ୍ତି ଜାଣିବା ସହଜ ହୁଏନାହିଁ ।

ଦୂରରୁ ଦେଖୁଥିବା ଲବ ମାନସିଂହଙ୍କୁ ମୁଁ ଏବେ ଲକଟରେ ଦେଖିଲି ପ୍ରିନ୍ସିପାଲ ମାନସିଂ ଭାବରେ ୧୯୫୯ ମସିହା ଅକ୍ଟୋବର ମାସରେ । ସେତେବେଳକୁ ସେ ତାଙ୍କର ସବୁ ଦୁର୍ଦ୍ଦିନ, ସବୁକାଳୀ ପ୍ରକାଶର ସବୁ ଅନିଶ୍ଚିତତା ପାର ହୋଇ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ପଦରେ ଦୃଢ଼ ଆସନ ଜମେଇ ବସିଥାନ୍ତି । ମାନସିଂହ ସେତେବେଳକୁ ବହୁ ଶାଖା ପ୍ରଶାଖା ମେଲଇ ସାରଥାନ୍ତି, ବହୁ ପତ୍ର ପତ୍ରିକା, ପୁସ୍ତକାଗାର, ଏକାଡ଼େମୀ, ଲୋକକଲ୍ୟାଣ ସଂସ୍ଥା ସହିତ ସଂପୃକ୍ତ ହୋଇ ପଶ୍ଚିମ ଓଡ଼ିଶାର ଶିକ୍ଷା ସଂସ୍କୃତିର କେନ୍ଦ୍ରସ୍ଥଳ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ହିସାବରେ ପଶ୍ଚିମ ଓଡ଼ିଶାର ଶିକ୍ଷା ସଂସ୍କୃତି କ୍ଷେତ୍ରରେ ଜଣେ ଆଦରଣୀୟ ନେତା ଭାବରେ ପ୍ରତିଷ୍ଠିତ ହୋଇ ସାରଥାନ୍ତି ।

ଜଣେ ସାଧାରଣ ଅଧ୍ୟକ୍ଷ, ଓ ଜଣେ କବି ଲେଖକ ଓ ଆଦର୍ଶବାଦୀ ଅଧ୍ୟକ୍ଷଙ୍କ ମଧ୍ୟରେ ତଫାତ୍ ଖୁବ ବେଶି । ତା ଛଡ଼ା ଯେଉଁ ସମୟରେ ମାତ୍ର ଗୁଡ଼ ପାଞ୍ଚୋଟି କଲେଜ ଥିଲା ଗୁରୁଶିଷ୍ୟ ସମ୍ପର୍କ ଆଜପରି ଅଦ୍ଭୁତ ନଥିଲା, ଯେତେବେଳେ ପିଲାଙ୍କଠାରୁ ପ୍ରିନ୍ସିପାଲଙ୍କର ମାଡ଼ଖାଇବା ସମ୍ପୂର୍ଣ୍ଣ ଅସମ୍ଭବ ଥିଲା, ସେତେବେଳେ ନିଜ ଆଦର୍ଶରେ କାମ କରିବାର ସୁଯୋଗ ଡକ୍ଟର ମାନସିଂହଙ୍କର ଥିଲା ।

ମାନସିଂହ ଜଣେ ଆଦର୍ଶବାଦୀ ଶିକ୍ଷକ । ଇଂଲଣ୍ଡର ଶୃଙ୍ଖଳିତ ଜୀବନ ପଦ୍ଧତି ସେ ଦେଖିଥିଲେ ଓ ଆମେରିକାର ଉନ୍ନତର ରୋମାଞ୍ଚକାରୀ କାହାଣୀରେ ସେ ଉଦ୍‌ବୁଦ୍ଧ ହେଉଥିଲେ । ଖାଲି ସ୍କୁଲ କଲେଜର ପାଠପଢ଼ା ଛଡ଼ା ଦେଶ ଓ ଜାତିର ଛାତ୍ରମାନେ କେମିତି ଆଦର୍ଶ ନାଗରିକ ହେବେ, କଲେଜ ଜୀବନରୁ ପ୍ରକୃତରେ କିଛି ଶିଖିବେ, ଏଥିପାଇଁ ସବୁବେଳେ ସେ ଚିନ୍ତା କରୁଥିଲେ ।

ବାହାରୁ ଦେଖିଲେ କଲେଜକୁ ସେ ଗୋଟିଏ ସ୍ୱୟଂସମ୍ପୂର୍ଣ୍ଣ ଅନୁଷ୍ଠାନ କରିବାପାଇଁ ଚେଷ୍ଟା କରୁଥିଲେ । ତେଣୁ ତାଙ୍କର ଏକନିଷ୍ଠ ଉଦ୍ୟମରେ କଲେଜର ଗୋଶାଳା, ପରିବା ବଗିଚା, କାଣ୍ଟିନ, କୋଅପରେଟିଭ ଷ୍ଟୋର ଇତ୍ୟାଦିର ସୁବନ୍ଦୋବସ୍ତ ହୋଇଥିଲା । ସେକାଳେ କିମ୍ବା ଏକାଳେ ଓଡ଼ିଶାରେ କୌଣସି କଲେଜରେ ଏପରି ବ୍ୟବସ୍ଥା କେବେ ହୋଇ ପାରିନାହିଁ, କିମ୍ବା ଯେଉଁଠି ଖାଲି କୋଅପରେଟିଭ ଇତ୍ୟାଦି ଥିଲା ବା ଅଛି, ସେ ସବୁ ଅଳ୍ପକାଳ ଭିତରେ ଉଭେଇ ଯାଇଛି । କିନ୍ତୁ ଗଙ୍ଗାଧର ମେହେର କଲେଜରେ ଜଣେ ଅଧ୍ୟାପକ ଦୁଧ, ପରିବା, ଡାଲି ଚାଉଳ ଓ ଦୈନନ୍ଦିନ ବ୍ୟାବହାରିକ ଉପକରଣ ପାଇଁ କଲେଜ ପ୍ରତିଷ୍ଠିତ ସଂସ୍ଥାମାନଙ୍କ ଉପରେ ନିର୍ଭର କରି ଚଳିପାରିବାର ସମ୍ଭାବନା ସେତେବେଳେ ଥିଲା । ଏ ସବୁ ସଫଳତା ଭିତରେ ଗୋଟିଏ ଜିନିଷ ଥିଲା ମାନସିଂହଙ୍କର ପ୍ରାଣ ଓ ବିଶ୍ୱାସ । କଲେଜ ଏକ ବୃହତ ପରିବାର ଘର ଭଳି ଏଇ ଥିଲା ପ୍ରକୃତରେ ତାଙ୍କର ଇଚ୍ଛା । ଆଜିର ବେକାର ଯୁଗରେ ଆମେମାନେ ଯେଉଁ ପ୍ରକାର କଲେଜ କଳ୍ପନା କରୁଛୁ, ସେକାଳର ମେହେର କଲେଜ ଥିଲା ସେହିପ୍ରକାର ଅନୁଷ୍ଠାନର ଅଗ୍ରଦୂତ ।

ଛାତ୍ର ଓ ଶିକ୍ଷକମାନଙ୍କ ଭିତରେ ଦୂରତା ଘୁଞ୍ଚାଇ ସେମାନଙ୍କ ମଧ୍ୟରେ ଆତ୍ମୀୟତା ସୃଷ୍ଟି କରିବା ପାଇଁ ତାଙ୍କର ଖୁବ ଇଚ୍ଛା ଥିଲା । ସେଥିପାଇଁ ବର୍ଷରେ ଥରେ ସମସ୍ତ କଲେଜର ସେ ଗୋଟିଏ ପିକନିକ କରୁଥିଲେ ଯେଉଁଥିରେ ଛାତ୍ର ଓ ଅଧ୍ୟାପକଙ୍କ ଛଡ଼ା ଅଧ୍ୟାପକମାନଙ୍କର ପରିବାରର ସମସ୍ତେ ଯୋଗ ଦେଉଥିଲେ । ଅବଶ୍ୟ ଆଜିକାଲି କଲେଜ ଯେମିତି ବିସ୍ତୃତ ହେଲାଣି, ସେଥିରେ ଏପରି ଏକ ବ୍ୟବସ୍ଥା ସହଜ ହୁଅନ୍ତା ନାହିଁ ।

ଛାତ୍ରମାନଙ୍କୁ ବ୍ୟକ୍ତିଗତ ଭାବରେ ଜାଣିବାପାଇଁ ସେ ଆଉ ଏକ ବ୍ୟବସ୍ଥା କରିଥିଲେ । ସେ ତାଙ୍କ ଅବସର ବେଳେ ପିଲମାନଙ୍କୁ ଡ଼କାଇ ସେମାନଙ୍କର ଜୀବନ ଇତିହାସ ଟିପି ନେଉଥିଲେ ଓ ଆବଶ୍ୟକୀୟ ଉପଦେଶ ଦେଉଥିଲେ । ଏବେ ଯେଉଁ ପ୍ରୋକ୍ଟୋରିଆଲ ପଦ୍ଧତି କଲେଜମାନଙ୍କରେ କାର୍ଯ୍ୟକାରୀ ହେଉଛି ତାହା ସେହିପରି ଏକ ବ୍ୟବସ୍ଥା ହେଲେ ମଧ୍ୟ ପ୍ରୋକ୍ଟୋରିଆଲ ପଦ୍ଧତିଠାରୁ ତାହା ଅଧିକ ପ୍ରାଣବନ୍ତ, ଅଧିକ ବ୍ୟକ୍ତିସମ୍ପର୍କନିଷ୍ଠ । ଯେଉଁଠି ଛାତ୍ର ଶିକ୍ଷକ ସମ୍ପର୍କ ନାନାଭାବରେ ଉକ୍ତ, ସେଠି ପ୍ରୋକ୍ଟୋରିଆଲ ପଦ୍ଧତି ଏକ ନିଷ୍ପ୍ରାଣ କାଗଜୀ କାରବାର ।

ଛାତ୍ରମାନଙ୍କ ମନରୁ ଆଞ୍ଚଳିକତା ଦୂର କରିବା ପାଇଁ ବାହାର ପିଲଙ୍କୁ ନିଜ ଘରକୁ ନିମନ୍ତ୍ରଣ କରି ସେମାନଙ୍କ ସହିତ ମିଳାମିଶା କରିବା ପାଇଁ ସ୍ଥାନୀୟ ଛାତ୍ରମାନଙ୍କୁ ସେ ବରାବର ଶିକ୍ଷା ଦେଉଥିଲେ । କଲେଜ ଛାତ୍ରମାନଙ୍କ ଛଡ଼ା ସ୍କୁଲରେ ଯେଉଁ ଛାତ୍ରମାନେ ପଢ଼ୁଥିଲେ ଓ ଭବିଷ୍ୟତରେ ଯେଉଁମାନଙ୍କର କଲେଜକୁ ଆସିବାର ସମ୍ଭାବନା ଥିଲା, ସେମାନଙ୍କୁ ମୂଳରୁ ଠିକ ଭାବରେ ଗଢ଼ିବା-ପାଇଁ ଡ଼କ୍ଟର ମାନସିଂହ ହାଇସ୍କୁଲ ହେଡ଼ମାଷ୍ଟରମାନଙ୍କ ପାଖକୁ ପତ୍ର ଲେଖୁଥିଲେ ।

ସେ କଲେଜକୁ ପ୍ରିନ୍ସିପାଲ ହୋଇ ଆସିବା ମାତ୍ରେ ଛାତ୍ର ଛାତ୍ରୀମାନଙ୍କପାଇଁ କେତେକ ଉପଦେଶାବଳୀ ବୋର୍ଡ଼ରେ ଲେଖି ଟାଙ୍ଗି ଦେଇଥିଲେ । ମୁଁ ଯେତେ-ବେଳେ ବିଦେଶରୁ ଫେରି ମେହେର କଲେଜରେ ଯୋଗ ଦେଲି, କେତେକ ବନ୍ଧୁ ମୋତେ ସେହି ବୋର୍ଡ଼ ଦେଖାଇ ଦେଇ କହିଥିଲେ, ଖାଲି ପିଲଙ୍କ ପାଇଁ ନୁହେଁ ତମ ପାଇଁକି ଏଠି ଉପଦେଶ ଅଛି, ଏଠି ମାଷ୍ଟ୍ରମାନଙ୍କୁ ସିଗାରେଟ୍ ଖାଇବା ମନା । ମୁଁ ସିଗାରେଟ୍ ଖାଏ ନାହିଁ ବୋଲି ମୋର ସେଥିପାଇଁ ଚିନ୍ତା ନଥିଲା । କିନ୍ତୁ ପ୍ରିନସିପାଲ ମାନସିଂହ କଲେଜ ଅଧ୍ୟାପକମାନଙ୍କ ପାଇଁ ଯେଉଁ ପୋଷାକ କଳ୍ପନା କରିଥିଲେ ସେଥିରେ ଥିଲା ପୂରା ହାତବାଲା ହାଓ୍ୱାଇ । ମୁଁ ଓ ମୋର ଆଉ କେତେକ ବନ୍ଧୁ ହାଫ୍ ହାଓ୍ୱାଇ ପିନ୍ଧିବାର ଅଭ୍ୟସ୍ତ ଥିବାରୁ ଆମେ ପ୍ରତିବାଦ କରିଥିଲୁ ଓ ସେହି ପୋଷାକ କଥା କାଳକ୍ରମେ ଆଉ କେହି ବିଚାର କଲେ ନାହିଁ ।

ଉତ୍କଳର ମାନସିଂହ ଆଗେ କବି ଓ ପରେ ଶିକ୍ଷକ ବା ଶାସକ । ସେଥିପାଇଁ ଅନେକ ସମୟରେ ସେ ଭାରି ଖାପଛଡ଼ା ମନେ ହୁଅନ୍ତି । ଘରେ ଥାନ୍ତୁ ବା ଅଫିସରେ ଥାନ୍ତୁ ସେତେବେଳେ ଦେଖିବ ସେ ଲେଖୁଥିବେ ନଚେତ ପଢ଼ୁଥିବେ । ବେଳେ ବେଳେ ତାଙ୍କ ସଙ୍ଗେ କଥାବାର୍ତ୍ତା ହେଉ ହେଉ ହଠାତ୍ ସେ ଚମକି ପଡ଼ି ଜାଗିଉଠନ୍ତି ସତେ ଯେମିତି ତାଙ୍କ ଭିତର ମନରେ ଅନ୍ୟ କୌଣସି କଥା ସେ ଭାବୁଥାନ୍ତି । ଥରେ ଜଣେ ହାଇକୋର୍ଟ ଜଜ୍ କଥା ପ୍ରସଙ୍ଗରେ ମୋତେ କହିଲେ, 'ଗୋଲକ, ମାନସିଂହଙ୍କ ବିଷୟରେ ତମେ କଣ ଭାବ ଜାଣିନି, ମୋର ତାଙ୍କ ସହିତ କଥାବାର୍ତ୍ତାରୁ ମନେହୁଏ ସେ ପ୍ରକୃତରେ ଜଣେ ଭାବୁକ ଓ କବି । ସେ ବହୁ ସାଧାରଣ ଲୋକଙ୍କଠାରୁ ଭିନ୍ନ । 'ମୁଁ କହିଥିଲି, ମୋର ଧାରଣା ବି ସେଇଆ । କେବଳ ସାଧାରଣ ଲୋକ ନୁହନ୍ତି, ବହୁ କବିଙ୍କ ଠାରୁ ବି ସେ ଭିନ୍ନ ।'

ଅନେକ ସମୟରେ କବି ମନର ଅନ୍ୟମନସ୍କତା ଯୋଗୁ ପୁରୁଣା ଚିହ୍ନା ଲୋକଙ୍କୁ ହଠାତ୍ ସେ ଚିହ୍ନିପାରନ୍ତି ନାହିଁ । ସେଥିପାଇଁ ଲୋକେ ତାଙ୍କୁ ଭୁଲ ବୁଝନ୍ତି । ଅନେକ ସମୟରେ କବିଙ୍କ ପରି ଖିଆଲରେ ପଡ଼ି କଲେଜରେ ସେ ଏପରି ଅନେକ ନୋଟିସ୍ ଇତ୍ୟାଦି ଦିଅନ୍ତି ଯାହା ଅନେକେ ପସନ୍ଦ କରନ୍ତି ନାହିଁ । କିନ୍ତୁ ବୁଝାଇଦେଲେ ସେ ଭୁଲ ସ୍ୱୀକାର କରି ନୋଟିସ୍ ରଦ୍ କରିଦିଅନ୍ତି । କିନ୍ତୁ ଶାସନ କ୍ଷେତ୍ରରେ ଏପରି ତରଳ ଭାବୁକତା ସୁବିଧାଜନକ ହୁଏ ନାହିଁ । ସୌଭାଗ୍ୟ-ବଶତଃ ଭୁଲ ସ୍ୱୀକାର କରିବାର ଉଦାରତା ତାଙ୍କର ଥିବାରୁ ଅନେକ ପରିସ୍ଥିତି ସୁଧୁରିଯାଏ । 'ଆରେ ଛାଡ଼, ସେ ତ କବି ଲୋକ' । କବିଙ୍କ ପ୍ରତି ଏହି ସମ୍ମାନବୋଧ ସବୁବେଳେ ତାଙ୍କ ସପକ୍ଷରେ ଥିଲା । ଜୀବନର ବହୁ ବିଗ୍ରହ ମଧ୍ୟରେ ସେ ଭାରି ନିର୍ଭୀକ । ସମାଜ, ସଂସାର, ସରକାରୀ ସଂସ୍ଥା କେଉଁଠି ହେଲେ ସେ ଗତାନୁଗତିକ ଧାରାରେ ବାନ୍ଧି ହୋଇ ରହିବା ଲୋକ ନୁହନ୍ତି । ସେ ଯାହା ଭଲ ବୋଲି ଭାବନ୍ତି, କରନ୍ତି । ତାଙ୍କ କଥା ଅପେକ୍ଷା ତାଙ୍କ କଲମ ବହୁତ ବେଶି ଟାଣ । ସେଥିପାଇଁ ଘରେ ନିଭୃତ କୋଠରୀରେ ବସି ବାହାରେ ସେ ବେଶ ଚହଳ ସୃଷ୍ଟି କରନ୍ତି । କବି ଭାବରେ ମାନସିଂହଙ୍କର ଯେଉଁ ବିପୁଳ ଖ୍ୟାତି ଥିଲା, ତାହା କାର୍ଯ୍ୟ ବାହାର ଜୀବନରେ ଇନ୍‌ସପେକ୍ଟର ଓ ପ୍ରିନ୍‌ସିପାଲ ଭାବରେ ବହୁତ ବଢ଼ିଯାଇଥିଲା । କବି ମାନସିଂହ ଏ ଦେଶରେ ଜଣେ ଆଦର୍ଶ ଶିକ୍ଷକ ଓ ଅଧ୍ୟକ୍ଷ ଭାବରେ ବରାବର ସମ୍ମାନିତ ହୋଇ ରହିବେ ।

ଅଧ୍ୟାପକ ଧଳ ଯାହା ଲେଖିଛନ୍ତି ତା'ର ସମ୍ପୂର୍ଣ୍ଣ ପରିପୋଷକତା କରୁଥିବା ମେହେର କଲେଜର ରୌପ୍ୟ-ଜୟନ୍ତୀ-ସ୍ମରଣିକାରେ ପ୍ରକାଶିତ କଲେଜର ଅଭିବର୍ଦ୍ଧନର ଇତିହାସରେ ପ୍ରିନ୍‌ସିପାଲ୍ ମାନସିଂଙ୍କ ଦାନର ସଂକ୍ଷିପ୍ତ ବିବରଣୀର କିଛି କିଛି ଅଂଶ ଏଠାରେ ଦେବା ଅପ୍ରାସଙ୍ଗିକ ମନେ କରୁନାହୁଁ । ସେଥିରେ ଲେଖା ଅଛି—

"ପରବର୍ତ୍ତୀ ପ୍ରିନ୍‌ସିପାଲଙ୍କ ଆବିର୍ଭାବରେ ଯେପରି ଏକ ନାଟକୀୟ ବ୍ୟଞ୍ଜନା ଅନ୍ତର୍ନିହିତ ଥିଲା । ଯେପରିକି କବିଶ୍ରେଷ୍ଠ ଗଙ୍ଗାଧର ମେହେରଙ୍କ ସ୍ୱପ୍ନକୁ ବାସ୍ତବରେ ପରିଣତ କରିବା ପାଇଁ ଓଡ଼ିଶା ସରକାର ୧୯୪୯ରେ ଡକ୍ଟର ମାୟାଧର ମାନସିଂଙ୍କୁ ନେଇ ଆଉ ଏକ କବି ଓ ସ୍ୱପ୍ନଦ୍ରଷ୍ଟାଙ୍କୁ ଏହି ଅନୁଷ୍ଠାନର ଅଧିଦେବତା ହେବା ପାଇଁ ପଠାଇଦେଲେ । ତାଙ୍କର ପ୍ରିନ୍‌ସିପାଲ-କାଳ ହୋଇଥିଲା ଦୀର୍ଘତମ—ସାତ ବର୍ଷ ଏବଂ ସେହି ସାତଟି ବର୍ଷ ଏହି ଅନୁଷ୍ଠାନର ହୋଇଥିଲା ପ୍ରକୃତ ଗୌରବମୟ କାଳ ।

ଡକ୍ଟର ମାନସିଂ କଲେଜ ପାଇଁ ଏକ ରେଜିଷ୍ଟାର୍ଡ଼ କୋ-ଅପରେଟିଭ୍ ସୋସାଇଟି ଗଠନ କରି, ତା' ନେଇ ଠିଆ କରାଇଲେ ଏକ ମନୋହାରୀ ଦୋକାନ ଓ ଏକ କାଣ୍ଟିନ ଯେଉଁଗୁଡ଼ିକ ପ୍ରାୟ ଦଶ ବର୍ଷ ଧରି କଲେଜକୁ ଉତ୍ତମ ସେବା ଦେଇ ଆସୁଥିଲେ । ସେ ଏକ ଗୋଶାଳା ମଧ୍ୟ ସ୍ଥାପନ କଲେ, ଯାହା ଫଳରେ ପିଲେ ଓ ଅଧ୍ୟାପକମାନେ ଶସ୍ତାରେ ଖାଣ୍ଟି ଦୁଧ ପାଇପାରିବେ । ××× ଗୋଟିଏ ପଳପଳିଆ ବଗିଚା ହଷ୍ଟେଲ ମେସ ଓ ଅଧ୍ୟାପକ-ପରିବାରମାନଙ୍କୁ ଶସ୍ତାରେ ପରିବା ଯୋଗାଇ ଦେଉଥିଲା । ××× ଡକ୍ଟର ମାନସିଂଙ୍କର ଏକ ଚମତ୍କାର ଓ ସୁସମ୍ପନ୍ନ କୃତି ହେଲା ହଷ୍ଟେଲର ପୁନର୍ଗଠିତ ମେସ ଯେଉଁଠି ପିଲେ ମାନ ପାଞ୍ଚଣା ପଇସାରେ ଯଥେଷ୍ଟ ପରିମାଣରେ ପୁଷ୍ଟିକର ଖାଦ୍ୟ ପାଇପାରୁଥିଲେ । ଡକ୍ଟର ମାନସିଂ କଲେଜର ବଡ଼ ବଡ଼ ଅତିଥିମାନଙ୍କୁ ମଧ୍ୟ "ମୋର ଓ ମୋର ପିଲାଙ୍କ ସାଥିରେ ଏକ ସାଧାରଣ ମିଲ୍ ଖାଇବା ପାଇଁ" ନିମନ୍ତ୍ରଣ କରି ଆଣୁଥିଲେ । ( ସେ ସବୁବେଳେ ଛାତ୍ରମାନଙ୍କୁ 'ପୁଅ' ଓ 'ଝିଅ'ମାନେ ବୋଲି ହିଁ ଡାକୁଥିଲେ ) । ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ୍‌ମାନେ ମେସ୍‌ରେ ପିଲାଙ୍କ ସାଥିରେ ଏକାଠି ଅଧିକାଂଶ ବେଳେ ଖାଉଥିଲେ, ଯେପରିକି ଖାଦ୍ୟର ମାନ ଠିକ୍ ରହିବା ସାଥେ ସାଥେ, କଲେଜରେ ଏକ ପାରିବାରିକ ବାତାବରଣ ବଜାୟ ରହିବ ।

ସେତେବେଳେ କଲେଜର ପୁଣି ଆଉ ଏକ ଅସାଧାରଣ ଅନୁଷ୍ଠାନ ଥିଲା, କାର୍ତ୍ତିକ ପୂର୍ଣ୍ଣିମା ଦିନ ସମସ୍ତ କଲେଜର ବଣଭୋଜି । ଛାତ୍ରଛାତ୍ରୀ, ଅଧ୍ୟାପକ ଓ ସେମାନଙ୍କର ପରିବାରବର୍ଗ ଓ ଅଫିସ ଷ୍ଟାଫ—ସମସ୍ତେ ଯୋଗ ଦେଉଥିଲେ । ଗୋଟିଏ ସୁରମ୍ୟ ସ୍ଥାନରେ ସମସ୍ତେ ନିଜକୁ ବିବିଧ ଆନନ୍ଦରେ ହଜାଇ ଦେଉଥିଲେ । ××× ବିବିଧ ସେମିନାର, ଆସୋସିଏସନ ଓ ସୋସାଇଟି ଦେଇ କଲେଜଟା ନାନା ସାଂସ୍କୃତିକ ବ୍ୟାପାରରେ ଜୀବନ୍ତ ହୋଇ ଉଠିଥିଲା । ଯେଉଁଠି ତଳ ମହଲର ପାବଚ୍ଛଶ୍ରେଣୀ ଉପର ମହଲର ବାରଣ୍ଡାରେ ମିଶିଥିଲା, ସେଠି ଡକ୍ଟର ମାନସିଂ ଦୁଇଟି ବୃହତ୍ କାଷ୍ଠ ଫଳକରେ "ପୁଅମାନଙ୍କ ପାଇଁ" ଓ "ଝିଅମାନଙ୍କ ପାଇଁ" ଜୀବନାଦର୍ଶ ଘୋଷିତ କରି ରଖିଥିଲେ । ଏଗୁଡ଼ିକ ମଧ୍ୟ କଲେଜ-କାଲେଣ୍ଡରରେ ଛପା ହେଉଥିଲା । ସେଥିରୁ କେତୋଟି ଆମେ ଏଠାରେ ଉଦ୍ଧାର କରି ଦେଉଛୁ—

**ପୁଅମାନଙ୍କ ପାଇଁ :—**

"ଆମର ଗଣତାନ୍ତ୍ରିକ ରାଷ୍ଟ୍ର ଚତୁରତା ଅପେକ୍ଷା, ତୁମମାନଙ୍କଠାରୁ ଦୁଇଟି ଗୁଣ ଆଜି ବିଶେଷ ଭାବରେ ଦାବୀ କରୁଛି—ସାଧୁତା ଓ କର୍ମଦକ୍ଷତା । ସବୁଠାରୁ କ୍ଷୁଦ୍ର ନିଗଣ୍ୟ କାମଟି ଯଦି ଅବହେଳା ସହକାରେ କରିଯାଏ, ତେବେ ତାହାହିଁ ଏକ ସମଗ୍ର ଯୋଜନାକୁ ବ୍ୟର୍ଥ କରିଦେବ ।"

"ସମସ୍ତ ସଂସ୍କୃତିର ଆଦ୍ୟ ପଦକ୍ଷେପ ହେଲା, ସର୍ମ୍ପୂର୍ଣ୍ଣ ନୀରବତା ।"

"ସଭ୍ୟ ଜୀବନର ମୂଳ ପତ୍ତନ ହେଲା, କେବଳ ନିଜ କଥା ନ ଭାବି, ଆଉ ପ୍ରତିବେଶୀମାନଙ୍କର ସୁବିଧା-ଅସୁବିଧା କଥା ଭାବିବା ।"

**ଝିଅମାନଙ୍କ ପାଇଁ : —**

"ନାରୀର ସବୁଠାରୁ ଗୌରବମୟ ଜୀବିକା ହେଲା ମାତୃତ୍ୱ । ସେହି ଗୌରବମୟ ମାତୃତ୍ୱ ପାଇଁ ଆଜିଠାରୁ ନିଜକୁ ପ୍ରସ୍ତୁତ କର—ସ୍ୱାସ୍ଥ୍ୟ, ଜ୍ଞାନ ଓ ଚରିତ୍ର ଦେଇ ।"

"ଆମର ଜାତି ଚାହେଁ ଯେ ତମେ ତା'ର କୋଟି କୋଟି ଶିଶୁମାନଙ୍କର ଶିକ୍ଷୟିତ୍ରୀ ହେବ, ହେବ ତା'ର ସାହସୀ ଜବାନମାନଙ୍କର ସ୍ନେହପରାୟଣ ପରିଚାରିକା ଏବଂ ହେବ ପୁଣି କୋଟି କୋଟି ଗୃହର ରାଣୀ । ଏଥିରୁ ଯେ କୌଣସି ଗୋଟିଏ ଭୂମିକା ତୁମେ ନିଜ ପାଇଁ ବାଛି ନେଇପାର ।"

"ସତ୍ୟ ସୌନ୍ଦର୍ଯ୍ୟ ଥାଏ ସ୍ୱାସ୍ଥ୍ୟ ଓ ସରଳତାରେ । ତେଣୁ ବ୍ୟୟବହୁଳ ଅଳଙ୍କାରପତ୍ର ଓ ସାଜସଜ୍ଜା ଯଥାସମ୍ଭବ ପରିହାର କର ।"

କଲେଜ କାଲେଣ୍ଡରଟି ମଧ୍ୟ ନୂତନ ଭାବରେ ଆତ୍ମପ୍ରକାଶ କରିଥିଲା । ଦେବନାଗରୀ ଅକ୍ଷରରେ ପ୍ରଥମେ ସେଥିରେ ଛପା ଥିଲା, କେତେଗୁଡ଼ିଏ ସାର୍ବଜନୀନ ଗୋଷ୍ଠୀ-ନିରପେକ୍ଷ ପ୍ରାର୍ଥନା । କାଲେଣ୍ଡରର ମୁଖବନ୍ଧରେ ଡକ୍ଟର ମାନସିଂ ପ୍ରକାଶ କରିଥିଲେ ଯେ,—'କେବଳ ସାମାଜିକ ଶାନ୍ତି ପାଇଁ ଆମର ନେତାମାନେ ଆମର ରାଷ୍ଟ୍ରକୁ ଧର୍ମ ନିରପେକ୍ଷ ଘୋଷଣା କରିଛନ୍ତି । କିନ୍ତୁ ଏ ଦେଶର ଶିକ୍ଷାବିତ୍‌ମାନେ ଈଶ୍ୱର ଧର୍ମବିଶ୍ୱାସର, ତରୁଣ ଚିତ୍ତ ଓ ବ୍ୟକ୍ତିତ୍ୱମାନଙ୍କ ନିର୍ମାଣ କରିବାରେ ମୂଲ୍ୟବାନ ସାଙ୍ଗଠନିକ ଭୂମିକା,' କେବେହେଲେ ଭୁଲିଯିବା ଉଚିତ ନୁହେଁ । ଏକ ରାଜନୈତିକ ରାଷ୍ଟ୍ର ପ୍ରତି ଅନୁରକ୍ତିକୁ, ନିଜ ବିଶ୍ୱାସର ବିନିମୟ ଭାବିବା ଏକାନ୍ତ ଉଦ୍ଭଟତା । ବରଂ ସମଗ୍ର ତରୁଣ ଭାରତକୁ ସମବେତ ଭାବରେ ଆମେ ଯଦି ଏକ ଈଶ୍ୱରଙ୍କ ପ୍ରାର୍ଥନା କରାଇବାରେ ତାଲିମ୍ କରାଇପାରିବା, ତେବେ ରାଷ୍ଟ୍ରୀୟ ଅନୁରକ୍ତି ବରଂ ସହଜତର ହୋଇଉଠିବ ।"

"ମାନସିଂଙ୍କ ଅମଳରେ କଲେଜର ଭିତ୍ତିଗୁଡ଼ିକ ମଧ୍ୟ ଚିତ୍ର-ଚିତ୍ରଶାଳୀ ଭାବରେ ଅଳଂକୃତ ହୋଇ ରଖାଯାଇଥିଲା । ମାନବ ଇତିହାସକୁ ଗୌରବୋଜ୍ଜ୍ୱଳ କରିଥିବା ବିଖ୍ୟାତ କବି, ବୈଜ୍ଞାନିକ, ଦାର୍ଶନିକ, ଶିକ୍ଷାବିତ ଓ ସଂସ୍କାରକମାନଙ୍କର ସବର୍ଣ୍ଣିଳ ଛବି ସମୂହ ଟଙ୍ଗାଇ ରଖାଯାଇଥିଲା, ଯେପରିକି ତରୁଣ ଚିତ୍ତ ସେଥିରୁ ପ୍ରେରଣା ପାଇପାରିବ । ସେହି ଛବିଗୁଡ଼ିକ ହିଁ ସମସ୍ତ ଭବରେ ପ୍ରଦର୍ଶିତ କରି ରଖିଥିଲେ ସମଗ୍ର ମାନବୀୟ ସଭ୍ୟତାକୁ । ସେତେବେଳେ ଜଣେ ଛାତ୍ର ବା ଦର୍ଶକ ଯେଉଁ ଆଡ଼କୁ ଚାହୁଁଥିଲ ସେ ସମ୍ମୁଖରେ ଭେଟୁଥିଲା, ଏକ ସତ୍ୟ ଜ୍ଞାନ-ମନ୍ଦିର ।

"ଡକ୍ଟର ମାନସିଂ କଲେଜର ଶ୍ରେଷ୍ଠ ସେବାଭାବାପନ୍ନ ଓ ନେତୃତ୍ୱଦାୟୀ ଛାତ୍ର ପାଇଁ ଏକ ରୂପାର-ପଦ୍ମପୁଷ୍ପ-ଆକୃତିସମ୍ପନ୍ନ ଏକ ମେଡ଼ାଲ ପ୍ରବର୍ତ୍ତିତ କରିଥିଲେ, କାରଣ ଆମର ସହସ୍ର କ୍ଷୁଦ୍ର କ୍ଷୁଦ୍ର ସ୍ୱାର୍ଥପରତାର ପଙ୍କ ଭିତରେ, ଶୁଚି ଓ ସୌନ୍ଦର୍ଯ୍ୟର ପ୍ରତୀକ ରୂପେ । ଶ୍ରୀମତୀ ମାନସିଂ ମଧ୍ୟ ସାମାଜିକ ସେବା ପାଇଁ ଏକ ପୁରସ୍କାରର ବ୍ୟବସ୍ଥା କରିଥିଲେ । କିନ୍ତୁ ଦୁଃଖର ବିଷୟ ଏହି ଯେ, କଲେଜରେ ସେସବୁ ଇନ୍‌ଭେଷ୍ଟମେଣ୍ଟର ଚିହ୍ନ ହିଁ ଆଉ ନାହିଁ ।

"୧୯୫୭, ସେପ୍‌ଟେମ୍ବର ମାସରେ ଡକ୍ଟର ମାନସିଂ ସମ୍ବଲପୁର ଛାଡ଼ି-ଗଲେ । ଟ୍ରଷ୍ଟ ଫଣ୍ଡ ଟଙ୍କାରୁ ଯେ ଆରମ୍ଭ କରାଇ ଦେଇଥିବା ଅଧିକାଂଶ କ୍ୱାର୍ଟର ସେତେବେଳକୁ ସମ୍ପୂର୍ଣ୍ଣ ହୋଇ, ସେଥିରେ ଷ୍ଟାଫ ମେମ୍ବରମାନେ ରହୁଥିଲେ । ଆଉ କେତେକ ସମ୍ପୂର୍ଣ୍ଣ ହେବା ଉପରେ ଥିଲ । ଟ୍ରଷ୍ଟ ଫଣ୍ଡ ହଷ୍ଟେଲ୍ ପାଇଁ ପ୍ରାରମ୍ଭିକ ସବୁ କାମ ସେ ସାରିଦେଇଥିଲେ ଏବଂ କଲେଜର ସମ୍ପ୍ରସାରଣ ପାଇଁ ଟଙ୍କା ଗ୍ରାଣ୍ଟ୍ ମଧ୍ୟ କରାଇ ନେଇଥିଲେ ।

ଏହିପରି ଭାବରେ ମୋହେର କଲେଜର ସେହି ଗୌରବମୟ ଅଧ୍ୟାୟଟି ଶେଷ ହୋଇଥିଲା ।"

( ଉକ୍ତ ପ୍ରବନ୍ଧଟି ମାନସିଂହଙ୍କ ସୃଷ୍ଟିଧର୍ମୀ ସାହିତ୍ୟ ସମ୍ପର୍କରେ ନ ହେଲେହେଁ ମାନସିଂହଙ୍କ 'ଶିକ୍ଷାବିତ୍‌ର ଗାଥା'ର ଭୂମିକା ଭାବେ ଏହାକୁ ଗ୍ରହଣ କରାଯାଇପାରେ ।

—ସମ୍ପାଦକ—

